# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**August- 2018**

୭୫ ଭାଗ ୧ମ ସଂଖ୍ୟା ଶ୍ରାବଣ – ଭାଦ୍ର ଅଗଷ୍ଟ – ୨୦୧୮

**ହେମନ୍ତ ଶର୍ମା,** ଆଇ.ଏ.ଏସ୍
କମିଶନର ତଥା ଶାସନ ସଚିବ

**ଲକ୍ଷ୍ମୀଧର ମହାନ୍ତି,** ଓ.ଏ.ଏସ୍.
ନିର୍ଦ୍ଦେଶକ

**ଡ. ଲେନିନ୍ ମହାନ୍ତି**
ସମ୍ପାଦକ
(ଭାରପ୍ରାପ୍ତ)

ସମ୍ପାଦନା ସହଯୋଗୀ
**ଗୋବିନ୍ଦ ଚନ୍ଦ୍ର ମଲ୍ଲିକ**
**ସଚ୍ଚିଦାନନ୍ଦ ବାରିକ**

ପ୍ରଚ୍ଛଦପଟ ଓ ଲେ–ଆଉଟ୍ ଡିଜାଇନିଂ
**ମାନସ ନାୟକ**

କମ୍ପ୍ୟୁଟର ସେଟିଂ ଓ ଡିଜାଇନିଂ
**ହେମନ୍ତ କୁମାର ସାହୁ**
**ସୁମିତ୍ରା କର**

ଫଟୋ :
**କିଶୋର କୁମାର ସିହ୍ନା, ରାଜୁ ସିଂ**
**ମନୋରଂଜନ ମହାନ୍ତି, ନିରଞ୍ଜନ ବରାଳ**


ଉତ୍କଳ ପ୍ରସଙ୍ଗ ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ ସ୍ଥଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।


ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ–୧୦ରେ ମୁଦ୍ରିତ ।



ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର–୭୫୧୦୦୧

ଇ–ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.odisha.gov.in
ଫୋନ୍ : ୦୬୭୪–୨୫୩୦୨୧୧



ପ୍ରତିଖଣ୍ଡ : ଟ. ୫.୦୦

# ସୂଚୀ

ଅଗଷ୍ଟ-୨୦୧୮



❖ ❖ ❖

# ଜାତୀୟ ସଙ୍ଗୀତ

ଜନ-ଗଣ-ମନ-ଅଧିନାୟକ ଜୟ ହେ
ଭାରତ-ଭାଗ୍ୟ-ବିଧାତା
ପଞ୍ଜାବ-ସିନ୍ଧୁ-ଗୁଜରାଟ-ମରାଠା
ଦ୍ରାବିଡ଼-ଉତ୍କଳ-ବଙ୍ଗ
ବିନ୍ଧ୍ୟ-ହିମାଚଳ-ଯମୁନା-ଗଙ୍ଗା
ଉଚ୍ଛଳ ଜଳଧି ତରଙ୍ଗ
ତବ ଶୁଭ ନାମେ ଜାଗେ
ତବ ଶୁଭ ଆଶିଷ ମାଗେ
ଗାହେ ତବ ଜୟ ଗାଥା
ଜନଗଣ-ମଙ୍ଗଳଦାୟକ ଜୟ ହେ,
ଭାରତ-ଭାଗ୍ୟ-ବିଧାତା
ଜୟ ହେ ଜୟ ହେ ଜୟ ହେ,
ଜୟ ଜୟ ଜୟ ଜୟ ହେ ।

– ରବୀନ୍ଦ୍ରନାଥ ଠାକୁର





# ବନ୍ଦେ ମାତରମ୍





ସୁଜଲାମ୍, ସୁଫଲାମ୍, ମଲୟଜ ଶୀତଲାମ୍
ଶସ୍ୟ ଶ୍ୟାମଲାମ୍ ମାତରମ୍ ।
ଶୁଭ୍ରଜ୍ୟୋତ୍ସ୍ନାଂ ପୁଲକିତ ଯାମିନୀମ୍
ଫୁଲ୍ଲ କୁସୁମିତ ଦ୍ରୁମଦଳ ଶୋଭିନୀମ୍
ସୁହାସିନୀମ୍ ସୁମଧୁର ଭାଷିଣୀମ୍
ସୁଖଦାଂ ବରଦାଂ ମାତରମ୍ ॥
ବନ୍ଦେ ମାତରମ୍ ॥।

– ବଙ୍କିମଚନ୍ଦ୍ର ଚାଟାର୍ଜୀ







# ଓଡ଼ିଶାର ଅମର ଶହୀଦ


ଜୟୀ ରାଜଗୁରୁ




ବୀର ସୁରେନ୍ଦ୍ର ସାଏ


ଦିବାକର ପରିଡ଼ା


ବାଜି ରାଉତ


ରଘୁନାଥ ମହାନ୍ତି


ଲକ୍ଷ୍ମଣ ନାଏକ




ବିର୍ସା ମୁଣ୍ଡା

**''ଭାରତର ସମ୍ବିଧାନର ମୁଖବନ୍ଧରେ 'ଅହିଂସା'ର ଅନନ୍ୟ ଭାରତୀୟ ଆଦର୍ଶକୁ ଅନ୍ତର୍ଭୁକ୍ତ କରିବା ଦ୍ୱାରା ଗାନ୍ଧିଜୀଙ୍କ ୧୫୦ତମ ଜନ୍ମବାର୍ଷିକୀରେ ତାଙ୍କ ପାଇଁ ଭାରତର ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ହେବ ବୋଲି ମୁଁ ବିଶ୍ୱାସ କରେ''**

**– ନବୀନ ପଟ୍ଟନାୟକ, ମୁଖ୍ୟମନ୍ତ୍ରୀ**



ମହାତ୍ମା ଗାନ୍ଧୀଙ୍କ 'ଅହିଂସା' ଉପରେ ଥିବା ଧାରଣାର ପ୍ରମୁଖ ଦିଗ ହେଉଛି, ଦାରିଦ୍ର୍ୟ ଏବଂ ସାମାଜିକ ଅବିଚାର ହିଁ ଅତୀବ ହିଂସାର ସ୍ୱରୂପ ।

ଗାନ୍ଧିଜୀ କହିଥିଲେ, ଯେ ପର୍ଯ୍ୟନ୍ତ ଦାରିଦ୍ର୍ୟ ରହିଛି, ସ୍ୱାଧୀନତା କେବଳ ଗୋଟିଏ ଭ୍ରମ ମାତ୍ର । ଯେ କୌଣସି ସରକାର ସମ୍ମୁଖୀନ ହେଉଥିବା ସମସ୍ୟାଗୁଡ଼ିକ ମଧ୍ୟରୁ ସବୁଠୁ କଠିନ ଦାୟିତ୍ୱ ହେଉଛି ଦାରିଦ୍ର୍ୟ ଦୂରୀକରଣ । ଅହିଂସା ବିନା ଏହା ହାସଲ କରାଯାଇପାରିବ ନାହିଁ ।

ପ୍ରଗତି ସକାଶେ ଶାନ୍ତି ହିଁ ଲୋଡ଼ା ।

ଶ୍ରେଣୀ, ଜାତି କିମ୍ବା ଧର୍ମ ଆଧାରରେ ଯେଉଁମାନେ ସାମାଜିକ ବିଭାଜନ ସୃଷ୍ଟି କରିଥାନ୍ତି, ପ୍ରଗତି ସେମାନଙ୍କୁ ପରାହତ କରିଥାଏ ।

ଭାରତର ସମ୍ବିଧାନର ମୁଖବନ୍ଧରେ 'ଅହିଂସା'ର ଅନନ୍ୟ ଭାରତୀୟ ଆଦର୍ଶକୁ ଅନ୍ତର୍ଭୁକ୍ତ କରିବା ଦ୍ୱାରା ଗାନ୍ଧିଜୀଙ୍କ ୧୫୦ତମ ଜନ୍ମବାର୍ଷିକୀରେ ତାଙ୍କ ପାଇଁ ଭାରତର ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ହେବ ବୋଲି ମୁଁ ବିଶ୍ୱାସ କରେ ।

ଏହା ସୁନିଶ୍ଚିତ କରିବ ଯେ, କେବଳ ଭାରତର ନୁହେଁ ସମଗ୍ର ବିଶ୍ୱର ଭବିଷ୍ୟତ ପିଢ଼ି ମଧ୍ୟ ଏହି ନୀତିର ବାସ୍ତବ ସତ୍ୟ ସଂପର୍କରେ ସ୍ମରଣ କରିବେ ।

***୨୦୧୮ ମସିହା ମଇ ୨ ତାରିଖରେ ରାଷ୍ଟ୍ରପତି ଭବନରେ ଅନୁଷ୍ଠିତ ଗାନ୍ଧିଜୀଙ୍କ ୧୫୦ତମ ଜନ୍ମବାର୍ଷିକୀ ପାଳନ ଅବସରରେ ମୁଖ୍ୟମନ୍ତ୍ରୀଙ୍କ ବକ୍ତବ୍ୟ***



# ‘‘ଆଜିଠାରୁ ଏହି ଅଞ୍ଚଳ ସ୍ୱାଭିମାନ ଅଞ୍ଚଳ ଭାବରେ ବିକାଶର ନୂଆ ପରିଚୟ ସୃଷ୍ଟି କଲା’’




‘‘ଆଜି କେବଳ ଓଡ଼ିଶା ନୁହେଁ, ସାରା ଭାରତ ପାଇଁ ଏକ ଐତିହାସିକ ଦିନ । ଗୁରୁପ୍ରିୟା ସେତୁ ବିଚ୍ଛିନ୍ନ ହୋଇଥିବା ୧୫୧ଟି ଗାଁର ପରିଚୟ ବଦଳାଇ ଦେଇଛି । ସାତ ଦଶନ୍ଧି ଧରି ବିଚ୍ଛିନ୍ନ ହୋଇ ରହିଥିବା ଏହି ଅଞ୍ଚଳ ଆଜିଠାରୁ ନୂଆ ପରିଚୟ ପାଇଛି । ଏବେଠାରୁ ମାଲକାନଗିରିର ଏହି ଅଞ୍ଚଳରୁ ବିଚ୍ଛିନ୍ନ ଶବ୍ଦଟି ଇତିହାସକୁ ଚାଲିଗଲା। ଆଜିଠାରୁ ଏହି ଅଞ୍ଚଳ ସ୍ୱାଭିମାନ ଅଞ୍ଚଳ ଭାବରେ ବିକାଶର ନୂଆ ପରିଚୟ ସୃଷ୍ଟି କଲା ।

ଗୁରୁପ୍ରିୟା ସେତୁ ଓଡ଼ିଶା ବିକାଶ ଇତିହାସର ଏକ ନୂଆ ମାଇଲଷ୍ଟୋନ ହେବା ସହିତ ଶାନ୍ତି, ସହଯୋଗ ଓ ବିକାଶର ପ୍ରତୀକ ହୋଇରହିବ । ୨୦୧୪ରେ ଆରମ୍ଭ ହୋଇ ମାତ୍ର ୪ ବର୍ଷରେ ଏହି ସେତୁ ସମ୍ପୂର୍ଣ୍ଣ ହୋଇଛି । ଗୁରୁପ୍ରିୟା ସେତୁର ନିର୍ମାଣରେ ବହୁ ଆହ୍ୱାନକୁ ସଫଳ ଭାବରେ ମୁକାବିଲା କରି ଏହି ସେତୁ ନିର୍ମାଣରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିବା ଇଞ୍ଜିନିୟର, ଓଡ଼ିଶା ଓ କେନ୍ଦ୍ର ସରକାରଙ୍କ ପୋଲିସ ବନ୍ଧୁମାନଙ୍କ ତ୍ୟାଗକୁ ମୁଖ୍ୟମନ୍ତ୍ରୀ ପ୍ରଶଂସା କରିଥିଲେ । ଏଥିପାଇଁ ସହିଦ୍ ହୋଇଥିବା ବ୍ୟକ୍ତିମାନଙ୍କ ପ୍ରତି ସେ ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ ।

ବାମପନ୍ଥୀ ଉଗ୍ରବାଦୀମାନଙ୍କୁ ସମାଜର ମୁଖ୍ୟସ୍ରୋତକୁ ଫେରି ଆସିବାକୁ ଆହ୍ୱାନ ଦେଇ ମୁଖ୍ୟମନ୍ତ୍ରୀ କହିଥିଲେ ହିଂସା କୌଣସି ସମସ୍ୟାର ସମାଧାନ ନୁହେଁ । ବିକାଶ ପାଇଁ ଶାନ୍ତି ଗୁରୁତ୍ୱପୂର୍ଣ୍ଣ । ଓଡ଼ିଶାର ବିକାଶଧାରାରେ ମାଲକାନଗିରି ଆଜି ସଫଳ ଭାବରେ ଯୋଡି ହୋଇପାରିଛି । ଜିଲ୍ଲାରେ ଆଜି ଯେଉଁ ବିରାଟ ହସ୍‌ପିଟାଲ ଉଦ୍‌ଘାଟିତ ହେଲା, ତାହା ବିକାଶ ପଥରେ ମାଲକାନଗିରିର ଅଗ୍ରଗତିର ସୂଚନା ଦେଉଛି ବୋଲି ସେ କହିଥିଲେ । ମୁଖ୍ୟମନ୍ତ୍ରୀ କହିଥିଲେ 'ମାଲକାନଗିରି ମୋ ପାଇଁ ସବୁବେଳେ ସ୍ୱତନ୍ତ୍ର ହୋଇରହିଛି ଓ ରହିବ ।''



ସୂଚନାଯୋଗ୍ୟ ଯେ ୧୯୪୦ ଦଶକରୁ ମାଲକାନଗିରିର ୧୫୧ଟି ଗାଁ ମୁଖ୍ୟ ଅଞ୍ଚଳରୁ ବିଚ୍ଛିନ୍ନ ହୋଇଯାଇଥିଲା । ୧୯୬୦ ଦଶକରେ ଏଠାରେ ମାଛକୁଣ୍ଡ ଜଳସେଚନ ଯୋଜନା ଓ ଅଶୀ ଦଶକର ବାଲିମେଳା ଯୋଜନା କାର୍ଯ୍ୟକାରୀ କରାଯାଇଥିଲା । ୧୯୮୬ରେ ଗୁରୁପ୍ରିୟା ସେତୁ ପାଇଁ ପ୍ରସ୍ତାବ ରଖାଯାଇଥିଲା । କିନ୍ତୁ ବହୁ ବର୍ଷ ଧରି ଅନେକ ପ୍ରୟାସ ବିଫଳ ହେବା ପରେ ୨୦୧୪ରେ ରାଜ୍ୟ ସରକାର ନିଜେ କରିବା ପାଇଁ ନିଷ୍ପତ୍ତି ନେଇଥିଲେ । ଏହି ସେତୁର ଦୈର୍ଘ୍ୟ ୯୧୦ ମିଟର ହୋଇଥିବା ବେଳେ ଏହାର ପ୍ରସ୍ଥ ୮.୪ ମିଟର ଏବଂ ଏଥିରେ ୨୨ଟି ସ୍ପାନ ରହିଛି । ଆପ୍ରୋଚ ରୋଡର ଦୈର୍ଘ୍ୟ ୧୨୫୦ ମିଟର । ସମୁଦାୟ ପ୍ରକଳ୍ପ ପାଇଁ ଖର୍ଚ୍ଚ ହୋଇଛି ୧୮୭.୨୫ କୋଟି ଟଙ୍କା ।

*ଗୁରୁପ୍ରିୟା ସେତୁର ଉଦ୍‌ଘାଟନ ଅବସରରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ବକ୍ତବ୍ୟ*



# ସ୍ୱାଭିମାନ ଅଞ୍ଚଳ ପାଇଁ ମୁଖ୍ୟମନ୍ତ୍ରୀଙ୍କ ୧୦୦ କୋଟି ଟଙ୍କାର ସ୍ୱତନ୍ତ୍ର ପ୍ୟାକେଜ୍




ଚିତ୍ରକୋଣ୍ଡାରେ ଗୁରୁପ୍ରିୟା ସେତୁର ଉଦ୍‌ଘାଟନ ଅବସରରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ସ୍ୱାଭିମାନ ଅଞ୍ଚଳର ଜନସାଧାରଣଙ୍କ ଜୀବନ ଓ ଜୀବିକାରେ ଉନ୍ନତି ପାଇଁ ୧୦୦ କୋଟି ଟଙ୍କାର ଏକ ସ୍ୱତନ୍ତ୍ର ପ୍ୟାକେଜ୍ ଘୋଷଣା କରିଛନ୍ତି । ଏହାଦ୍ୱାରା ସ୍ୱାଭିମାନ ଅଞ୍ଚଳ ଓ ସମଗ୍ର ମାଲ୍‌କାନଗିରି ଜିଲ୍ଲାରେ ବିକାଶର ପ୍ରକ୍ରିୟା ତ୍ୱରାନ୍ୱିତ ହୋଇପାରିବ । ଏହି ସ୍ୱତନ୍ତ୍ର ପ୍ୟାକେଜ୍‌ର ବୈଶିଷ୍ଟ୍ୟଗୁଡିକ ହେଲା:

- **ମତ୍ସ୍ୟଚାଷ:** ଚିତ୍ରକୋଣ୍ଡା ଜଳାଶୟରେ ପାଞ୍ଚକୋଟିରୁ ଊର୍ଦ୍ଧ୍ୱ ମାଛ ଯାଆଁଳ ଛଡାଯିବ । ଏହାଦ୍ୱାରା ଅତିକମ୍‌ରେ ୨ ହଜାର ମତ୍ସ୍ୟଜୀବୀ ପରିବାରର ଜୀବନ ଓ ଜୀବିକାରେ ଉନ୍ନତି ଆସିପାରିବ ।

- **ସଡକ ଯୋଗାଯୋଗ:** ଯୋଗାଯୋଗର ଉନ୍ନତି ପାଇଁ ୨ଟି ସଡକ ପ୍ରକଳ୍ପ ହାତକୁ ନିଆଯିବ । ମୁକିପୁଟରୁ ଜାମୁଗୁଡା ଏବଂ ପଣସପୁଟରୁ ଯୋଡାଆମ୍ବ ପର୍ଯ୍ୟନ୍ତ ରାସ୍ତା ନିର୍ମାଣ କରାଯାଇ ଯୋଡାଆମ୍ବ ଓ ପଣସପୁଟ ପଞ୍ଚାୟତକୁ ସଡକ ଯୋଗାଯୋଗ ବ୍ୟବସ୍ଥାରେ ଉନ୍ନତି ଅଣାଯିବ ।

- **ବିଦ୍ୟୁତିକରଣ:** ବଡପଡାଠାରେ ଏକ ୩୩/୧୧ କେ.ଭି. ସବ୍‌-ଷ୍ଟେସନ ନିର୍ମାଣ କରାଯିବ । ଏହାଦ୍ୱାରା ସ୍ୱାଭିମାନ ଅଞ୍ଚଳର ବିଦ୍ୟୁତ୍‌ ଯୋଗାଯୋଗ ବ୍ୟବସ୍ଥାରେ ଉନ୍ନତି ଆସିପାରିବ ।

- **ପାନୀୟଜଳ ଯୋଗାଣ:** ବଡପଡା ଓ ପେପରମେଟଲା ଗ୍ରାମପଞ୍ଚାୟତରେ ୪ଟି ପାଇପ୍‌ ଜଳ ଯୋଗାଣ ପ୍ରକଳ୍ପ ଏବଂ ୧୦୦ଟି ନଳକୂପ ସ୍ଥାପନ କରାଯିବ ।

- **ସ୍ୱାସ୍ଥ୍ୟ ସୁବିଧା :** ଏହି ଅଞ୍ଚଳର ଛଅଟି ଗ୍ରାମପଞ୍ଚାୟତରେ ଉତ୍ତମ ସ୍ୱାସ୍ଥ୍ୟସେବା ପାଇଁ ଆବଶ୍ୟକ ସ୍ଥାନରେ ସ୍ୱାସ୍ଥ୍ୟ ଉପକେନ୍ଦ୍ରମାନ ପ୍ରତିଷ୍ଠା କରାଯିବ ।

- **ସେତୁ:** ମନ୍ୟମ୍‌କୋଣ୍ଡାଠାରେ ଏକ ସେତୁ ନିର୍ମାଣ କରାଯିବ । ଏହାଦ୍ୱାରା ଜନଜାତିମାନଙ୍କୁ ଦ୍ୱିବାର୍ଷିକ ଉତ୍ସବ 'ବଡଯାତ୍ରା' ପାଳନ କରିବାରେ ବହୁତ ସୁବିଧା ହେବ । ପୋଟେରୁ, ପୋଙ୍ଗମ୍‌, କାଙ୍ଗୁରୁକୋଣ୍ଡା, ଏମ୍‌.ଭି.-୯୦, ଉଣ୍ଡୁରୁକୋଣ୍ଡା ଓ ଏମ୍‌.ଭି.-୩୭ର ଉପଯୁକ୍ତ ସ୍ଥାନରେ ବୃହତ ସେତୁ ନିର୍ମାଣ କରାଯାଇ ଏହି ଅଞ୍ଚଳରେ ଯୋଗାଯୋଗ ବ୍ୟବସ୍ଥାରେ ଉନ୍ନତି ଅଣାଯିବ ।



NAVEEN PATNAIK
CHIEF MINISTER, ODISHA



STATE SECRETARIAT
BHUBANESWAR

D.O.No - UM-01/2018-41/CM
Dt. 23.05.2018

Dear Prime Minister Ji,

**Sub: Enhancement of beneficiaries under National Food Security Act.**

This is to bring to your kind notice that for implementation of the National Food Security Act (NFSA), 2013, Odisha was given a target of 3,26,41,800 beneficiaries, which was 78% of the 2011 Census population of 4,19,74,218. We have successfully implemented the programme and are providing ration to the beneficiaries regularly. I am happy to share that under NFSA, Odisha has performed well on most of the parameters.

According to 2011 Census data, the rate of growth of population of Odisha was 14% in the last decade. If we extrapolate this data, then in 2018 the population of Odisha has increased by 10.22% as compared to 2011. It is estimated that the total population of Odisha in 2018 would be 4,62,63,983. Allowing the same percentage of coverage as was decided when the Act came into force, then we are entitled to cover 3,60,85,907 beneficiaries under the NFS Act.

In view of the foregoing, it is requested that additional 34.44 lakh beneficiaries may be sanctioned for the State of Odisha to ensure food security to all eligible persons to serve the objective of the Act. Besides, I would also suggest that a mechanism may be put in place wherein the target is modified at regular intervals to increase the coverage of the beneficiaries in accordance with the increase in population.

With regards,

Yours sincerely,

(NAVEEN PATNAIK)

**SHRI NARENDRA MODI,**
Prime Minister of India,
New Delhi.

Phone : 0674-2531100 (Off.), 0674-2591099 (Res.), Fax : 0674-2535100 (Off.), 0674-2590833 (Res.), E-mail : cmo@nic.in, twitter id : twitter.com/CMO_Odisha
Facebook id : facebook.com/CMO.Odisha

ଜାତୀୟ ଖାଦ୍ୟ ସୁରକ୍ଷା ଅଧିନିୟମ ଅନ୍ତର୍ଗତ ହିତାଧିକାରୀଙ୍କ ସଂଖ୍ୟା ବୃଦ୍ଧି ନିମନ୍ତେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ମାନ୍ୟବର ପ୍ରଧାନମନ୍ତ୍ରୀ ଶ୍ରୀ ନରେନ୍ଦ୍ର ମୋଦିଙ୍କୁ ପତ୍ର ।



ସୂଚନା ଓ ଲୋକସଂପର୍କ ବିଭାଗ
ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ ବିଭାଗ
**ଓଡ଼ିଶା ସରକାର**




ଓଡ଼ିଶା ଆମ ଗୌରବ

# "ଜଣେ ବି ଗରିବ ଲୋକକୁ ଖାଦ୍ୟ ସୁରକ୍ଷାରୁ ବଞ୍ଚିତ ହେବାକୁ ମୁଁ ଦେବି ନାହିଁ ।"

ନବୀନ ପଟ୍ଟନାୟକ
ମୁଖ୍ୟମନ୍ତ୍ରୀ, ଓଡ଼ିଶା



**ରଖିଲେ ଦେଇଥିବା କଥା,**
**ନବୀନ ଓଡ଼ିଶା ପାଇଁ ନିଶ୍ଚିତ କଲେ ଖାଦ୍ୟ ସୁରକ୍ଷା ।**

# ରାଜ୍ୟ ଖାଦ୍ୟ ସୁରକ୍ଷା ଉପରେ
# କ୍ୟାବିନେଟ ମୋହର




କ୍ୟାବିନେଟରେ ରାଜ୍ୟ ଖାଦ୍ୟ ସୁରକ୍ଷା ଉପରେ ମୋହର ଲାଗିଥିବାବେଳେ ହିତାଧିକାରୀ ଚୟନ ପାଇଁ ମଧ ମାନଦଣ୍ଡ ନିର୍ଦ୍ଧାରଣ କରାଯାଇଛି । ଅକ୍ଟୋବର ୨ରୁ ଲାଗୁ ହେବାକୁ ଥିବା ଏହି ଯୋଜନାର ହିତାଧିକାରୀ ଚୟନ ନିମନ୍ତେ ୧୧ଟି ମାନଦଣ୍ଡ ସ୍ଥିରୀକୃତ ହୋଇଛି । ଜାତୀୟ ସୁରକ୍ଷା ଆଇନରେ ଥିବା ୬ଟି ସ୍ୱୟଂ ଅନ୍ତର୍ଭୁକ୍ତିକରଣ ବା ଅଟୋ ଇନକ୍ଲୁଜନ ମାନଦଣ୍ଡ ସହ ଆଉ ୫ଟି ସ୍ୱୟଂ ଅନ୍ତର୍ଭୁକ୍ତିକରଣ ମାନଦଣ୍ଡ ଏଥିରେ ସାମିଲ କରାଯାଇଛି । ମାନଦଣ୍ଡର ଶେଷ ପାଞ୍ଚଟି ବର୍ଗ ନୂତନ ଭାବେ ସାମିଲ କରାଯାଇଛି । ରାଜ୍ୟ ଖାଦ୍ୟ ସୁରକ୍ଷା ଯୋଜନାରେ ସାମିଲ ହିତାଧିକାରୀଙ୍କୁ ୧ଟଙ୍କାରେ ୫କେଜି ଚାଉଳ ପ୍ରଦାନ କରାଯିବ ।

୧. ପିଭିଟିଜି ବର୍ଗରେ ଆସୁଥିବା ପ୍ରତ୍ୟେକ ପରିବାର

୨. ବାସଗୃହ ନଥିବା ପରିବାର (ସ୍ଥାନୀୟ ଜନ ପ୍ରତିନିଧି/ସଂପୃକ୍ତ ବ୍ଲକ୍ ବା ସହରାଞ୍ଚଳ ନିକାୟ ଅଧିକାରୀ ପ୍ରମାଣପତ୍ର ଦେବେ)

୩. ସ୍ୱାମୀ ପରିତ୍ୟକ୍ତା ଥିବା ପରିବାର (ସ୍ଥାନୀୟ ଜନ ପ୍ରତିନିଧି/ସଂପୃକ୍ତ ବ୍ଲକ୍ ବା ସହରାଞ୍ଚଳ ନିକାୟ ଅଧିକାରୀ ପ୍ରମାଣପତ୍ର ଦେବେ)

୪.	ଅନ୍ୟ କୌଣସି ସହାୟତା ନଥିବା ବିଧବା ଓ ଏକାକୀ ମହିଳା ପରିବାର

୫.	ଜଣେ ଭିନ୍ନକ୍ଷମ (୪୦% ବା ତତୋଧିକ) ଥିବା ପରିବାର

୬.	ଟ୍ରାନ୍ସଜେଣ୍ଡର

୭.	ବୟସ୍କ(୬୦ ବର୍ଷ କିମ୍ବା ତଦୂର୍ଦ୍ଧ୍ୱର) ବ୍ୟକ୍ତି ଥିବା ପରିବାର, ଯାହାଙ୍କୁ କୌଣସି ନିୟମିତ ସହାୟତା ବା ଚଳିବା ପାଇଁ କୌଣସି ସୂତ୍ରରୁ ଆଶ୍ୱାସନା ନଥିବ

୮.	ବୟସାଧିକ୍ୟ, ଶାରୀରିକ ଓ ମାନସିକସ୍ତରରେ ଅକ୍ଷମ, ଭିନ୍ନକ୍ଷମ ବା ଅନ୍ୟ ବ୍ୟକ୍ତିଙ୍କ ଯତ୍ନ ଆବଶ୍ୟକ କରୁଥିବା, ବାହାରେ ନିଯୁକ୍ତି ପାଇଁ କୌଣସି ସାବାଳକ ବ୍ୟକ୍ତି ନଥିବା ପରିବାର

୯.	ଦିନ ମଜୁରିଆ ଉପରେ ନିର୍ଭରଶୀଳ ପରିବାର

୧୦.	ବିଭିନ୍ନ ପ୍ରକଳ୍ପ ଯୋଗୁଁ ଆଭ୍ୟନ୍ତରୀଣ ଭାବେ ବିସ୍ଥାପିତ ପରିବାର

୧୧.	କୁଷ୍ଠ/ଏଚଆଇଭି ବା ଅନ୍ୟ ଜଟିଳ ରୋଗାକ୍ରାନ୍ତ ବ୍ୟକ୍ତିଙ୍କ ପରିବାର

ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ ରାଜ୍ୟ କ୍ୟାବିନେଟର ଗୁରୁତ୍ୱପୂର୍ଣ୍ଣ ବୈଠକ ବସିଥିଲା । ବୈଠକର ନିର୍ଯ୍ୟାସ ସମ୍ପର୍କରେ ସୂଚନା ଦେଇ ମୁଖ୍ୟ ଶାସନ ସଚିବ ଆଦିତ୍ୟ ପ୍ରସାଦ ପାଢୀ କହିଲେ ଯେ, କ୍ୟାବିନେଟରେ ରାଜ୍ୟ ଖାଦ୍ୟ ସୁରକ୍ଷାକୁ ଅନୁମୋଦନ କରାଯାଇଛି । ପ୍ରଥମ ଦଫାରେ ରାଜ୍ୟର ୨୫ ଲକ୍ଷ ଲୋକଙ୍କୁ ରାଜ୍ୟ ଖାଦ୍ୟ ସୁରକ୍ଷା ଯୋଜନାରେ ସାମିଲ କରାଯିବ ।








ମୁମ୍ବାଇଠାରେ 'ଓଡ଼ିଶା ଇନ୍‌ଭେଷ୍ଟର୍ସ ମିଟ୍–୨୦୧୮' ଅନୁଷ୍ଠିତ ହୋଇଯାଇଛି । ଏଥିରେ ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଯୋଗଦେଇ ଓଡ଼ିଶାରେ ପୁଞ୍ଜିନିବେଶ କରିବା ପାଇଁ ଶିଳ୍ପପତିମାନଙ୍କୁ ଆହ୍ୱାନ ଜଣାଇଛନ୍ତି । ଏଥିପାଇଁ ମୁମ୍ବାଇଠାରେ ଏକ ରୋଡ୍ ସୋ ମଧ୍ୟ ଅନୁଷ୍ଠିତ ହୋଇଥିଲା । ଏଥିରେ ବିଶିଷ୍ଟ ଶିଳ୍ପପତିମାନେ ଯୋଗ ଦେଇଥିଲେ ।




ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ମୁମ୍ବାଇଠାରେ ଓଡ଼ିଶା ଇନ୍‌ଭେଷ୍ଟର୍ସ ମିଟ୍ ଅବସରରେ
ଫିକି ତଥା ମହାରାଷ୍ଟ୍ର ରାଜ୍ୟ ପରିଷଦର ଅଧ୍ୟକ୍ଷ ଓ ସେଣ୍ଟ୍ରମ୍ ଗ୍ରୁପ୍‌ର କାର୍ଯ୍ୟନିର୍ବାହୀ ଅଧ୍ୟକ୍ଷ
ଶ୍ରୀ ଯଶପାଲ୍ ବିନ୍ଦ୍ରାଙ୍କ ସହ ଆଲୋଚନା କରୁଛନ୍ତି ।




ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ମୁମ୍ବାଇଠାରେ ଓଡ଼ିଶା ଇନ୍‌ଭେଷ୍ଟର୍ସ ମିଟ୍ ଅବସରରେ
ମହିନ୍ଦ୍ରା ଗ୍ରୁପ୍‌ର ଅଧ୍ୟକ୍ଷ ଶ୍ରୀ ଆନନ୍ଦ ମହିନ୍ଦ୍ରାଙ୍କ ସହ ଆଲୋଚନା କରୁଛନ୍ତି ।





*ସ୍ୱାଧୀନତା ଦିବସ -୨୦୧୮ ଅବସରରେ*

## ଓଡ଼ିଶାର ମାନ୍ୟବର ରାଜ୍ୟପାଳ

## **ପ୍ରଫେସର ଗଣେଶୀ ଲାଲଙ୍କ**

# **ବାର୍ତ୍ତା**

ପ୍ରିୟ ଭଉଣୀ ଓ ଭାଇମାନେ,

୭୨ତମ ସ୍ୱାଧୀନତା ଦିବସ ପାଳନ ଅବସରରେ ଆପଣମାନଙ୍କୁ ମୋର ହାର୍ଦ୍ଦିକ ଅଭିନନ୍ଦନ ଏବଂ ଶୁଭେଚ୍ଛା ଜଣାଉଛି ।

ଆଜିର ଏହି ଐତିହାସିକ ଦିବସ ଅବସରରେ, ଆସନ୍ତୁ, ଆମ ସ୍ୱାଧୀନତା ସଂଗ୍ରାମର ମହାନ୍ ଜାତୀୟତାବାଦୀ ନେତୃମଣ୍ଡଳୀଙ୍କର ଶୌର୍ଯ୍ୟ ଓ ଅମୂଲ୍ୟ ଅବଦାନକୁ ସ୍ମରଣ କରିବା । ୧୯୪୭ ମସିହାର ଆଜିର ଏହି ଦିନରେ ଜାତିର ପିତା ମହାତ୍ମା ଗାନ୍ଧିଜୀଙ୍କର ପ୍ରଦର୍ଶିତ ଅହିଂସା ମାର୍ଗକୁ ଅନୁସରଣ କରି ଆମର ପ୍ରିୟ ମାତୃଭୂମି ନିମନ୍ତେ ଆମେ ସ୍ୱାଧୀନତା ଲାଭ କରିଥିଲୁ ।

ଆଜିର ଏହି ପବିତ୍ର ଦିବସରେ, ଆସନ୍ତୁ, ଜାତିର ପିତା ମହାତ୍ମା ଗାନ୍ଧୀ, ବିଶିଷ୍ଟ ଜାତୀୟତାବାଦୀ ନେତୃବୃନ୍ଦ ପଣ୍ଡିତ ଜବାହରଲାଲ ନେହେରୁ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ମୌଲାନା ଅବୁଲ କଲାମ୍ ଆଜାଦ୍, ନେତାଜୀ ସୁଭାଷ ଚନ୍ଦ୍ର ବୋଷ, ମହାନ୍ ବିପ୍ଳବୀ ଶହୀଦ୍ ଭଗତ୍ ସିଂ, ଚନ୍ଦ୍ରଶେଖର ଆଜାଦ୍ ଏବଂ ନିଜ ମାତୃଭୂମିର ମହାନ୍ ଦେଶପ୍ରେମୀ ଜୟୀ ରାଜଗୁରୁ, ବକ୍ସି ଜଗବନ୍ଧୁ,

ବୀର ସୁରେନ୍ଦ୍ର ସାଏ, ସହିଦ୍ ଲକ୍ଷ୍ମଣ ନାଏକ, ରଘୁ-ଦିବାକର, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଉତ୍କଳ ଗୌରବ ମଧୁସୂଦନ ଦାସ, ପଣ୍ଡିତ ନୀଳକଂଠ ଦାସ, ଆଚାର୍ଯ୍ୟ ହରିହର, ମା' ରମାଦେବୀ, ମାଳତୀ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ବିଶ୍ୱନାଥ ଦାସ, ଡକ୍ଟର ହରେକୃଷ୍ଣ ମହତାବ, ବିଜୁ ପଟ୍ଟନାୟକ, ଅଗଣିତ ସ୍ୱାଧୀନତା ସଂଗ୍ରାମୀ, ଦେଶପ୍ରେମୀ ଏବଂ ଆହୁରି ଅନେକ ବୀର ସଂଗ୍ରାମୀ ଯେଉଁମାନଙ୍କର ଆତ୍ମବଳିଦାନ ଯୋଗୁଁ ଆମର ପ୍ରିୟ ମାତୃଭୂମି ସ୍ୱାଧୀନତା ହାସଲ କରିପାରିଥିଲା, ସେମାନଙ୍କୁ ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଜଣାଇବା । ବାସ୍ତବିକ୍ ଆଜିର ଏହି ଦିବସ ହେଉଛି ମର୍ଯ୍ୟାଦା, ସମ୍ମାନ ଏବଂ ଆତ୍ମସମୀକ୍ଷାର ଉତ୍ପ୍ରେରକ ।

ଆମ ଦେଶ ମାତୃକାର ସୁରକ୍ଷା ପାଇଁ ଆତ୍ମୋତ୍ସର୍ଗ କରିଥିବା ଆମର ବୀର ସହିଦ୍, ଯବାନ, କର୍ତ୍ତବ୍ୟରତ ଥାଇ ପ୍ରାଣତ୍ୟାଗ କରିଥିବା ସାମରିକ ଅଧିକାରୀମାନଙ୍କ ପ୍ରତି ଆମେ ଆମ ହୃଦୟରୁ କୃତଜ୍ଞତା ଜଣାଉଛୁ । ଆଜିର ଏହି ଘଟଣାବହୁଳ ଦିନରେ, ଆସନ୍ତୁ, ଆମ ଦେଶର ସାର୍ବଭୌମତ୍ୱ ସୁରକ୍ଷା ଦିଗରେ ସୀମାରେ ନିୟୋଜିତ ଥାଇ ଆତ୍ମବଳିଦାନ ଦେଇଥିବା ସାହସୀ ସୈନିକମାନଙ୍କୁ ଆମର ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବା । ସେମାନଙ୍କ ଶୋକସନ୍ତପ୍ତ ପରିବାରର ଏହି ଦୁଃଖଦ ସମୟରେ ସମଗ୍ର ଦେଶ ଓ ଜାତି ତାଙ୍କ ସହିତ ରହିଛି ।

ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶା ପୁରୋଭାଗରେ ରହି ଏହାର କର୍ତ୍ତବ୍ୟ ନିର୍ବାହ କରିଛି । ଓଡ଼ିଶାର ବରପୁତ୍ରମାନଙ୍କର ନିଃସ୍ୱାର୍ଥପର ତ୍ୟାଗ ଏବଂ ଅସୀମ ଅବଦାନ ସମ୍ପର୍କରେ ଓଡ଼ିଶା ଇତିହାସରେ ଲିପିବଦ୍ଧ ରହିଛି । ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶାର ଜନସାଧାରଣ ସକ୍ରିୟ ଅଂଶଗ୍ରହଣ

କରିଥିଲେ । ଓଡ଼ିଶାର ବିଭିନ୍ନ ସ୍ଥାନରେ ବ୍ରିଟିଶ୍ ବିରୋଧୀ ବିଦ୍ରୋହ ଦେଖାଯାଇଥିଲା । ୧୮୫୭ ମସିହା ବିଦ୍ରୋହର ୪୦ ବର୍ଷ ପୂର୍ବରୁ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ଖୋର୍ଦ୍ଧାର ପାଇକ ବିଦ୍ରୋହ ସଂଘଟିତ ହୋଇଥିଲା । ସାଧାରଣ ଜନତାଙ୍କର ଅଧିକାର ଏବଂ ସାର୍ବଭୌମତ୍ୱର ସୁରକ୍ଷା ଦିଗରେ ଅଭିପ୍ରେତ ଏହି ଜନଆନ୍ଦୋଳନ ତୃଣମୂଳ ସ୍ତରରୁ ଆରମ୍ଭ ହୋଇଥିଲା । ପ୍ରଥମ ଭାରତୀୟ ସ୍ୱାଧୀନତା ଆନ୍ଦୋଳନ ଭାବେ ଏହାକୁ ଅଭିହିତ କରିବାର ଯଥେଷ୍ଟ ଐତିହାସିକ ପ୍ରମାଣ ରହିଛି । ସେହିପରି, ଲବଣ ସତ୍ୟାଗ୍ରହ ଏବଂ ଭାରତଛାଡ ଆନ୍ଦୋଳନରେ ଅଂଶଗ୍ରହଣ କରିଥିବା ଓଡ଼ିଶାର ଭୂମିକା ଥିଲା ଅନନ୍ୟ ।

ନୂତନ ସହସ୍ରାବ୍ଦୀରେ ଅଭିବୃଦ୍ଧି ଦିଗରେ ଅଗ୍ରସର ଓଡ଼ିଶା ବସ୍ତୁତଃ ସଶକ୍ତିକରଣ ଉପରେ ଗୁରୁତ୍ୱପୂର୍ବକ ସାମୂହିକ  ବିକାଶ ଦିଗରେ ତତ୍ପରତା ପ୍ରକାଶ କରିଆସୁଛି । ଏହା ହେଉଛି ପୁନରୁତ୍ଥାନ ଓ ସ୍ଥିତିସ୍ଥାପକତାର ଗାଥା ।  ମହିଳା ଏବଂ ବାଳିକା, କୃଷକ, ନିର୍ମାଣ ଶ୍ରମିକ, ଦିନ ମଜୁରିଆ ତଥା ସଂଖ୍ୟାଲଘୁବର୍ଗ, ଗ୍ରାମାଞ୍ଚଳ ଏବଂ ସହରାଞ୍ଚଳର ଗରିବ ଓ ଅସହାୟ, ଅନୁସୂଚିତ ଜାତି ଏବଂ ଜନଜାତିବର୍ଗ, ବୃଦ୍ଧ ଏବଂ ଭିନ୍ନକ୍ଷମ ବ୍ୟକ୍ତିମାନଙ୍କ ହିତସାଧନ ନିମନ୍ତେ ରାଜ୍ୟରେ ଅନେକ ଜନହିତକାରୀ ଅଭିନବ ଯୋଜନାମାନ ପ୍ରଣୟନ କରାଯାଇଛି ।

ଆମ ବିକାଶ ପ୍ରକ୍ରିୟାରେ ପ୍ରଯୁକ୍ତିର ଧାରା ଏକ ପ୍ରମୁଖ ଭୂମିକା ଗ୍ରହଣ କରିଛି । ରାଜ୍ୟରେ ଦୁର୍ନୀତିମୁକ୍ତ ଏବଂ ସ୍ୱଚ୍ଛ ତଥା ସୁଶାସନ ଦିଗରେ ରାଜ୍ୟ ସରକାର ପ୍ରାଧାନ୍ୟ ଦେଇଆସିଛନ୍ତି । ୩ ଗୋଟି 'ଟି' ଯଥା– ଟିମ୍‌ୱାର୍କ (ଦଳଗତ କାର୍ଯ୍ୟ), ଟେକ୍ନୋଲୋଜି (ପ୍ରଯୁକ୍ତିବିଦ୍ୟା), ଟ୍ରାନ୍ସପାରେନ୍ସି (ସ୍ୱଚ୍ଛତା) ପଦ୍ଧତି ଆମର ଜନସାଧାରଣଙ୍କ ଉପରେ ଗଭୀର ପ୍ରଭାବ ପକାଇଛି । ୩ ଗୋଟି 'ଆଇ' ଯଥା– ଇରିଗେସନ୍

(ଜଳସେଚନ), ଇନ୍‌ଫ୍ରାଷ୍ଟ୍ରକ୍‌ଚର (ଭିତ୍ତିଭୂମି) ଏବଂ ଇନ୍‌କ୍ଲୁଜନ୍ (ଅନ୍ତର୍ଭୁକ୍ତି) ଦ୍ୱାରା କୃଷି ନିମନ୍ତେ ବର୍ଦ୍ଧିତ ଜଳସେଚନ ସୁବିଧା, ଉଭୟ ଗ୍ରାମୀଣ ଏବଂ ସହରୀ ଓଡ଼ିଶାର ସାମଗ୍ରିକ ଅଭିବୃଦ୍ଧି ନିମନ୍ତେ ଭିତ୍ତିଭୂମି ବିକାଶ ଏବଂ ଶାସନ ପ୍ରକ୍ରିୟାରେ ମହିଳା, ଅନୁସୂଚିତ ଜନଜାତି ଏବଂ ଜାତି ଓ ସଂଖ୍ୟାଲଘୁବର୍ଗଙ୍କର ଅନ୍ତର୍ଭୁକ୍ତି ସମ୍ଭବ ହୋଇପାରିଛି । ସେହିପରି ୩ ଗୋଟି 'ଡି' ଯଥା– ଡେଡିକେସନ୍ (ଉତ୍ସର୍ଗୀକୃତ ମନୋଭାବ), ଡିଟରମିନେସନ୍ (ଦୃଢ଼ ମନୋବଳ) ଏବଂ ଡିଭୋସନ୍ (କର୍ତ୍ତବ୍ୟନିଷ୍ଠା) ହେଉଛି ଶାସନର ପଥପ୍ରଦର୍ଶକ ନୀତି, ଯାହାକି ବିଭିନ୍ନ ଯୋଜନା ଏବଂ କାର୍ଯ୍ୟକ୍ରମ ପ୍ରଣୟନ ଦିଗରେ ପ୍ରଭାବ ବିସ୍ତାର କରିପାରିଛି ।

ବିଗତ ଦଶନ୍ଧିରେ ରାଜ୍ୟରେ ସାମଗ୍ରିକ ଅଭିବୃଦ୍ଧିକୁ ସୁନିଶ୍ଚିତ କରିବା ଲକ୍ଷ୍ୟରେ କୃଷିଠାରୁ ଶିକ୍ଷା, ଦକ୍ଷତା ବିକାଶରୁ ମହିଳା ସଶକ୍ତିକରଣ, ସାମାଜିକ ସୁରକ୍ଷାଠାରୁ ଖାଦ୍ୟନିରାପତ୍ତା ପର୍ଯ୍ୟନ୍ତ ଉଲ୍ଲେଖନୀୟ କାର୍ଯ୍ୟ ସାଧିତ ହୋଇପାରିଛି । ଜାତୀୟ ତଥା ଅନ୍ତର୍ଜାତୀୟ ବେଞ୍ଚମାର୍କ ପ୍ରତିଷ୍ଠା ସହ ସ୍ୱାସ୍ଥ୍ୟଠାରୁ ଆଶ୍ରୟ ନିରାପତ୍ତା, ବିପର୍ଯ୍ୟୟ ପରିଚାଳନାଠାରୁ ଭିତ୍ତିଭୂମି ବିକାଶ, ଦାରିଦ୍ର୍ୟ ଦୂରୀକରଣଠାରୁ ଆର୍ଥିକ ସୁପରିଚାଳନା ଦିଗରେ ରାଜ୍ୟ ଅପୂର୍ବ ସଫଳତା ହାସଲ କରିପାରିଛି । ସମ୍ମିଳିତ ଏବଂ ନିରନ୍ତର ଉଦ୍ୟମ ବଳରେ ଓଡ଼ିଶା ଅନ୍ତର୍ଜାତୀୟ ପରିଚିତି ଲାଭ କରିଛି ଏବଂ କ୍ରୀଡା କ୍ଷେତ୍ରରେ ଏକ ବିକଶିତ ଶକ୍ତିଭାବେ ଉଭା ହୋଇ ଭାରତର କ୍ରୀଡା ରାଜଧାନୀର ମାନ୍ୟତା ଲାଭ କରିପାରିଛି ।

ରାଜ୍ୟର ପ୍ରମୁଖ ପଦକ୍ଷେପ ମଧ୍ୟରେ ମହିଳା ସଶକ୍ତିକରଣ ବିଶେଷ ଗୁରୁତ୍ୱ ଲାଭ କରିଛି । ରାଜ୍ୟର ଏକ ପ୍ରମୁଖ ଯୋଜନା 'ମମତା' ଅଧୀନରେ ୩୦ ଲକ୍ଷରୁ ଊର୍ଦ୍ଧ୍ୱ ମହିଳା ସାମିଲ ହୋଇପାରିଛନ୍ତି । ଅଧୁନା ଅନ୍ୟୂନ ୭୦ ଲକ୍ଷ ମହିଳା ମିଶନ ଶକ୍ତିରେ ଅଂଶୀଦାର ହୋଇପାରିଛନ୍ତି ।

ପଞ୍ଚାୟତିରାଜ ଏବଂ ସ୍ୱାୟତ୍ତଶାସନ ସଂସ୍ଥାରେ ମହିଳାଙ୍କ ନିମନ୍ତେ ୫୦ ପ୍ରତିଶତ ସ୍ଥାନ ସଂରକ୍ଷଣ ଦ୍ୱାରା ନିଷ୍ପତ୍ତି ଗ୍ରହଣ କରିବା ଦିଗରେ ସେମାନଙ୍କର ଦୃଢ଼ ପ୍ରତିନିଧିତ୍ୱକୁ ସୁନିଶ୍ଚିତ କରିଛି ।

ଆଗାମୀ ପିଢ଼ିଙ୍କୁ ସଶକ୍ତ କରିବା ଦିଗରେ ଶିକ୍ଷା ଏବଂ ଦକ୍ଷତା ବିକାଶ ଅତୀବ ଗୁରୁତ୍ୱ ବହନ କରିଛି । ୫୬ ହଜାର ଛାତ୍ରଛାତ୍ରୀଙ୍କ ଅନ୍ତର୍ଭୁକ୍ତିରେ ୧୯୦ଟି ଆଦର୍ଶ ବିଦ୍ୟାଳୟ ରାଜ୍ୟରେ କାର୍ଯ୍ୟକ୍ଷମ ହୋଇଛି । ଶିକ୍ଷାର ପ୍ରସାର ଲକ୍ଷ୍ୟରେ ଅନ୍ୟୂନ ୨୦ ଲକ୍ଷ ଛାତ୍ରଛାତ୍ରୀଙ୍କ ନିମନ୍ତେ ଏକ ପ୍ରତିଶତରେ ଶିକ୍ଷା ଋଣ ପ୍ରଦାନ ସହ ବୃତ୍ତି ବ୍ୟବସ୍ଥା ପ୍ରଚଳନ କରାଯାଇଛି । ଶିକ୍ଷାର ଭିତ୍ତିଭୂମି ବିକାଶ ଦିଗରେ ରାଜ୍ୟ ସରକାରଙ୍କ ଅଭିନବ ନାଗରିକ ସଂଯୋଗ କାର୍ଯ୍ୟକ୍ରମ 'ମୋ ସ୍କୁଲ' ଅଭିଯାନ ପୁରାତନ ଛାତ୍ରଛାତ୍ରୀଙ୍କୁ ସେମାନଙ୍କର ସ୍କୁଲରେ  ଶୈକ୍ଷିକ ବାତାବରଣର ଉନ୍ନତିରେ ବେଶ୍ ସହାୟକ ହୋଇପାରିଛି । ଏହି ଅଭିଯାନ ଜରିଆରେ ୨୦ ହଜାର ବିଦ୍ୟାଳୟରେ ଗୋଷ୍ଠୀଭିତ୍ତିକ କାର୍ଯ୍ୟକ୍ରମ ଆରମ୍ଭ କରାଯାଇପାରିଛି ।

ମାନବ ସମ୍ବଳ ବିକାଶ ଦିଗରେ ଧ୍ୟାନ ଦେବା ସହ ରାଜ୍ୟ ସରକାର 'ସ୍କିଲ୍ସ ଇନ୍ ଓଡ଼ିଶା' କାର୍ଯ୍ୟକ୍ରମର ଶୁଭାରମ୍ଭ କରିଛନ୍ତି । ଯାହାକି ଏକ ପ୍ରମୁଖ କାର୍ଯ୍ୟକ୍ରମ ରୂପେ ପରିଗଣିତ ହୋଇପାରିଛି । ଆମ ଯୁବଶକ୍ତିର ଦକ୍ଷତା ଜରିଆରେ ମାନବ ସମ୍ବଳ ବିକାଶ ସୁନିଶ୍ଚିତ କରିବାକୁ ବାହ୍ୟିକ, ବୈଷୟିକ ଏବଂ ବୌଦ୍ଧିକ ଭିତ୍ତିଭୂମି ପ୍ରଦାନ ନିମନ୍ତେ ରାଜ୍ୟ ସରକାର ପ୍ରତିଶ୍ରୁତିବଦ୍ଧ ।

ବସ୍ତିବାସିନ୍ଦାମାନଙ୍କୁ ଭୂମି ଅଧିକାର ଯୋଗାଇଦେବା ନିମନ୍ତେ ଏକ ଆଇନ୍ ପ୍ରଣୟନ କରିବାରେ ଓଡ଼ିଶା ହେଉଛି ସମଗ୍ର ଦେଶରେ ପ୍ରଥମ ରାଜ୍ୟ । ଓଡ଼ିଶାର ପ୍ରାୟ ୨୫ଶହ ବସ୍ତିର ୧୦ ଲକ୍ଷରୁ ଊର୍ଦ୍ଧ୍ୱ ବସ୍ତିବସିନ୍ଦାଙ୍କ ସୁବିଧାକୁ ଦୃଷ୍ଟିରେ ରଖି ବିଶ୍ୱର ବୃହତ୍ ଅଭିଯାନ ରୂପେ ବିବେଚିତ ବସ୍ତିବାସିନ୍ଦା ଭୂମି ଅଧିକାର ପ୍ରକଳ୍ପ 'ଜାଗା'ର ଶୁଭାରମ୍ଭ କରାଯାଇଛି ।

ଆମର ଆଦିବାସୀ ଜନସାଧାରଣଙ୍କର ସଶକ୍ତିକରଣ ଦିଗରେ ଅନ୍ୟତମ ଐତିହାସିକ ପଦକ୍ଷେପ ଭାବେ ସେମାନଙ୍କର ସାଂସ୍କୃତିକ, ଐତିହ୍ୟର ସଂରକ୍ଷଣ ଏବଂ ବିକାଶ ନିମନ୍ତେ ସୁନ୍ଦରଗଡ, ଗଜପତି, ମୟୂରଭଞ୍ଜ, କେନ୍ଦୁଝର, ରାୟଗଡା, କୋରାପୁଟ, ନବରଙ୍ଗପୁର, ମାଲକାନଗିରି ଏବଂ କନ୍ଧମାଳ ପରି ୯ଗୋଟି ଆଦିବାସୀ ଅଧ୍ୟୁଷିତ ଜିଲ୍ଲା ପାଇଁ ରାଜ୍ୟ ସରକାର ସ୍ୱତନ୍ତ୍ର ଉନ୍ନୟନ ପରିଷଦ ଗଠନ କରିଛନ୍ତି । ଜାତୀୟ ଖାଦ୍ୟନିରାପତ୍ତା ଅଧିନିୟମ, ୨୦୧୩ରେ ଅନ୍ତର୍ଭୁକ୍ତ ହୋଇପାରିନଥିବା ଗରିବ ହିତାଧିକାରୀମାନଙ୍କ ଅବସ୍ଥାକୁ ଦୃଷ୍ଟିରେ ରଖି ସେମାନଙ୍କ ଖାଦ୍ୟ ସୁରକ୍ଷା ନିମନ୍ତେ ରାଜ୍ୟ ନିଜସ୍ୱ ପାଣ୍ଠିରୁ ଖାଦ୍ୟ ନିରାପତ୍ତା ଯୋଜନା ପ୍ରଣୟନ କରିଛି । ଏହି ନୂତନ ଯୋଜନା ଅଧୀନରେ ଏପରି ସମସ୍ତ ଗରିବ ଏବଂ ଯୋଗ୍ୟ ହିତାଧିକାରୀଙ୍କ ନିମନ୍ତେ ରାଜ୍ୟ ଖାଦ୍ୟ ସୁରକ୍ଷା ସୁନିଶ୍ଚିତ କରିବ ।

ମେକ୍ ଇନ୍ ଓଡ଼ିଶା କନ୍‌କ୍ଲେଭ୍ ୨୦୧୬ର ପ୍ରଥମ ସଂସ୍କରଣରେ ୨ଲକ୍ଷ କୋଟି ଟଙ୍କାର ପୁଞ୍ଜିନିବେଶ ନିମନ୍ତେ ଘୋଷଣା କରାଯାଇଛି । ବିଭିନ୍ନ ପ୍ରକଳ୍ପ ପ୍ରତିଷ୍ଠା ଦିଗରେ ରାଜ୍ୟ ସରକାର ନିଜର ପ୍ରତିବଦ୍ଧତା ବଜାୟ ରଖିଛନ୍ତି । ଏଗୁଡ଼ିକ ମଧ୍ୟରୁ ୬୫% ପ୍ରକଳ୍ପ ଅନୁମୋଦନ ଓ ରୂପାୟନର ବିଭିନ୍ନ ସ୍ତରରେ ଅଛି । ମେକ୍ ଇନ୍ ଓଡ଼ିଶା କନ୍‌କ୍ଲେଭ୍‌ର ପ୍ରଥମ ସଂସ୍କରଣର ସଫଳତାରେ ଉତ୍ସାହିତ ହୋଇ ରାଜ୍ୟ ସରକାର ୨୦୧୮ ମସିହା ନଭେମ୍ବର ମାସରେ ଏହାର ଦ୍ୱିତୀୟ ସଂସ୍କରଣ ଆୟୋଜନ କରିବାକୁ ଯାଉଛନ୍ତି ।

ବିକାଶ ପ୍ରକ୍ରିୟାରେ ଜନସାଧାରଣଙ୍କୁ ସାମିଲ କରି ସେମାନଙ୍କୁ ଶାସନର ନିକଟତର କରିବା ଦିଗରେ ରାଜ୍ୟ ଧ୍ୟାନ କେନ୍ଦ୍ରୀଭୂତ କରିଛି । ଏହାଦ୍ୱାରା ଗ୍ରାମଗୁଡ଼ିକର ସର୍ବାଙ୍ଗୀନ ଉନ୍ନତି

ସମ୍ଭବ ହୋଇପାରିଛି । 'ଆମ ଗାଁ, ଆମ ବିକାଶ' ପରି ଏକ ଅଭିନବ ପଦକ୍ଷେପ ଦ୍ୱାରା ଭିଡ଼ିଓ କନ୍‌ଫରେନ୍‌ସିଂ ଜରିଆରେ ସାଧାରଣ ଜନତା ଓ ଲୋକ ପ୍ରତିନିଧିମାନଙ୍କ ସହ ମୁଖ୍ୟମନ୍ତ୍ରୀଙ୍କର ସିଧାସଳଖ ଆଲୋଚନା ହୋଇପାରୁଛି ଏବଂ ଗ୍ରାମର ଭିତ୍ତିଭୂମି ବିକାଶ ସହ ସାମାଜିକ ଅର୍ଥନୈତିକ ଅବସ୍ଥାର ଉନ୍ନତି ଦିଗରେ ଅଭିପ୍ରେତ ପ୍ରକଳ୍ପଗୁଡ଼ିକର ତୁରନ୍ତ ଅନୁମୋଦନ ସମ୍ଭବ ହୋଇପାରୁଛି । ରାଜ୍ୟର ନିଜସ୍ୱ ସମ୍ବଳରୁ ୭୦୭ କୋଟି ଟଙ୍କାର ବ୍ୟୟ ବରାଦ ସହ 'ଆମ ଗାଁ, ଆମ ବିକାଶ' କାର୍ଯ୍ୟକ୍ରମରେ ଅଦ୍ୟାବଧି ୧୩୯ଗୋଟି ବ୍ଲକ୍ ସାମିଲ ହୋଇପାରିଛନ୍ତି । ଏହାଦ୍ୱାରା ୨୮ ହଜାରରୁ ଉର୍ଦ୍ଧ୍ୱ ଭିତ୍ତିଭୂମି ପ୍ରକଳ୍ପ ମଞ୍ଜୁର କରାଯାଇଛି, ଯାହାକି ଟେକ୍‌ନୋଲୋଜି, ଟ୍ରାନ୍ସପାରେନ୍ସି ଏବଂ ଟିମ୍‌ୱାର୍କ ପଦ୍ଧତି ପ୍ରୟୋଗର ସଫଳତା ସ୍ୱରୂପ ରାଜ୍ୟର ଗ୍ରାମୀଣ ବିକାଶ ଦିଗରେ ବେଶ୍ ସହାୟକ ସାବ୍ୟସ୍ତ ହୋଇପାରିଛି ।

ସେହିପରି ରାଜ୍ୟ ସରକାରଙ୍କ ଦ୍ୱାରା ସହରାଞ୍ଚଳର ବିକାଶ ଦିଗରେ ଏକ ଅଭିନବ ପଦକ୍ଷେପ 'ଉନ୍ନତି'ର ଶୁଭାରମ୍ଭ କରାଯାଇଛି । ଭିତ୍ତିଭୂମି ବିକାଶ ନିମନ୍ତେ ପାଣ୍ଠି ଯୋଗାଇ ଦେବା ଦ୍ୱାରା ରାଜ୍ୟର ସମସ୍ତ ସହରାଞ୍ଚଳର ସର୍ବାଙ୍ଗୀନ ସାମଗ୍ରିକ ଭିତ୍ତିଭୂମି ବିକାଶ ସାଧିତ ହୋଇପାରିବ । ଏହି ଅନନ୍ୟ ଯୋଜନା ଅଧୀନରେ କାର୍ଯ୍ୟଗୁଡିକ ସାରା ରାଜ୍ୟରେ ଆଗେଇ ଚାଲିଛି ।

ବିନା ମୂଲ୍ୟରେ ଉନ୍ନତମାନର ସ୍ୱାସ୍ଥ୍ୟସେବା ଯୋଗାଇଦେବା ନିମନ୍ତେ ଏକ ଯୁଗାନ୍ତକାରୀ ପଦକ୍ଷେପ ସ୍ୱରୂପ ରାଜ୍ୟ ସରକାର 'ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନା'ର ଶୁଭାରମ୍ଭ କରିଛନ୍ତି, ଯାହାକି ସମଗ୍ର ଦେଶରେ ସର୍ବପ୍ରଥମ । ପ୍ରାୟ ୩.୫ କୋଟି ଲୋକଙ୍କୁ ସାମିଲ କରି ୭୧ ଲକ୍ଷରୁ ଉର୍ଦ୍ଧ୍ୱ ପରିବାର ନିମନ୍ତେ ଏହା ସ୍ୱାସ୍ଥ୍ୟ ନିରାପତ୍ତା ସୁନିଶ୍ଚିତ କରିବ । ଉକ୍ତ ଯୋଜନାରେ ସମସ୍ତ ଖର୍ଚ୍ଚ ରାଜ୍ୟ ସରକାର

ବହନ କରିବେ । ଏଥିରେ ପରିବାର ପ୍ରତି ବାର୍ଷିକ ୫ଲକ୍ଷ ଟଙ୍କାର ଚିକିତ୍ସା ସହାୟତା ସହ ପରିବାରର ମହିଳା ସଦସ୍ୟାଙ୍କ ନିମନ୍ତେ ୨ଲକ୍ଷ ଟଙ୍କାର ଅତିରିକ୍ତ ଚିକିତ୍ସା ସହାୟତା ଯୋଗାଇ ଦିଆଯାଉଛି । ମହିଳା ସଦସ୍ୟାମାନଙ୍କ ସହ ପରିବାର ନିମନ୍ତେ ସମୁଦାୟ ୭ ଲକ୍ଷ ଟଙ୍କାର ପାରିବାରିକ ସ୍ୱାସ୍ଥ୍ୟ ସୁବିଧା ଉପଲବ୍ଧ ହୋଇପାରିବ ।

ନିକଟରେ ଜନସାଧାରଣଙ୍କ ନିମନ୍ତେ ଗୁରୁପ୍ରିୟା ସେତୁ କାର୍ଯ୍ୟକ୍ଷମ ହୋଇଛି । ମାଲକାନଗିରି ଜିଲ୍ଲାର ୧୫୧ଟି ବିଚ୍ଛିନ୍ନାଞ୍ଚଳ ଗ୍ରାମବାସୀଙ୍କର ସାମାଜିକ-ଅର୍ଥନୈତିକ ଉନ୍ନତି କ୍ଷେତ୍ରରେ ଏହା ଏକ ଉଲ୍ଲେଖନୀୟ ପଦକ୍ଷେପ । ଏହି ୯୧୦ ମିଟର ଦୈର୍ଘ୍ୟ ବିଶିଷ୍ଟ ସେତୁ ବିଚ୍ଛିନ୍ନାଞ୍ଚଳର ଯୋଗାଯୋଗ ସମସ୍ୟାର ଅନ୍ତ କରିବା ସହ ଉକ୍ତ ଅଞ୍ଚଳରେ ବସବାସ କରୁଥିବା ଅଧିବାସୀମାନଙ୍କ ମଧ୍ୟରେ ଆତ୍ମବିଶ୍ୱାସ ବୃଦ୍ଧି କରିବାରେ ଓ ସେମାନଙ୍କ ସ୍ୱାଭିମାନ ବଜାୟ ରଖିବାରେ ସହାୟକ ସାବ୍ୟସ୍ତ ହୋଇଛି । ଏଥିସହ ଉକ୍ତ ଅଞ୍ଚଳର ସାମଗ୍ରିକ ସାମାଜିକ-ଅର୍ଥନୈତିକ ପରିବର୍ତ୍ତନ ନିମନ୍ତେ ୧୦୦ କୋଟି ଟଙ୍କା ପ୍ୟାକେଜ୍‌ର 'ସେତୁ' ରାଜ୍ୟ ସରକାର ଘୋଷଣା କରିଛନ୍ତି ।

ରାଜ୍ୟ ସରକାର ଏବଂ ଓଡ଼ିଶାର ଜନସାଧାରଣଙ୍କର ନିଷ୍ଠାପର ତଥା ସମ୍ମିଳିତ ଉଦ୍ୟମ ସହ ଆମେ ଆମ ରାଜ୍ୟର ବିକାଶକୁ ସର୍ବୋଚ୍ଚ ଶିଖରରେ ପହଞ୍ଚାଇ ପାରିବା । ଆସନ୍ତୁ, ଏଥିନିମନ୍ତେ ଆମେ ସମସ୍ତେ ନିଜକୁ ଉତ୍ସର୍ଗ କରିବା ଓ ଓଡ଼ିଶାକୁ ଏକ ସମୃଦ୍ଧ ତଥା ସମ୍ପୂର୍ଣ୍ଣ ସଶକ୍ତ ରାଜ୍ୟ ରୂପେ ପରିଣତ କରିବା ଦିଗରେ ମିଳିମିଶି କାର୍ଯ୍ୟ କରିବା ।

**ଜୟ ହିନ୍ଦ୍ ।**

*ସ୍ୱାଧୀନତା ଦିବସ -୨୦୧୮ ଅବସରରେ*

ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ

**ଶ୍ରୀ ନବୀନ ପଟ୍ଟନାୟକଙ୍କ**

**ବାର୍ତ୍ତା**



ସ୍ୱାଧୀନତା ଦିବସର ଶୁଭ ଅବସରରେ ରାଜ୍ୟବାସୀ ଭାଇ ଓ ଭଉଣୀମାନଙ୍କୁ ମୋର ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି ।

ଏହି ଅବସରରେ ଜାତିର ପିତା ମହାତ୍ମା ଗାନ୍ଧୀ, ପଣ୍ଡିତ ଜବାହରଲାଲ ନେହେରୁ, ନେତାଜୀ ସୁଭାଷ ଚନ୍ଦ୍ର ବୋଷ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ ଦାସ, ବୀର ସୁରେନ୍ଦ୍ର ସାଏ, ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ମା' ରମାଦେବୀ, ମାଳତୀ ଚୌଧୁରୀ, ପାର୍ବତୀ ଗିରି, ସହିଦ୍ ଲକ୍ଷ୍ମଣ ନାଏକ, ଡଃ ହରେକୃଷ୍ଣ ମହତାବ ଓ ବିଜୁ ପଟ୍ଟନାୟକଙ୍କ ପରି ମହାନ୍ ଦେଶଭକ୍ତଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଦେଶର ଶାନ୍ତି ଓ ସୁରକ୍ଷା ପାଇଁ ସଂଗ୍ରାମ କରି ଶହୀଦ ହୋଇଥିବା ଆମର ବୀର ଜବାନମାନଙ୍କ ପ୍ରତି ମଧ୍ୟ ଏହି ଅବସରରେ ମୋର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ସ୍ୱାଧୀନତା ସଂଗ୍ରାମ ପରି ଭାରତର ବିକାଶ ଯାତ୍ରାରେ ଓଡ଼ିଶା ବିଶେଷ ଯୋଗଦାନ ରଖି ଆସିଛି । ବିଭିନ୍ନ କ୍ଷେତ୍ରରେ ପ୍ରଗତି ଆଜି ସାରା ଦେଶରେ ଓଡ଼ିଶା ପାଇଁ ଏକ ନୂଆ ପରିଚୟ ସୃଷ୍ଟି କରିଛି ।

ଶାନ୍ତି ବିକାଶର ଆଧାର । ଭିତ୍ତିଭୂମି ବିକାଶ, ସାମାଜିକ ସୁରକ୍ଷା ଏବଂ ସଶକ୍ତିକରଣ ହେଉଛି ଆମ ପ୍ରଗତିର ମୂଳମନ୍ତ୍ର । ଗାଁ ହେଉ ବା ସହର, ଶିଳ୍ପ ହେଉ ବା କୃଷି, ସ୍ୱାସ୍ଥ୍ୟ ହେଉ ବା ଶିକ୍ଷା ସବୁ କ୍ଷେତ୍ରରେ ଭିତ୍ତିଭୂମିର ବିକାଶ ଆଜି ଅନେକ ନୂଆ ସୁଯୋଗ ସୃଷ୍ଟି କରିଛି । ଗାଁ ଗାଁରେ ପକ୍କା ଘର, ପିଇବା ପାଣି, ବିଜୁଳି, ପକ୍କା ରାସ୍ତା, ଗୁରୁପ୍ରିୟା ସେତୁ, ବିଜୁ ଏକ୍ସପ୍ରେସ ୱେ, ନୂଆ ନୂଆ ସରକାରୀ ମେଡିକାଲ କଲେଜ, ଆଦର୍ଶ ବିଦ୍ୟାଳୟ, ଜଳସେଚନ ସୁବିଧା, ବୃହତ୍ ଉଠା ଜଳସେଚନ, ଶିଳ୍ପ ପାଇଁ ଲ୍ୟାଣ୍ଡ୍ ବ୍ୟାଙ୍କ, କ୍ରୀଡା ଭିତ୍ତିଭୂମି, ବିପର୍ଯ୍ୟୟ ପରିଚାଳନା ପାଇଁ ନୂଆ ନୂଆ କାର୍ଯ୍ୟକ୍ରମ ଆମର ବିକାଶ ଧାରାକୁ ମଜବୁତ କରିଛି ।

ଏସିଆନ୍ ଆଥ୍‌ଲେଟିକ୍ସ ମିଟ୍‌ର ସଫଳତା ପରେ ଓଡ଼ିଶାରେ ଆଗାମୀ ନଭେମ୍ବରରେ ବିଶ୍ୱ କପ୍ ହକି ଅନୁଷ୍ଠିତ ହେଉଥିବା ଗର୍ବର ବିଷୟ । ସେହିପରି ରାଜ୍ୟ ସରକାର ଭାରତୀୟ ହକି ଦଳର ପ୍ରାୟୋଜକ ଦାୟିତ୍ୱ ନେବା କ୍ରୀଡା ବିକାଶ ପାଇଁ ଆମ ପ୍ରତିବଦ୍ଧତାର ଜ୍ୱଳନ୍ତ ଉଦାହରଣ ।

ଗଣତନ୍ତ୍ରରେ ଲୋକ କଲ୍ୟାଣ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ତେଣୁ ଆମର ସାମାଜିକ ସୁରକ୍ଷା କାର୍ଯ୍ୟକ୍ରମରେ ଆମେ ସମାଜର ସବୁବର୍ଗର କଲ୍ୟାଣ ଉପରେ ଜୋର୍ ଦେଇଆସିଛୁ । ଆଜିଠାରୁ ସାରା ରାଜ୍ୟରେ ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନା ଆରମ୍ଭ ହେଉଛି । ସେହିପରି ଅକ୍ଟୋବର ୨ ତାରିଖରୁ ରାଜ୍ୟ ସରକାର ନିଜର ଖାଦ୍ୟ ସୁରକ୍ଷା ଯୋଜନା ଆରମ୍ଭ କରିବେ । ଏହି ଯୋଜନାରେ ସବୁ ଯୋଗ୍ୟ ହିତାଧିକାରୀମାନଙ୍କୁ ସାମିଲ କରିବା ଉପରେ ଗୁରୁତ୍ୱ ଦିଆଯାଇଛି ।

ସାଧାରଣ ଲୋକଙ୍କ ସଶକ୍ତିକରଣ ହିଁ ଗଣତନ୍ତ୍ରକୁ ଶକ୍ତିଶାଳୀ କରିଥାଏ । ତେଣୁ ସେ ଚାଷୀ ହେଉ ବା ଶ୍ରମିକ, ମହିଳା ବା ଛାତ୍ରଛାତ୍ରୀ ବା ଯୁବକଯୁବତୀ ସମସ୍ତଙ୍କ ସଶକ୍ତିକରଣ ଉପରେ ଆମର କାର୍ଯ୍ୟକ୍ରମରେ

ଗୁରୁତ୍ୱ ଦିଆଯାଇଛି । ସେହିପରି ଆମର ଅନୁସୂଚିତ ଜାତି ଓ ଜନଜାତି ଭାଇ ଭଉଣୀମାନଙ୍କ କଲ୍ୟାଣ ଓ ସ୍ୱାର୍ଥର ସୁରକ୍ଷା ପାଇଁ ଆମେ ସବୁବେଳେ କାମ କରୁଛୁ ଓ କରିଚାଲିବୁ ।

ଓଡ଼ିଶାର ବିକାଶ ପାଇଁ ରାଜ୍ୟ ସରକାରଙ୍କ ବିଭିନ୍ନ କାର୍ଯ୍ୟକ୍ରମ ଲୋକଙ୍କର, ବିଶେଷ କରି ଯୁବ ସମାଜର ଆତ୍ମବିଶ୍ୱାସକୁ ଦୃଢ଼ କରିଛି । ଦେଶର ବିକାଶ ଇତିହାସରେ ଓଡ଼ିଶା ତା'ର ସ୍ଥାନ ମଜବୁତ କରିପାରିଛି । ଆସନ୍ତୁ, ଏକ ସମୃଦ୍ଧ ଓ ସଶକ୍ତ ଓଡ଼ିଶା ଗଠନ ପାଇଁ ଆମର ମିଳିତ ଉଦ୍ୟମ ଜାରି ରଖିବା ।

**ଜୟ ହିନ୍ଦ୍ ।**

*ସ୍ୱାଧୀନତା ଦିବସ -୨୦୧୮ ଅବସରରେ*

**ଓଡ଼ିଶାର ମାନ୍ୟବର ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ, ଆଇନ୍ ଏବଂ ସୂଚନା ଓ ଲୋକସଂପର୍କ ମନ୍ତ୍ରୀ ଶ୍ରୀ ପ୍ରତାପ ଜେନାଙ୍କ**



# ବାର୍ତ୍ତା

ପବିତ୍ର ସ୍ୱାଧୀନତା ଦିବସ ଅବସରରେ ମୁଁ ଓଡ଼ିଶାବାସୀ ଭାଇ ଓ ଭଉଣୀମାନଙ୍କୁ ମୋର ଆନ୍ତରିକ ଶୁଭେଚ୍ଛା ଏବଂ ଅଭିନନ୍ଦନ ଜଣାଉଛି ।

ଭାରତ ଇତିହାସରେ ସ୍ୱାଧୀନତା ସଂଗ୍ରାମ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଏହି ସଂଗ୍ରାମର ଅଧ୍ୟାୟଗୁଡିକ ଜାତୀୟତା, ବଳିଦାନ, ପ୍ରତିବଦ୍ଧତା ଓ ଉତ୍ସର୍ଗରେ ପରିପୂର୍ଣ୍ଣ । ଜାତୀୟ ସଂଗ୍ରାମରେ ସମ୍ପୃକ୍ତ ହୋଇ ଯେଉଁ ମହାନ୍ ଦେଶଭକ୍ତମାନେ ଭାରତ ପାଇଁ ଅମୂଲ୍ୟ ସ୍ୱାଧୀନତା ଅର୍ଜନ କଲେ ଓ ଆମ୍ଭମାନଙ୍କୁ ସ୍ୱାଧୀନତାର ସ୍ୱାଦ ଦେଲେ, ସେହି ମହାମନୀଷୀମାନଙ୍କୁ ମୁଁ କୃତଜ୍ଞତାର ସହ ସ୍ମରଣ କରୁଛି । ଦେଶର ସଂଗ୍ରାମରେ ଓଡ଼ିଶାର ବରପୁତ୍ରମାନଙ୍କ ଅବଦାନ ମଧ୍ୟ ଅତୁଳନୀୟ ଥିଲା । ଓଡ଼ିଶା ଇତିହାସରେ ସେମାନଙ୍କର କୃତିତ୍ୱ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ରହିଛି । ମୁଁ ସେହି ପୂର୍ବଜମାନଙ୍କୁ ସମ୍ମାନ ଓ ଭକ୍ତିର ଶ୍ରଦ୍ଧାଞ୍ଜଳି ନିବେଦନ କରୁଛି ।

ସ୍ୱାଧୀନତା ଦିବସ ହେଉଛି ସ୍ମୃତି ଓ ସଂକଳ୍ପର ଦିବସ । ଦିବଂଗତ ମହାମନୀଷୀମାନଙ୍କୁ ସ୍ମରଣ କରି ସେମାନଙ୍କ ଆଦର୍ଶରେ ପରିଚାଳିତ ହେବା ନିମନ୍ତେ ଆଜିର ଏହି ଉତ୍ସବ ପ୍ରେରଣା ଦେଇଥାଏ ଅନ୍ୟ ପକ୍ଷରେ, ସମୃଦ୍ଧ ଭାରତବର୍ଷକୁ ଅଧିକ ଗୌରବମୟ ଏବଂ ଅଧିକ ସଶକ୍ତ କରି ଗଢ଼ିତୋଳିବା ନିମନ୍ତେ ଆଜିର ଦିବସ ଆମ୍ଭମାନଙ୍କୁ ଉତ୍ସାହିତ କରିଥାଏ ।

ସ୍ୱାଧୀନତା ପ୍ରାପ୍ତି ପରେ ଭାରତବର୍ଷର ପ୍ରଭୁତ ବିକାଶ ସାଧିତ ହୋଇଛି । ଗଣତନ୍ତ୍ରର ପ୍ରୟୋଗଶାଳା ହିସାବରେ ଭାରତ ସାରା ବିଶ୍ୱରେ ପ୍ରଶଂସିତ ହୋଇଛି । ଭାରତର ସଫଳତା ଓ ମାନବସମ୍ବଳର କୃତିତ୍ୱ ସାରା ବିଶ୍ୱକୁ ଚମତ୍କୃତ କରିଛି । ଭାରତର ପ୍ରଗତି ସହିତ ପାଦ ମିଳାଇ ଓଡ଼ିଶା ବିକାଶଧାରାରେ ମଧ୍ୟ ଅଂଶୀଦାର ହୋଇଛି । ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ଦକ୍ଷ ଓ ବଳିଷ୍ଠ ନେତୃତ୍ୱରେ ଆମ ରାଜ୍ୟରେ ପ୍ରାୟ ଦୁଇ ଦଶନ୍ଧି ଧରି ଏକ ନିରବଚ୍ଛିନ୍ନ ସ୍ଥିର ଓ ପ୍ରଗତିଶୀଳ ସରକାର ଚାଲିଛି । ବିକାଶର ଜୟଯାତ୍ରା ଅବ୍ୟାହତ ରହିଛି । ଉଭୟ ବିକାଶ କାର୍ଯ୍ୟକ୍ରମ ଓ ସଶକ୍ତିକରଣ ତ୍ୱରାନ୍ୱିତ ହୋଇଛି । ରାଜ୍ୟ ସରକାରଙ୍କ ବିବିଧ ଜନକଲ୍ୟାଣକାରୀ କାର୍ଯ୍ୟକ୍ରମ ଓ ପ୍ରକଳ୍ପର ସଫଳ ରୂପାୟନ ସମ୍ଭବ ହୋଇପାରିଛି । ବିକାଶ ମହାସ୍ରୋତରେ ସାମିଲ ହୋଇଛି ଓଡ଼ିଶା । ରାଜ୍ୟର ଏହି ପ୍ରଗତି ପ୍ରବାହକୁ ଅଧିକ ମଜବୁତ କରିଛି ଓଡ଼ିଶାବାସୀଙ୍କ ସହଯୋଗ ଓ ପ୍ରୋତ୍ସାହନ । ଓଡ଼ିଶା ଭାରତର ଅନ୍ୟତମ ଅଗ୍ରଣୀ ରାଜ୍ୟ ଭାବରେ ବିଭିନ୍ନ କ୍ଷେତ୍ରରେ ଉଚ୍ଚପ୍ରଶଂସିତ ହୋଇଛି । ସର୍ବଭାରତୀୟ ଓ ବିଶ୍ୱସ୍ତରରେ ଓଡ଼ିଶା ତା'ର କୃତିତ୍ୱ ନିମନ୍ତେ ଯଥେଷ୍ଟ ଆଦୃତି ଅର୍ଜନ କରିଛି ।

ଆସନ୍ତୁ, ଓଡ଼ିଶାର ଏହି ବିକାଶ ଯାତ୍ରାରେ ସମସ୍ତେ ଯୋଗଦେବା । ଆପଣମାନଙ୍କ ସହଯୋଗ, ଭାଗୀଦାରି ଓ ଅକୁଣ୍ଠ ସମର୍ଥନ ବଳରେ ଓଡ଼ିଶା ଦେଶର ମାନଚିତ୍ରରେ ଏକ ସଂପୂର୍ଣ୍ଣ ବିକଶିତ ରାଜ୍ୟର ମାନ୍ୟତା ଅର୍ଜନ କରିବ । ପୁଣି ଥରେ ଆପଣମାନଙ୍କୁ ପବିତ୍ର ସ୍ୱାଧୀନତା ଦିବସର ଶୁଭେଚ୍ଛା ଜଣାଉଛି ।

**ଜୟ ହିନ୍ଦ୍ ।**

# ସମ୍ପାଦକୀୟ



ଆଜି ହେଉଛି ଅଗଷ୍ଟ ୧୫ ତାରିଖ । ୧୯୪୭ ମସିହାର ଏହି ଦିନରେ ଆମ ଭାରତବର୍ଷ ବ୍ରିଟିଶ ଶାସନରୁ ମୁକ୍ତ ହୋଇଥିଲା । ଏକ ସ୍ମରଣୀୟ ଦିବସ ରୂପେ ଉତ୍ସାହର ସହ ଆମେ ଏହି ଦିନକୁ ପାଳନ କରିଥାଉ । ଆଜିର ଏହି ଅବସରରେ ସ୍ୱାଧୀନତାର ଆଲୋକ ପ୍ରଜ୍ୱଳନ କରିଥିବା ତଥା ଆମ ଚତୁଃପାର୍ଶ୍ୱରେ ଥିବା ଅନ୍ଧକାରକୁ ଦୂର କରିଥିବା ଦେଶ ସ୍ୱାଧୀନତାର ସ୍ଥପତିମାନଙ୍କୁ ଆମେ ସ୍ମରଣ କରୁଛୁ । ଏହି ପବିତ୍ର ଦିବସ ଅବସରରେ ଜାତିର ପିତା ମହାତ୍ମା ଗାନ୍ଧିଜୀ, ପଣ୍ଡିତ ଜବାହରଲାଲ ନେହରୁ, ବାଲ୍ ଗଙ୍ଗାଧର ତିଳକ, ଖୁଦୀରାମ ବୋଷ, ନେତାଜୀ ସୁଭାଷ ଚନ୍ଦ୍ର ବୋଷ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ ଦାସ, ବୀର ସୁରେନ୍ଦ୍ର ସାଏ, ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ମା' ରମାଦେବୀ, ମାଳତୀ ଚୌଧୁରୀ, ପାର୍ବତୀ ଗିରି, ସହିଦ୍ ଲକ୍ଷ୍ମଣ ନାଏକ, ଡକ୍ଟର ହରେକୃଷ୍ଣ ମହତାବ ଏବଂ ବିଜୁ ପଟ୍ଟନାୟକଙ୍କ ପରି ମହାନ୍ ଦେଶଭକ୍ତଙ୍କୁ ଆମର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛୁ ।

ଆମେ ସ୍ୱାଧୀନତା ସଂଗ୍ରାମର ସେହି ବୀର ପୁରୁଷମାନଙ୍କୁ ପ୍ରଣିପାତ ହେଉଛୁ, ଯେଉଁମାନେ ନିଜର ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ବିନା ପ୍ରଶଂସା ଓ ପୁରସ୍କାରରେ ଦେଶ ମାତୃକାର ସେବା କରିଯାଇଛନ୍ତି । ମୋ' ମତରେ ସ୍ୱାଧୀନତା ହେଉଛି ଜଣଙ୍କର ନିଜ ମର୍ଯ୍ୟାଦାପୂର୍ଣ୍ଣ ଅଧିକାର ହାସଲ । ଏହା ନ୍ୟାୟିକ ହୋଇପାରେ କିମ୍ବା ନିଜର ଅଧିକାର ହାସଲ ହୋଇପାରେ । ଏହା ମଧ୍ୟ କୌଣସି ବାଛବିଚାର ଏବଂ ଅସମାନତା ବିନା ଏକ ସମ୍ମାନଜନକ ଜୀବନଯାପନ କରିବାର ମୌଳିକ ଅଧିକାର ହୋଇପାରେ । ଏହାଦ୍ୱାରା ଏକ ପୂର୍ଣ୍ଣାଙ୍ଗ ଗଣତନ୍ତ୍ର ପ୍ରତିଷ୍ଠା ହୋଇପାରିବ । ଏଣୁ ସ୍ୱାଧୀନତା ହେଉଛି ଭୟ, ବାଧାବିଘ୍ନ ବ୍ୟତିରେକ ନିଜର ମନୋଭାବ ପରିପ୍ରକାଶ କରିବା ।

ଜାତୀୟ ମୋଟ୍ ଘରୋଇ ଉତ୍ପାଦଠାରୁ ରାଜ୍ୟର ମୋଟ୍ ଘରୋଇ ଉତ୍ପାଦ ବୃଦ୍ଧି ପାଇ ଆମ ରାଜ୍ୟ ଓଡ଼ିଶା ତ୍ୱରିତ୍ ଅଭିବୃଦ୍ଧି ଦିଗରେ ଅଗ୍ରସର ହେଉଛି । ଆମ ରାଜ୍ୟ ସାରା ଦେଶରେ ଅଭିବୃଦ୍ଧିଭିତ୍ତିକ କୌଶଳ, ବିପୁଳ ପ୍ରାକୃତିକ ସମ୍ପଦ ଓ ବିଭିନ୍ନ କ୍ଷେତ୍ରରେ ଦକ୍ଷତା ଅର୍ଜନ କରିଥିବା ମାନବ ସମ୍ବଳ ସହ ଏକ ଆଦର୍ଶ ସ୍ଥାନୀୟ ହୋଇପାରିଛି । ସ୍ୱାଧୀନତାଠାରୁ ଆମ ଦେଶ ବିଭିନ୍ନ କ୍ଷେତ୍ରରେ ଉନ୍ନତି ଦିଗରେ ଆଗେଇ ଚାଲିଛି । ଆମ ରାଜ୍ୟ ଓଡ଼ିଶା ମଧ୍ୟ

ସମତାଳରେ ବିଭିନ୍ନ କ୍ଷେତ୍ରରେ ଉଲ୍ଲେଖନୀୟ, ଏପରିକି ଜାତୀୟସ୍ତରଠାରୁ ଉତ୍କର୍ଷ ଲାଭ କରି ସମଗ୍ର ଦେଶରେ ଏକ ସ୍ୱତନ୍ତ୍ର ପରିଚିତି ସୃଷ୍ଟି କରିପାରିଛି । ସାମୂହିକ ଅଭିବୃଦ୍ଧି ଏବଂ ସଶକ୍ତିକରଣ ହେଉଛି ରାଜ୍ୟ ପ୍ରଶାସନର ପ୍ରମୁଖ ଲକ୍ଷ୍ୟ । ୭୨ତମ ସ୍ୱାଧୀନତା ଦିବସ ପାଳନ ଅବସରରେ ମୁଁ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କୁ ସାଧୁବାଦ ଏଇଥିପାଇଁ ଜଣାଇବି ଯେ, ସେ ମାଓବାଦୀଙ୍କର କ୍ରମାଗତ ଧମକକୁ ଭ୍ରୂକ୍ଷେପ ନକରି ଗୁରୁପ୍ରିୟା ସେତୁ ନିର୍ମାଣର ଇପ୍‌ସିତ ପ୍ରକଳ୍ପକୁ ସାକାର କରିପାରିଛନ୍ତି । ଦୀର୍ଘବର୍ଷ ଧରି ବିଚ୍ଛିନ୍ନାଞ୍ଚଳବାସୀ ରୂପେ ପରିଗଣିତ ହୋଇ ଆସୁଥିବା ମାଲ୍‌କାନଗିରି ଜିଲ୍ଲା ଅନ୍ତର୍ଗତ ୯ଟି ପଞ୍ଚାୟତର ୩୫ ହଜାର ଲୋକ ଆଜି ସମ୍ପର୍କର ମୁଖ୍ୟସ୍ରୋତରେ ସାମିଲ ହୋଇପାରିଛନ୍ତି । ଏହା ହେଉଛି ପ୍ରକୃତରେ ବିକାଶର ଏକ ଉଜ୍ଜ୍ୱଳ ନିଦର୍ଶନ ।

ଜାତୀୟ ଖାଦ୍ୟସୁରକ୍ଷା ଅଧିନିୟମ କାର୍ଯ୍ୟକାରୀ କରିବାରେ ଓଡ଼ିଶା ହେଉଛି ସମଗ୍ର ଦେଶରେ ଅଗ୍ରଣୀ ରାଜ୍ୟ । ମର୍ଯ୍ୟାଦାପୂର୍ଣ୍ଣ ଜୀବନଯାପନ କରିବାରେ ସୁଲଭ ମୂଲ୍ୟରେ ପର୍ଯ୍ୟାପ୍ତ ପରିମାଣର ଉନ୍ନତମାନର ଖାଦ୍ୟଶସ୍ୟ ଯୋଗାଣକୁ ସୁନିଶ୍ଚିତ କରିବା ସହ ପୌଷ୍ଟିକ ନିରାପତ୍ତା ଯୋଗାଇଦେବାରେ ଏହାର ଭୂମିକା ଅନନ୍ୟ । ଏଥିନିମନ୍ତେ ବାଦ୍ ପଡିଥିବା ଅତିରିକ୍ତ ହିତାଧିକାରୀମାନଙ୍କୁ ଏଥିରେ ସାମିଲ କରିବା ନିମନ୍ତେ କେନ୍ଦ୍ର ସରକାରଙ୍କୁ ବାରମ୍ବାର ଅନୁରୋଧ କରାଯାଇଥିଲା । ଏହାର କୌଣସି ପ୍ରତ୍ୟୁତ୍ତର ନମିଳିବାରୁ ରାଜ୍ୟ ସରକାର ନିଜସ୍ୱ ଖାଦ୍ୟ ନିରାପତ୍ତା କାର୍ଯ୍ୟକ୍ରମ ଶୁଭାରମ୍ଭ କରିଛନ୍ତି । ଏହା ହେଉଛି ପ୍ରକୃତରେ କ୍ଷୁଧାରୁ ମୁକ୍ତି ନିମନ୍ତେ ଏକ ଉଲ୍ଲେଖନୀୟ ପଦକ୍ଷେପ ।

ଆଜିର ଏହି ସ୍ୱାଧୀନତା ଦିବସ ପାଳନ ପରିପ୍ରେକ୍ଷୀରେ, ବିନା ଦେୟରେ ସ୍ୱାସ୍ଥ୍ୟସେବା ଯୋଗାଇଦେବାକୁ ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନା ଶୁଭାରମ୍ଭ କରାଯାଉଛି । ଏହି ଯୋଜନା ଅଧୀନରେ ଜିଲ୍ଲା ସଦରମହକୁମା ହସ୍‌ପିଟାଲ ପର୍ଯ୍ୟନ୍ତ ସରକାରୀ ଚିକିତ୍ସା ସୁବିଧା ଯୋଗାଇ ଦିଆଯିବ । ଉକ୍ତ ଯୋଜନା ଅଧୀନରେ ୪.୫ କୋଟିରୁ ଊର୍ଦ୍ଧ୍ୱ ଜନସାଧାରଣ ଉପକୃତ ହୋଇପାରିବେ । ବାସ୍ତବିକ, ସମସ୍ତଙ୍କୁ ସ୍ୱାସ୍ଥ୍ୟସେବା ଯୋଗାଇ ଦେବାରେ ଏହା ଏକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ । ସଶକ୍ତିକରଣ ନିମନ୍ତେ ଏପରି ଅନେକ ଯୋଜନା କାର୍ଯ୍ୟକାରୀ ହେଉଛି, ଯଦ୍ୱାରା ଦରିଦ୍ରତମ ଲୋକେ ଏହାର ବିଶେଷ ସୁଫଳ ଲାଭ କରିପାରୁଛନ୍ତି । ଏହି ପବିତ୍ର ଦିବସ ଅବସରରେ, ଆସନ୍ତୁ, ରାଜ୍ୟ ତଥା ଆମ ଦେଶର ଅଭିବୃଦ୍ଧି ନିମନ୍ତେ ପରସ୍ପର ସହ ହାତ ମିଳାଇ ଆଗେଇ ଚାଲିବା । ଦେଶ ଓ ଜାତିର ସେବା ଦିଗରେ ପ୍ରାଣପାତ କରିଥିବା ମହାନ୍ ମନୀଷୀମାନଙ୍କୁ ମୁଁ ଆଜିର ଏହି ସ୍ୱାଧୀନତା ଦିବସରେ ଗଭୀର ଶ୍ରଦ୍ଧାଞ୍ଜଳି ଜଣାଉଛି ।

**ଜୟ ହିନ୍ଦ୍ ।**

ଲେନିନ୍ ମହାନ୍ତି

ସମ୍ପାଦକ

# ଜନଗଣର ଦେଶ

ଡକ୍ଟର ଦେବାଶିଷ ପାତ୍ର

ଆଜିର ଈପ୍‌ସିତ ସକାଳ ଆମକୁ ଦେଖାଇଦିଏ ଏକ ଚିରନ୍ତନୀ ଭାରତବର୍ଷର ସୁନ୍ଦର ଛବି । ଆବେଗଭରା ଏବଂ ଅଧୀରତାର ଐକ୍ୟତାନରେ ଚିର ମହକିତ ବର୍ଣ୍ଣମୟ ରୋମାଞ୍ଚର ଏଇ ମୁହୂର୍ତ୍ତ ସତେ କେତେ ସମ୍ବେଦନାରେ ଭରା । ନୀଳଗଗନକୁ ଛୁଇଁବାର ସ୍ପର୍ଦ୍ଧାରେ ଉଲ୍ଲସିତ ତ୍ରିରଙ୍ଗା ଆଉ ଜାତୀୟ ସଂଗୀତର ଆବାହନ ଆମକୁ ସଚେତନ କରେ ଯେ, ଏହା ଜନଗଣର ଦେଶ । ଯେଉଁଠି ପେଣ୍ଡା ପେଣ୍ଡା ଦେଶପ୍ରେମ ଜାତିଜାତିକା ଫୁଲ ହୋଇ ଫୁଟେ । ଆଉ ଜୀବନକୁ ମୁଗ୍ଧ ଦୃଷ୍ଟିରେ ଦେଖିବାର ଆବେଗ ସଂଚରିଯାଏ କାଳଖଣ୍ଡକୁ ପୁଲକିତ କରି ।

ଯୁଗ ଯୁଗ ଧରି ଅନନ୍ତ ଅନୁପମ ଦର୍ଶନରେ ବିଶ୍ୱକୁ ଆଲୋକିତ କରିଥିବା ଆମରି ଭାରତବର୍ଷ କେବଳ ଭୂଖଣ୍ଡଟିଏ ହୋଇ ରହିନାହିଁ, ବରଂ ଅହଂକାର ନିର୍ଲିପ୍ତ ମଣିଷର ଆଶାବାଦୀ ହେବାର ମନ୍ତ୍ର ଶୁଣାଇଛି । ବିବିଧ ଆଞ୍ଚଳିକତା, ସଂସ୍କୃତିର ବୈଷମ୍ୟ, ଧାର୍ମିକ ସ୍ୱତନ୍ତ୍ରତା, ଭୌଗୋଳିକ ବ୍ୟାପ୍ତି ତାକୁ ଖଣ୍ଡଖଣ୍ଡ କରି ଚିହ୍ନଟ କରିନାହିଁ ବରଂ ବରଫାଚ୍ଛାଦିତ ହିମାଳୟର ତୁଙ୍ଗିମ ସ୍ପର୍ଦ୍ଧା, ନୀଳଜଳରାଶି ବିଧୌତ କନ୍ୟାକୁମାରୀ, ଉତ୍ତାପିତ ମରୁପ୍ରାନ୍ତ, ଗାଙ୍ଗେୟ ସମତଳ ଯାଏଁ ଗୋଟିଏ ନାଁ ଭାରତବର୍ଷ । ଏହା ହିଁ ବିବିଧତାର ଏକତ୍ୱ ରୂପକ ଏବଂ ଭାବବିହ୍ୱଳିତ ସାମସଂଗୀତ । ବୋଧହୁଏ ସେଇଥିପାଇଁ ବୈଦିକ କାଳରୁ ଏଯାବତ୍ କବି ଲେଖକଙ୍କ ଲେଖନୀରେ ଭାରତର ମହନୀୟତା ଅନିର୍ବାପିତ ହୋଇ ଦେଦୀପ୍ୟମାନ ହୋଇ ରହିଛି । ଯାହାର ନଈ, ପାଣି, ପବନ, ଧୂଳି, ବନସ୍ପତି ସବୁଥିରେ ଭାରତୀୟତାର ସ୍ପର୍ଶ ଓ ଭାରତୀୟତାର ଅମୃତ ସ୍ପନ୍ଦନ ।

ଅନ୍ୟ ଦେଶଠାରୁ ସ୍ୱତନ୍ତ୍ର ଭାବେ ଭାରତକୁ ଚିହ୍ନିତ କରିବା ପାଇଁ ରହିଛି ଅସରନ୍ତି ଗୁଣାତ୍ମକ ଦିଗ । ଯେଉଁଥିପାଇଁ ଭାରତର ଜନଗଣ ନିଜକୁ ଜଣେ ଭାରତୀୟ ଭାବେ ପରିଚୟ ଦେବାକୁ ଅଧିକ ପସନ୍ଦ କରେ । ନିଜେ ଉଦ୍‌ବୁଦ୍ଧ ହୁଏ ଭାରତର ଶାସ୍ତ୍ରୀୟ ସବୁଜିମାରେ । ସମୟର ବିଶ୍ୱସ୍ତ ଦସ୍ତାବିଜ୍‌ର ଅମର ସ୍ୱାକ୍ଷର ପାଲଟିଛି ଏହାର ସମୃଦ୍ଧ ସଂସ୍କୃତି, ଯାହା ଜନଗଣର ପରସ୍ପର ପ୍ରତି ଥିବା ବିଶ୍ୱାସର ମାନବବାଦରେ ଭରା । ସିନ୍ଧୁ ସଭ୍ୟତାର ଐତିହାସିକ ଦାମ୍ଭିକତା, ବୈଦିକ ବିତର୍କ, ଜୈନ–ବୌଦ୍ଧ ଧର୍ମର ଚିରନ୍ତନ ମୂଲ୍ୟବୋଧ କେବଳ ଇତିହାସର ପୃଷ୍ଠାରେ ନୁହେଁ ବରଂ ଭାରତୀୟ ଜୀବନରେ ଭରିଦେଇଛି ଚିରନ୍ତନ ଆନନ୍ଦର ଅନୁଭବ । ଏଠି ଭାଷା ଓ ଧର୍ମର ବିବିଧତା ବିଭେଦତାର କଥା କହେ ନାହିଁ ବରଂ ଭାରତୀୟ ଜନତାର ସଂକଳ୍ପ ଓ ସାଧନାର କଥା କହିଯାଏ । ଯାହା ପୁଣି ନୃତ୍ୟ–ସଂଗୀତ–କଳା–ସ୍ଥାପତ୍ୟର ବାଟଦେଇ ପରମ୍ପରାରେ ବଦଳିଯାଏ । ଏସବୁ ଜନଗଣର ଜୀବନ ବେଦର ପ୍ରବହମାନତା ଖାଲି ନୁହେଁ ବରଂ ଭାରତବାସୀଙ୍କ ଭାରତପଣିଆ ।

ଆମର ପୂର୍ବଜଙ୍କ ଅନନ୍ତ ସ୍ମୃତି ଆଡକୁ ଦୃଷ୍ଟି ନିକ୍ଷେପ କଲେ ପ୍ରଥମେ ସଂସ୍କୃତ ପରି ଆମର ସମୃଦ୍ଧ ଭାଷା ଆମ ସାମ୍ନାକୁ ଆସେ । ଯାହା ବିଶ୍ୱର ଅନ୍ୟ ପ୍ରାଚୀନ ଭାଷା ମଧ୍ୟରୁ ଅନ୍ୟତମ । ଏପରିକି ବିଶ୍ୱର ବୈଷୟିକ ଭାଷା ରୂପରେ ସଂସ୍କୃତର ବୈଜ୍ଞାନିକତା ଆମର ପୂର୍ବଜଙ୍କ ବୃହତ୍ ଦୃଷ୍ଟିର ଏକ ପ୍ରମାଣ ମାତ୍ର । ବିଦ୍ୟା ଯେ ଅଜ୍ଞାନ ଅନ୍ଧକାରରୁ ମୁକ୍ତି ଦିଏ, ତାହା ବିଶ୍ୱବାସୀଙ୍କୁ ଜଣାଇଛି ଆମର ଏହି ମାତୃଭୂମି ଏବଂ

ଏହା ପ୍ରମାଣ କରିଛି ଯେ ଭାରତବର୍ଷ କେବଳ ସଂସ୍କୃତ ଓ ସଂସ୍କୃତିର ଦେଶ ନୁହେଁ, ଏଥିସହିତ ଜ୍ଞାନ ବିଜ୍ଞାନର ଦେଶ । ପାଞ୍ଚହଜାର ବର୍ଷ ତଳର ଆୟୁର୍ବେଦ କେବଳ ବେଦ ନଥିଲା ବରଂ ଥିଲା 'ଜୀବନର ବିଜ୍ଞାନ' । ପୁନଶ୍ଚ ଖ୍ରୀଷ୍ଟପୂର୍ବ ସମୟରେ ଚରକ ଓ ଶୁଶ୍ରୁତଙ୍କ ପରି ମନୀଷୀ ବିଶ୍ୱ ଚିକିତ୍ସା ଶାସ୍ତ୍ରକୁ ଦେଇଥିଲେ ନୂତନ ଦିଶା । ଦୁଇ ହଜାର ସାତଶହ ବର୍ଷ ତଳେ ପୃଥିବୀର ପ୍ରଥମ ବିଶ୍ୱବିଦ୍ୟାଳୟ ତକ୍ଷଶିଳାଠାରେ ପ୍ରତିଷ୍ଠିତ ହୋଇ ବିଶ୍ୱର ଜ୍ଞାନଗୁରୁ ପାଲଟି ଥିଲା । ଯେଉଁଥିରେ ପୃଥିବୀର ବିଭିନ୍ନ ପ୍ରାନ୍ତରୁ ଆସି ଅଧ୍ୟୟନ କରୁଥିଲେ ଦଶହଜାର ପାଞ୍ଚଶହ ଛାତ୍ର । ପତଞ୍ଜଳିଙ୍କ ଯୋଗସୂତ୍ର, ବ୍ରହ୍ମଗୁପ୍ତଙ୍କ ଦ୍ୱାରା ଖ୍ରୀ.ପୂ. ୬୨୮ରେ ଶୂନ୍‌ର ବ୍ୟବହାର, ପନ୍ଦରଶହ ବର୍ଷ ପୂର୍ବରୁ ଶୂନ୍‌ରୁ ନଅ ପର୍ଯ୍ୟନ୍ତ ସଂଖ୍ୟାଗଣନା, ଖ୍ରୀ.ପୂ. ୨୫୦୦ରେ ସିନ୍ଧୁ ସଭ୍ୟତାରେ ବିଶ୍ୱର ପ୍ରଥମ ନଗର ସଭ୍ୟତା ସହିତ ବୃହତ୍ତମ ସ୍ନାନାଗାର ଭାରତର ଗୌରବ ସମେତ ବିଶ୍ୱକୁ ଅବଦାନ ନୁହେଁ ତ ଆଉ କ'ଣ ?

ଭାଷା ଓ ସାହିତ୍ୟର କ୍ଷେତ୍ର ମଧ୍ୟ ଅତ୍ୟନ୍ତ ବ୍ୟାପକ । ବିଶ୍ୱର ଅନ୍ୟ ଦେଶ ତୁଳନାରେ ଭାରତରେ ରହିଛି ଭାଷାର ଅନେକ କ୍ଷେତ୍ର । ସଂପ୍ରତି ୨୯ଟି ରାଜ୍ୟରେ ୧୬୦୦ ଭାଷା ସହିତ ୮୬ ପ୍ରକାରର ଲିପି ବ୍ୟବହୃତ । ସେହିପରି 'ରାମାୟଣ' ଓ 'ମହାଭାରତ' କାଳୀନ ବିକଶିତ ସାହିତ୍ୟର ରହିଛି ଏକ ବିସ୍ତୃତ କ୍ଷେତ୍ର । 'ବସୁଧୈବ କୁଟୁମ୍ବକମ୍' ପରି ଭାରତୀୟ ଦର୍ଶନ ବିଶ୍ୱକୁ ଦେଇଛି ଭ୍ରାତୃତ୍ୱ ଓ ପରିବାର ବନ୍ଧନର ବାର୍ତ୍ତା । ଅନ୍ୟର ସୁଖରେ ଆମେ ସୁଖୀ, ଅନ୍ୟର ଦୁଃଖରେ ଆମେ ଦୁଃଖୀ । ସାମଗ୍ରିକ କଲ୍ୟାଣ ହିଁ ଆମର ମୂଳତତ୍ତ୍ୱ । ସେଥିପାଇଁ ସମାଜର ନିମ୍ନସ୍ତରରୁ ଉପର ସ୍ତର ଯାଏଁ ଭାରତୀୟତା କହିଲେ ବୁଝାଯାଏ ମାନବବାଦ । ଯେଉଁ ଦର୍ଶନ ବିବେକାନନ୍ଦ, ରାଧାକ୍ରିଷ୍ଣନ୍, ଶ୍ରୀଅରବିନ୍ଦ, ମହାତ୍ମା ଗାନ୍ଧୀଙ୍କ ପରି ମହାମାନବମାନେ ବିଶ୍ୱଜନୀନ କରାଇବାରେ ସହାୟକ ହୋଇଥିଲେ । 'ବହୁଜନ ହିତାୟ, ବହୁଜନ ସୁଖାୟ' ନୀତିରେ ଜଗତର କଲ୍ୟାଣ ହିଁ ଆମର ଲକ୍ଷ୍ୟ ।

ସଂପ୍ରତି ଆମ ଦେଶରେ ଯେତିକି ବି ସମସ୍ୟା ଥାଉନା କାହିଁକି ଆମର ସମ୍ବଳ ହେଉଛି ଆମ ମାନବ ସମ୍ବଳ । ଆମେ ବିଶ୍ୱର ତୃତୀୟ ବୃହତ୍ ଅର୍ଥନୀତି ଆଡକୁ ଅଗ୍ରସର ହେଉଛୁ । ବିଜ୍ଞାନ ଓ ବୈଷୟିକ ବିକାଶରେ ବିଶେଷ କରି କମ୍ପ୍ୟୁଟର ଜ୍ଞାନ କୌଶଳରେ ବିଶ୍ୱରେ ଦ୍ୱିତୀୟ । ଆମର ବୃହତ୍ ଗଣତନ୍ତ୍ର ମଧ୍ୟ ଜନଗଣଙ୍କ ପ୍ରତି ଉତ୍ସର୍ଗିତ । ଆମର ସାର୍ବଭୌମତ୍ୱର ତୁଳନା ନାହିଁ । ଆଧ୍ୟାତ୍ମିକତା, ଆତିଥେୟତା, ମହିଳା ସଶକ୍ତିକରଣ, ପ୍ରତିରକ୍ଷା କୌଶଳ, ବିବିଧ କଳାତ୍ମକତାରେ ଆମେ ବିଶ୍ୱରେ ଅଗ୍ରଣୀ । ଏହା ସମ୍ଭବ ହୋଇଛି ଜ୍ଞାନର ସୁବିନିଯୋଗ ଫଳରେ । ପ୍ରକୃତରେ ଯୁବ ଓ ତାରୁଣ୍ୟରେ ଭରା ଏହି ଭାରତରେ ପ୍ରଜ୍ଞା ଓ ପରମ୍ପରାର ସମନ୍ୱୟ ଘଟିଛି ।

ଆଜି ଅଗଷ୍ଟ ପନ୍ଦରର ଏହି ସକାଳ ଅତି ସ୍ୱାଭିମାନରେ ଭରା । ଯାହା ଆମ ପୂର୍ବଜଙ୍କୁ ମନେ ପକାଇବାର ଏକ ଅପୂର୍ବ ବେଳା । ଯେଉଁଠି ଧାଡି ଧାଡି ହୋଇ ଐତିହ୍ୟର ବିପୁଳ ରୋମାଞ୍ଚ ଆମକୁ ସ୍ପନ୍ଦିତ କରିବ । କେବଳ ସେତିକି ନୁହେଁ ଆମ ଭିତରର ଅନ୍ଧକାରକୁ ଦୂରୀଭୂତ କରି ଆଲୋକିତ କରିବାର, ଯାହା ସମୟର ଅମରାକ୍ଷରେ ଚିର ଉଦ୍‌ଘୋଷଣା କରି କହୁଥିବ ଭାରତ ଖାଲି ସାଧାରଣ ଦେଶ ନୁହେଁ, ଜନଗଣର ଦେଶ । ଯେଉଁଠି ସ୍ୱପ୍ନ ସାକାର ହେବାର ସମ୍ଭାବନା ରଖେ ।

ରାଜଧାନୀ ମହାବିଦ୍ୟାଳୟ
ଭୁବନେଶ୍ୱର



# ଏ ମାଟିର କୃତୀ ସନ୍ତାନ

# ଅଲିଭା ଶିଖା – ସୁରେନ୍ଦ୍ର ସାଏ

ଜାନକୀ ବଲ୍ଲଭ ପଟ୍ଟନାୟକ

ସୁରେନ୍ଦ୍ର ସାଏ ଥିଲେ ଓଡ଼ିଶାର ଜଣେ ମହାନ୍ ବୀର ପୁରୁଷ ଓ ଭାରତର ଶ୍ରେଷ୍ଠ ସ୍ୱାଧୀନତା ସଂଗ୍ରାମୀ । ତାଙ୍କର ଶକ୍ତି, ସାହସ, ଦୃଢ ପ୍ରତିଜ୍ଞା, ସ୍ୱାଭିମାନ, ଶୌର୍ଯ୍ୟ, ବୀର୍ଯ୍ୟ ଓ ଅଦମନୀୟ ବିପ୍ଳବ ପାଇଁ ଇତିହାସରେ ସେ ଯୁଗେ ଯୁଗେ ମହୀୟାନ ହୋଇ ରହିଥିବେ । ଭାରତରେ ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହେବାର ବହୁ ପୂର୍ବରୁ ସୁରେନ୍ଦ୍ର ସାଏ ବ୍ରିଟିଶ୍ ଶାସନ ବିରୁଦ୍ଧରେ ଅସି ଉତ୍ତୋଳନ କରି ବିପ୍ଳବର ପ୍ରଥମ ରଣଭେରି ବଜାଇ ଥିଲେ । କିନ୍ତୁ ଅଦ୍ୟାବଧି ତାଙ୍କର ପ୍ରକୃତ ଜନ୍ମସ୍ଥାନ ସଠିକ୍ ରୂପେ ନିରୂପିତ ହୋଇପାରି ନାହିଁ । କେତେକ ଐତିହାସିକଙ୍କ ମତରେ ସେ ସମ୍ବଲପୁର ଅନ୍ତର୍ଗତ ଖିଣ୍ଡା ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ଅନ୍ୟ କେତେକଙ୍କ ମତରେ ସେ ତାଙ୍କ ମାତୁଳାଳୟ ବରଗାଁରେ ଭୂମିଷ୍ଠ ହୋଇଥିଲେ । ପୁଣି କେତେକ ମତପୋଷଣ କରନ୍ତି, ସେ ସିଂହଭୂମରେ ଜନ୍ମ ହୋଇଥିଲେ । ତେଣୁ ଇତିହାସ ଦୃଷ୍ଟିରୁ ଏ ସମସ୍ତ ବିଷୟରେ ସଠିକ ତଥ୍ୟ ପ୍ରକାଶ ପାଇବା ଦରକାର । ଏପର୍ଯ୍ୟନ୍ତ ଯାହାସବୁ ପ୍ରକାଶ ପାଇଛି, ତାହା ପ୍ରାମାଣିକ ନୁହେଁ । ସୁରେନ୍ଦ୍ର ସାଏଙ୍କ ସମ୍ପର୍କରେ ଏକ ପ୍ରାମାଣିକ ଗ୍ରନ୍ଥ ପ୍ରକାଶ ପାଇଲେ, ତାହା ତାଙ୍କର ପ୍ରକୃତ ସ୍ମାରକୀ ହୋଇରହିବ ।



ଏହି ମହାନ୍ ଜାତୀୟ ବୀରଙ୍କ ବିଦ୍ରୋହ ସମ୍ପର୍କରେ ଜାଣିବା ପୂର୍ବରୁ ଅନେକଙ୍କର ଧାରଣା ଥିଲା ଯେ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶାରୁ ବୋଧହୁଏ କେହି ଯୋଗ ଦେଇ ନଥିଲେ । କିନ୍ତୁ ପରବର୍ତ୍ତୀ ପର୍ଯ୍ୟାୟରେ ଏ ଭ୍ରମ ଦୂର ହେଲା । ଓଡ଼ିଶାରେ ଏ ସଂଗ୍ରାମ ସମ୍ବଲପୁରରେ ବୀର ସୁରେନ୍ଦ୍ର ସାଏଙ୍କ ବଳିଷ୍ଠ ନେତୃତ୍ୱରେ ଚାଲିଥିଲା । ଏହା ପରେ ପୁଣି ଜଣାଗଲା, ପୋଡାହାଟର ରାଜା ଅର୍ଜୁନ ସିଂହ ଓ ତାଙ୍କର ଦେୱାନ ଜଗୁ ଦେୱାନ ମଧ୍ୟ ଏହି ଐତିହାସିକ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ । ଏ ଦୁଇଜଣ ଓଡ଼ିଆ । ଇତିହାସର ଅନେକ ଗୋପନୀୟ ତଥ୍ୟ କାଳକ୍ରମେ ପ୍ରକାଶ ପାଉଚି । ଏଥିରୁ ସ୍ପଷ୍ଟ ଜଣାଯାଏ, ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଅନ୍ୟ ରାଜ୍ୟମାନଙ୍କ ପରି ଓଡ଼ିଶାର ଲୋକେ ଅଂଶ ଗ୍ରହଣ କରିଥିଲେ ଏବଂ ସୁରେନ୍ଦ୍ର ସାଏ ଏକ ଦୁର୍ଦ୍ଦମନୀୟ ତଥା ବିଚକ୍ଷଣ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ । ତାଙ୍କର ଅଦ୍‌ଭୁତ ସଂଗଠନ ଶକ୍ତି ଅମିତ ପରାକ୍ରମ ଓ ଅସାଧାରଣ ରଣକୌଶଳ ବ୍ରିଟିଶ୍ ଶାସକ ଓ ସୈନ୍ୟ ବାହିନୀକୁ ଆଶ୍ଚର୍ଯ୍ୟାନ୍ୱିତ କରିଦେଇଥିଲା ।

### ବିଦ୍ରୋହର ବହ୍ନି

୧୮୫୬ ମସିହାରେ ଜାତୀୟ ବିଦ୍ରୋହ ଆରମ୍ଭ ହୋଇଥିଲା ଓ ୧୮୫୮ ମସିହାରେ ବିଦ୍ରୋହର ବହ୍ନି ନିର୍ବାପିତ ହୋଇଥିଲା । କିନ୍ତୁ ବୀର ସୁରେନ୍ଦ୍ର ସାଏ ୧୮୫୭ରୁ ୧୮୬୪ ମସିହା ପର୍ଯ୍ୟନ୍ତ ଏହି ବିଦ୍ରୋହକୁ ସମ୍ବଲପୁର ଅଞ୍ଚଳରେ ପ୍ରଜ୍ୱଳିତ କରି ରଖିଥିଲେ । ସାରା ଭାରତରେ ବିଦ୍ରୋହ ପ୍ରଶମିତ ହେବା ପରେ, ବିରାଟ ଇଂରେଜ ରାଜଶକ୍ତି ସୁରେନ୍ଦ୍ର ସାଏଙ୍କ ବିଦ୍ରୋହକୁ ସହଜରେ ଦମନ କରିଦେଇ ପାରିଥାଆନ୍ତା । କିନ୍ତୁ ସେମାନଙ୍କ ପକ୍ଷେ ତାହା ସମ୍ଭବ ହେଲାନାହିଁ । ବିଦ୍ରୋହ ଦମନ ପାଇଁ କଟକ, ମାନ୍ଦ୍ରାଜ, ନାଗପୁର, ରାମଗଡରୁ ସୈନ୍ୟ ଅଣାଗଲେ । ଏଠାରେ ବିଚାର କରିବାର କଥା, ତାହା କିଭଳି ଏକ ଗଣବିଦ୍ରୋହରେ ପରିଣତ ହୋଇଥିଲା, ଯାହାକୁ ଦମନ କରିବା ପାଇଁ ଭାରତର ଚାରିଆଡୁ ସୈନ୍ୟ ଆଣିବା ଦରକାର ପଡିଲା । ଇତିହାସର ଏହି ତଥ୍ୟ ଭଲ ଭାବରେ ଉଦ୍‌ଘାଟିତ ହେବା ଆବଶ୍ୟକ ।

ବୀର ସୁରେନ୍ଦ୍ର ସାଏ ତାନ୍ତିଆ ଟୋପିଙ୍କ ପରି ଜଙ୍ଗଲ ଯୁଦ୍ଧରେ ଅତିଶୟ ପ୍ରବୀଣ ଥିଲେ । ବିଦ୍ରୋହ ହେବାର ବର୍ଷକ ମଧ୍ୟରେ ତାନ୍ତିଆ ଟୋପିଙ୍କୁ ଦମନ କରାଗଲା । କିନ୍ତୁ ସୁରେନ୍ଦ୍ର ସାଏଙ୍କୁ ଧରାଯାଇ ପାରିଲା ନାହିଁ । କାରଣ ତାଙ୍କର ସଂଗ୍ରାମ ପଛରେ ଥିଲେ ସମଗ୍ର ସମ୍ବଲପୁର ଅଞ୍ଚଳବାସୀ ତଥା ଗୋଟିଏ ବିରାଟ ରାଜ୍ୟର ଜନସାଧାରଣ ଏବଂ ଏ ଅଞ୍ଚଳର ସମସ୍ତ ଜଙ୍ଗଲର ଅଧିବାସୀ । ଏହାଛଡା, ସମ୍ବଲପୁରର ଗଉନ୍ତିଆ ଓ ପ୍ରଧାନ ରାଜ ପୁରୁଷମାନେ ତାଙ୍କ ପଛରେ ଅଣ୍ଟାଭିଡି ଛିଡା ହୋଇଥିଲେ । ସମ୍ବଲପୁର ଜଙ୍ଗଲ ଭିତରୁ ତାଙ୍କୁ ବିତାଡିତ କରିବା ପାଇଁ ପ୍ରବଳ ଚେଷ୍ଟା କରାଯିବାରୁ ସେ ରାୟପୁରରେ ପହଞ୍ଚିଲେ । ସେଠାକାର ଜନସାଧାରଣ ବୀର ସୁରେନ୍ଦ୍ର ସାଏଙ୍କୁ ସ୍ୱାଗତ ଜଣାଇଥିଲେ । ତାଙ୍କର ରଣଭୂମି ଥିଲା ରାୟପୁରଠାରୁ ସମ୍ବଲପୁର ଓ ସମ୍ବଲପୁରଠାରୁ ସିଂହଭୂମି । ଏକ ବିରାଟ ଅଞ୍ଚଳ ତାଙ୍କ ପଛରେ ଠିଆ ହୋଇଥିଲା ।

### ସ୍ୱର୍ଣ୍ଣିମ ଅଧ୍ୟାୟ

ବୀର ସୁରେନ୍ଦ୍ର ସାଏଙ୍କ ବିଦ୍ରୋହ ୧୮୫୭ ମସିହା ପ୍ରଥମ ସ୍ୱାଧୀନତା ସଂଗ୍ରାମର ଏକ ସ୍ୱର୍ଣ୍ଣିମ ଅଧ୍ୟାୟ । ଏହା ଜଣେ ସାମାନ୍ୟ ବୀର ପୁରୁଷର ଇତିହାସ ନୁହେଁ, ଏହା ହେଉଛି ଗୋଟିଏ ମହନୀୟ ସଂଗ୍ରାମର ଏକ ସଂଘର୍ଷମୟ ଅଧ୍ୟାୟ । ଏ ସଂଗ୍ରାମ ଛ' ସାତବର୍ଷ ପର୍ଯ୍ୟନ୍ତ ଚାଲିଥିଲା । ବ୍ରିଟିଶ ରାଜଶକ୍ତି ତା'ର ସମସ୍ତ ଶକ୍ତି ସତ୍ତ୍ୱେ ଏହାକୁ ଦମନ କରିବାକୁ ବିଫଳ ହୋଇଥିଲେ । ତେଣୁ ମେଜର ଇମ୍‌ପେ ସୁରେନ୍ଦ୍ର ସାଏଙ୍କୁ ନିଜର କରିବା ପାଇଁ ଏକ ନୂତନ ନୀତି ଅନୁସରଣ କରିଥିଲେ । କାରଣ ଯୁଦ୍ଧକରି ତାଙ୍କୁ ଦମନ କରିବା ସମ୍ପୂର୍ଣ୍ଣ ଅସମ୍ଭବ ଥିଲା । ଇତିହାସରେ ଏ ଅଧ୍ୟାୟଟିର ମହତ୍ତ୍ୱ ପ୍ରତିପାଦିତ ହେବା ଦରକାର ।

ଜାତୀୟ ବୀରମାନଙ୍କ ସମ୍ପର୍କରେ ଆମ ପିଲାମାନଙ୍କର ଧାରଣା ଥିବା ମନେ ହେଉ ନାହିଁ । କାରଣ ଭାରତର ସ୍ୱାଧୀନତା ସଂଗ୍ରାମରେ ଯେଉଁମାନେ ପ୍ରାଣବଳି ଦେଲେ ସେମାନଙ୍କ ବିଷୟରେ ଆମର ପାଠ୍ୟପୁସ୍ତକରେ କିଛି ଉଲ୍ଲେଖ ରହୁନାହିଁ । ଆମ ଜାତିର ତ୍ୟାଗ, ବୀରତ୍ୱ ଓ ସ୍ୱଦେଶ ପ୍ରୀତି ପାଇଁ ଭାରତବର୍ଷର ବହୁ ଅଞ୍ଚଳ ରକ୍ତ ତୀର୍ଥରେ ପରିଣତ ହୋଇଥିଲା । ପ୍ରତ୍ୟେକ ଜାତିର ଗୋଟିଏ ମୂଲ୍ୟବୋଧ ରହିଛି । କିନ୍ତୁ ଆମର ସେ ମୂଲ୍ୟବୋଧ ନାହିଁ । ଯଦି ଆମେ ସୋଭିଏତ ୟୁନିଅନକୁ ଯିବା, ତା'ହେଲେ ଦେଖିବା ପ୍ରତ୍ୟେକ ସହରର ବିଭିନ୍ନ ସ୍ଥାନରେ ଜାତୀୟ ବୀର ପୁରୁଷମାନଙ୍କର ପ୍ରତିମୂର୍ତ୍ତି । ଗୋଟିଏ ଜାତିକୁ ବାନ୍ଧି ରଖିବା ପାଇଁ ଏହା ଏକାନ୍ତ ପ୍ରୟୋଜନ । ଏଣୁ ଆଗାମୀ ବଂଶଧରମାନଙ୍କ ନିମନ୍ତେ କଠୋର ସଂଗ୍ରାମ କରି ଦେଶ ପାଇଁ ପ୍ରାଣପାତ କରିଥିବା ଜାତୀୟତା ପ୍ରେମୀ ବୀରମାନଙ୍କର ସ୍ମୃତିକୁ ଉଦ୍‌ଜୀବିତ କରି ରଖିବାକୁ ପଡିବ ।

### ଲକ୍ଷ୍ୟଥିଲା ଏକ

ସୁରେନ୍ଦ୍ର ସାଏ ସମ୍ବଲପୁର ରାଜ୍ୟ ରକ୍ଷା ଲାଗି ବିଦ୍ରୋହ କରିଥିଲେ କି ଭାରତବର୍ଷରୁ ଇଂରେଜମାନଙ୍କୁ ବିତାଡିତ କରିବା ପାଇଁ ବିଦ୍ରୋହ କରିଥିଲେ, ତାହା ସେଭଳି କିଛି ବିବାଦୀୟ ପ୍ରଶ୍ନ ନୁହେଁ । ନିଜ ନିଜ ରାଜ୍ୟରୁ ଇଂରେଜମାନଙ୍କ ମୂଳ ଉତ୍ପାଟନ କରିବାକୁ ସେ ସମୟରେ ସମସ୍ତେ ଚେଷ୍ଟା କରିଛନ୍ତି । ସାରା ଭାରତବର୍ଷରୁ ଇଂରେଜମାନଙ୍କୁ ତଡିବା ଉଦ୍ଦେଶ୍ୟରେ କେହି କେବେ ଆହ୍ୱାନ ଦେଇନଥିଲେ । କାରଣ ସେତେବେଳେ ଭାରତବର୍ଷର ଜାତୀୟତା ନଥିଲା । ତଥାପି ସମସ୍ତଙ୍କର ଲକ୍ଷ୍ୟ ଥିଲା ଏକ, ଇଂରେଜ ଶକ୍ତିକୁ ଦରିଆପାରି

କରିବା । ଏପରିକି, ନାନା ସାହେବ, ଲକ୍ଷ୍ମୀବାଈ, ତାନ୍ତିଆ ଟୋପି, କନ୍‌ୱାର ସିଂହ ପ୍ରଭୃତି ପ୍ରବଳ ପରାକ୍ରମୀ ଯୋଦ୍ଧାମାନେ ନିଜ ରାଜ୍ୟରୁ ଇଂରେଜମାନଙ୍କୁ ତଡିବା ପାଇଁ ସଂଗ୍ରାମ ଚଳାଇଥିଲେ ।

ଓଡ଼ିଶା ଇତିହାସରେ ଇଂରେଜ ଶାସନ ଅମଳରେ ଦୁଇଟି ପ୍ରଧାନ ଯୁଦ୍ଧ ହୋଇଥିଲା । ଗୋଟିଏ ଖୋର୍ଦ୍ଧାର ପାଇକ ବିଦ୍ରୋହ ଓ ଅନ୍ୟଟି ସୁରେନ୍ଦ୍ର ସାଏଙ୍କ ବିପ୍ଳବ । ୧୮୧୭ ମସିହାରେ ଖୋର୍ଦ୍ଧା ସବ୍‌ଡିଭିଜନ, ଘୁମୁସର ସବ୍‌ଡିଭିଜନ ଓ ବ୍ରହ୍ମଗିରିର ସମଗ୍ର ଜନତା ପାଇକ ବିଦ୍ରୋହରେ ଯୋଗ ଦେଇଥିଲେ । ସେହିପରି ବୀର ସୁରେନ୍ଦ୍ର ସାଏଙ୍କ ବିଦ୍ରୋହ । ଏ ଦୁଇଟି ଆମ ଇତିହାସର ଜାଜ୍ୱଲ୍ୟମାନ ଅଧ୍ୟାୟ । ଏ ବିଷୟରେ ସବିଶେଷ ଗବେଷଣା କରାଯାଇ ଭବିଷ୍ୟତ ବଂଶଧରମାନଙ୍କ ପାଇଁ ଲିପିବଦ୍ଧ କରାଯିବା ଦରକାର । ତା'ନହେଲେ ଏ ଜାତିର ଦାୟାଦମାନେ ପ୍ରେରଣା ଲାଭ କରିପାରିବେ ନାହିଁ ।

ଓଡ଼ିଆ ଜାତି ତଥା ଭାରତବର୍ଷର ଗୌରବ ବୀର ସୁରେନ୍ଦ୍ର ସାଏ ଓଡ଼ିଶାର ସମ୍ବଲପୁର ଅଞ୍ଚଳରେ ଲଢିଥିଲେ । ତାଙ୍କ ଜୀବନର ଏହି ବୀରତ୍ୱ କାହାଣୀ ଆମକୁ ମହନୀୟ କରିଛି । ସୁରେନ୍ଦ୍ର ସାଏ ୧୮ ବର୍ଷ ବୟସରୁ ବିଦ୍ରୋହ ଆରମ୍ଭ କରି ମୃତ୍ୟୁ ପର୍ଯ୍ୟନ୍ତ ଜେଲ ଭୋଗିଥିଲେ । ସାତ ଆଠବର୍ଷ ସେ କେବଳ ବାହାରେ କଟାଇଛନ୍ତି, ତାହା ପୁଣି ପାହାଡ ଜଙ୍ଗଲ ମଧ୍ୟରେ । ଲୁଚି ଛପି ତାଙ୍କୁ ଲଢିବାକୁ ହୋଇଛି । ତେଣୁ, ଏହି ମହାନ୍ ବୀର ପୁରୁଷଙ୍କର ଜୀବନରୁ ଆମର ଶିକ୍ଷା ଲାଭ କରିବାର କଥା । ସେ ଦେଶ ପାଇଁ ସର୍ବସ୍ୱ ଦେଇଛନ୍ତି, କିନ୍ତୁ ଦେଶ ତାଙ୍କୁ କିଛି ଦେଇନାହିଁ । ଦେଶ ଆମକୁ ବହୁତ ଦେଇଛି, ଆମେ ଦେଶ ପାଇଁ କ'ଣ କରୁଛୁ, ତାହାହିଁ ପ୍ରଶ୍ନ ।

# ଆଦିକବି ସାରଳା ଦାସ



ବିଶ୍ୱବନ୍ଦିତ ସାହିତ୍ୟରଥୀ ସେକ୍‌ସପିୟର ଇଂଲଣ୍ଡର ଆଭୋନ୍ ନଦୀ କୂଳରେ ଷ୍ଟ୍ରାର୍ଟଫୋର୍ଡ ନାମକ ସ୍ଥାନରେ ଜନ୍ମଗ୍ରହଣ କରିଥିଲେ । ସେ ସ୍ଥାନଟି ପୃଥିବୀର ଏକ ସାରସ୍ୱତ ତୀର୍ଥରେ ପରିଣତ ହୋଇଚି । ପ୍ରତିବର୍ଷ ସେଠାରେ ସେକ୍‌ସପିୟର ମହୋତ୍ସବ ପାଳିତ ହେଉଚି । ପୃଥିବୀର ସବୁ ପ୍ରାନ୍ତରୁ ଇଂରାଜୀ ଭାଷାକୁ ଭଲ ପାଉଥିବା ଲକ୍ଷ ଲକ୍ଷ ଲୋକ ପ୍ରତିବର୍ଷ ସେ ଉତ୍ସବରେ ଯୋଗ ଦିଅନ୍ତି ଏବଂ ସେକ୍‌ସପିୟରଙ୍କ ପ୍ରତି ସେମାନଙ୍କର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରନ୍ତି ।

ସେହିପରି ସାରଳା ପୀଠ ସବୁଦିନ ପାଇଁ ଓଡ଼ିଆ ଜାତି ପକ୍ଷରେ ଏକ ସାରସ୍ୱତ ତୀର୍ଥଭୂମି ଭାବରେ ପ୍ରତିଷ୍ଠା ଅର୍ଜନ କରିପାରିଛି । ବୃଦ୍ଧ ନଦୀ ତୀରବର୍ତ୍ତୀ କନକପାଟଣା ଆଗରୁ ଏକ ପ୍ରସିଦ୍ଧ ଶକ୍ତିପୀଠ ରୂପେ ଖ୍ୟାତି ଅର୍ଜନ କରିଥିଲା । ଏଇଠି ମହାକବି ସାରଳା ଦାସ ଜନ୍ମଲାଭ କରିଥିଲେ ଏବଂ ପବିତ୍ର ମାଘ ସପ୍ତମୀ ଦିବସରେ ତାଙ୍କର ତିରୋଧାନ ହୋଇଥିଲା । ଶାରଳାଙ୍କ ଆଶୀର୍ବାଦ ଲାଭ କରି ସାରଳା ଦାସ ଓଡ଼ିଆ ଭାଷା

ଓ ସାହିତ୍ୟ ପାଇଁ ଯେଉଁ ଅମର କୀର୍ତ୍ତି ସୃଷ୍ଟି କରିଗଲେ, ତାହା ସବୁଦିନ ପାଇଁ ଅମ୍ଳାନ ହୋଇ ରହିଯାଇଚି । ତେଣୁ ଏହା ଓଡ଼ିଶାର ଏକ ସାରସ୍ୱତ ତୀର୍ଥଭୂମି । ଓଡ଼ିଆ ଭାଷାଭାଷୀ, ଓଡ଼ିଶାର କବି ଲେଖକବୃନ୍ଦ ସମସ୍ତେ ଏହି ପବିତ୍ର ଦିବସରେ ଏଠାକୁ ଆସି କବିଙ୍କ ଉଦ୍ଦେଶ୍ୟରେ ସେମାନଙ୍କର ଶ୍ରଦ୍ଧାଞ୍ଜଳି ଦେଇ ଯାଉଥିବେ । ଓଡ଼ିଶାର ଜନସାଧାରଣ ବିଗତ ପାଞ୍ଚଶତ ବର୍ଷ ହେଲା କବିଙ୍କୁ ତାଙ୍କର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରି ଆସୁଛନ୍ତି । ଗାଁ ଗହଳରେ ତାଙ୍କର ଅମର କୃତିକୁ ପାଠ କରୁଛନ୍ତି । ସେହିପରି ଆଧୁନିକ ଶିକ୍ଷିତ ସମାଜ ତାଙ୍କ ସମ୍ପର୍କରେ ନିତ୍ୟ ନୂତନ ଗବେଷଣାମାନ କରି ତାଙ୍କ ପ୍ରତି ଯଥାର୍ଥ ସମ୍ମାନ ପ୍ରଦର୍ଶନ କରିବା ବାଞ୍ଛନୀୟ ।

ନିକଟରେ ସାରଳା ଦାସଙ୍କ ମହାଭାରତର ଏକ ଶୁଦ୍ଧ ସଂସ୍କରଣ ପ୍ରକାଶ ପାଇଛି । କିନ୍ତୁ ତାହା ଯେ ପ୍ରକୃତ ଶୁଦ୍ଧ ସଂସ୍କରଣ, ଏଥିରେ ବହୁ ସନ୍ଦେହ ରହିବା ସ୍ୱାଭାବିକ । କାରଣ ସାରଳା ଦାସ ଯେଉଁ ସମୟରେ ମହାଭାରତ ରଚନା କରିଥିଲେ, ସେତେବେଳେ ଓଡ଼ିଶା ଭାରତର ଏକ ଶ୍ରେଷ୍ଠ ସାମ୍ରାଜ୍ୟ ରୂପେ ପରିଚିତ ହୋଇଥିଲା । କେବଳ ମରହଟ୍ଟାମାନଙ୍କୁ ଛାଡିଦେଲେ ଏତେ ବଡ ବିଶାଳ ସାମ୍ରାଜ୍ୟ ଆଉ କେହି ବିସ୍ତାର କରି ପାରିନଥିଲେ । ମୋଗଲ ଓ ଗୁପ୍ତମାନଙ୍କର କିଛି କିଛି ପ୍ରଭାବ ଥିଲେ ମଧ୍ୟ ଗୋଟିଏ ପ୍ରାଦେଶିକ ରାଜ୍ୟ ଭାବରେ ଏତେ ପ୍ରତିଷ୍ଠା ଅର୍ଜନ କରିପାରି ନଥିଲେ । ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ କାବେରୀ ପର୍ଯ୍ୟନ୍ତ ମହାରାଜ କପିଳେନ୍ଦ୍ର ଦେବ ତାଙ୍କର ସାମ୍ରାଜ୍ୟ ବିସ୍ତାର କରିଥିଲେ । ସାରଳା ଦାସ ଲେଖିଛନ୍ତି–

‘କଳିକାଳ ଧ୍ୱଂସିଣ ଭୋଗେଣ କୋଟିପୂଜା
ପ୍ରଳମ୍ବିତେ ଖଟଇଂ ଶ୍ରୀକପିଳେଶ୍ୱର ମହାରଜା ।’

କପିଳେନ୍ଦ୍ର ଯେଭଳି ବିଶାଳ ସାମ୍ରାଜ୍ୟ ରଚନା କରିଥିଲେ, ସାରଳା ଦାସ ସେହିପରି ବିଶାଳ ସାମ୍ରାଜ୍ୟର ସାରସ୍ୱତ ସୂର୍ଯ୍ୟ ରୂପେ ଦେଖା ଦେଇଥିଲେ । ପ୍ରତାପରୁଦ୍ରଙ୍କ ପରେ ଅର୍ଥାତ୍ ୧୫୬୮ ମସିହାରେ କେବଳ ଓଡ଼ିଶାର ସ୍ୱାଧୀନତା ସୂର୍ଯ୍ୟ ଅସ୍ତମିତ ହେଲେ । କିନ୍ତୁ ୧୫୬୮ ମସିହା ପର୍ଯ୍ୟନ୍ତ (ଶହେ ବର୍ଷରୁ ଊର୍ଦ୍ଧ୍ୱ ସମୟ) ସାରଳା ଦାସଙ୍କ ମହାଭାରତ ଏ ବିଶାଳ ସାମ୍ରାଜ୍ୟର ଚାରିଆଡେ ପଠିତ ହୋଇଥିବ । ତେଣୁ ମହାଭାରତ ପୋଥି କେବଳ ଓଡ଼ିଶାରେ ସୀମିତ ନହୋଇ ବର୍ତ୍ତମାନ କଥିତ ହେଉଥିବା ଆନ୍ଧ୍ରପ୍ରଦେଶର କେତେକାଞ୍ଚଳରେ, ତେଲେଙ୍ଗାନାରେ ନିଶ୍ଚିତ ପଠିତ ହେଉଥିବ । ତାମିଲ ଦେଶରେ ପଠିତ ହେଉଥିବ । ବଙ୍ଗଳାରେ ତ ଏହାର ପ୍ରମାଣ ରହିଚି । ସାରଳା ଦାସଙ୍କ ମହାଭାରତ ବଙ୍ଗ ଅକ୍ଷରରେ ଓଡ଼ିଆ ଭାଷାରେ ଲେଖାହୋଇଚି । ସେ ପୋଥିସବୁ ଅଛି । ତେଣୁ ଦକ୍ଷିଣର ଓ ଉତ୍ତରର ସବୁକୁ ମିଶେଇ ଯେଉଁ ସଂସ୍କରଣ କରାଯିବ, ତାହାହିଁ କେବଳ ଶୁଦ୍ଧ ସାରଳା ସଂସ୍କରଣ ହୋଇପାରିବ । ଏ କାର୍ଯ୍ୟ ଦୁରୂହ ହେଲେ ମଧ୍ୟ କରଣୀୟ ।

ମହାକବି କହିଲେ ଯାହା ବୁଝାଯାଏ, ସାରଳା ଦାସ ସେହି ମହାକବି ଶ୍ରେଣୀଭୁକ୍ତ ଥିଲେ । ମହାକବିମାନଙ୍କ ମଧ୍ୟରେ ସଂସ୍କୃତ ଭାଷାରେ ଯେପରି ବ୍ୟାସ, ବାଲ୍ମୀକି, କାଳିଦାସ ଓ ଇଂରେଜୀ ଭାଷାରେ ସେକ୍ସପିୟର, ଦାନ୍ତେ, ହୋମର ପ୍ରଭୃତି ସେହିପରି ଓଡ଼ିଆ ଭାଷାରେ ସାରଳା ଦାସ । ସାରଳା ଦାସଙ୍କ ମହାଭାରତ ବ୍ୟାସଙ୍କ ରଚିତ ସଂସ୍କୃତ ମହାଭାରତର ଅନୁବାଦ ନୁହେଁ । ସେ ମହାଭାରତ ହେଉଛି ଓଡ଼ିଆ ଜାତିର ନିଜସ୍ୱ ମହାଭାରତ । ଏହା ସଂସ୍କୃତ ମହାଭାରତଠାରୁ କୌଣସି ଗୁଣରେ ନ୍ୟୂନ ନୁହେଁ । ଏଥିରେ ବହୁ ନୂଆ କଥା, ବହୁ ସୁନ୍ଦର ଉପାଖ୍ୟାନ ଉପସ୍ଥାପିତ କରାଯାଇଅଛି । ସେସମୟରେ ଓଡ଼ିଆ ଜାତିର ପ୍ରକୃତ ପ୍ରତିରୂପ ବା ପ୍ରତିଛବି ଏସବୁଥିରେ ନିଖୁଣ ଭାବରେ ଫୁଟିଉଠିଛି । ତେଣୁ ସାରଳା ଦାସଙ୍କ କୃତି ମହାଭାରତ ମହାକାବ୍ୟ ଶ୍ରେଣୀର । ସଂସ୍କୃତ ମହାଭାରତରେ ଯେଉଁ ଉପାଖ୍ୟାନ ବା ଆଖ୍ୟାୟିକାମାନ ନାହିଁ, ତାହା ସାରଳା ଦାସଙ୍କ ମହାଭାରତରେ ରହିଅଛି ।

**ନବଗୁଞ୍ଜର ଏକ ବଳିଷ୍ଠ କଳ୍ପନା**

‘ନବଗୁଞ୍ଜର’ ଗୋଟିଏ ନୂଆ କଥା । ଏହା କୌଣସି ପ୍ରାଦେଶିକ ସାହିତ୍ୟରେ ଦେଖିବାକୁ ମିଳେନାହିଁ । କିନ୍ତୁ ସାରଳା ଦାସ ଏହି ବିଚିତ୍ର ଜୀବ ନବଗୁଞ୍ଜରକୁ ସୃଷ୍ଟିକଲେ । ନବଗୁଞ୍ଜର ବହୁ ପ୍ରାଣୀଙ୍କର ଏକ ସମାବେଶ । ସିଂହ, ହାତୀ, ବୃଷଭ, ଶୁଆ, ସାପ ଓ ମଣିଷ ପର୍ଯ୍ୟନ୍ତ । ଏ ଅଦ୍ଭୁତ ଜୀବ ସୃଷ୍ଟି କରି ସାରଳା ଦାସ ପ୍ରମାଣିତ କଲେ ଯେ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ଭଗବାନ ବିଦ୍ୟମାନ ଅଛନ୍ତି । କାରଣ ଏ ସମସ୍ତଙ୍କ

ସମାବେଶରେ ଯେଉଁ ଜୀବ ସୃଷ୍ଟି କରାଗଲା, ସେ ହେଉଛନ୍ତି ସ୍ୱୟଂ ଶ୍ରୀକୃଷ୍ଣ । ତାଙ୍କ ହାତରେ ଏକ ପଦ୍ମ ଫୁଲ ଥିବା ଯୋଗୁଁ ଅର୍ଜୁନ ତାଙ୍କୁ ଚିହ୍ନି ପାରିଲେ । 'ବିଷ୍ଣୁ ସହସ୍ର ନାମ'ରେ ପ୍ରତ୍ୟେକ ଜୀବଜନ୍ତୁ, ପଶୁପକ୍ଷୀ ଓ ବୃକ୍ଷଲତାଙ୍କର ନାମ ଉଲ୍ଲେଖ ଅଛି । ଭଗବାନଙ୍କର ହଜାର ନାମ ଭିତରେ ସବୁ ଉଦ୍ଭିଦ ଓ ପ୍ରାଣୀମାନେ ଅଛନ୍ତି । ସେମାନଙ୍କୁ ଅତି ସୁନ୍ଦର ଭାବରେ ସଜାଇ ସାରଳା ଦାସ ନବଗୁଞ୍ଜର ସୃଷ୍ଟି କରିଛନ୍ତି । ସେହିପରି ଅନ୍ୟ ଏକ ଆଖ୍ୟାୟିକା, ଦୁର୍ଯ୍ୟୋଧନଙ୍କର ରକ୍ତନଦୀ ସନ୍ତରଣ । ଏପରି ଆଖ୍ୟାୟିକା ସଂସ୍କୃତ ମହାଭାରତରେ ନାହିଁ କି ଅନ୍ୟ କୌଣସି ମହାଭାରତରେ ଦେଖିବାକୁ ମିଳେନାହିଁ । ଏହା ସାରଳା ଦାସଙ୍କର ସମ୍ପୂର୍ଣ୍ଣ ନିଜସ୍ୱ । ଏହିପରି ସାରଳା ଦାସଙ୍କର ପ୍ରତ୍ୟେକ ଉପାଖ୍ୟାନ ବା ଆଖ୍ୟାୟିକାରେ କିଛି କିଛି ଦର୍ଶନ ବା ତତ୍ତ୍ୱ ରହିଛି ।

## ଓଡ଼ିଆ ଭାଷାର ଜନକ

ମହାଭାରତ, ବିଲଙ୍କା ରାମାୟଣ ଓ ଚଣ୍ଡୀପୁରାଣର ରଚୟିତା ସାରଳା ଦାସଙ୍କୁ ଓଡ଼ିଆ ଭାଷା ଓ ସାହିତ୍ୟର ଜନକ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ପାଞ୍ଚଶହ ବର୍ଷ ତଳେ ଯେତେବେଳେ ଓଡ଼ିଆ ଭାଷା କ'ଣ ବୋଲି କେହି ଜାଣିନଥିଲେ, କେତେକ 'ବୋଲି', କଳସା ବା ଚଉତିଶା ଛଡା କେଉଁଠି ଆଉ କିଛି ଲେଖା ଯାଇ ନଥିଲା, ସେତେବେଳେ ସାରଳା ଦାସ ଓଡ଼ିଆ ଭାଷାକୁ ଏକ ନୂଆ ରୂପ ଦେଲେ । ବିଶାଳ ଓ ବିରାଟ ମହାଭାରତ ଗ୍ରନ୍ଥ ଲେଖିଲେ । ଯୁଗଯୁଗ ପାଇଁ ଓଡ଼ିଆ ଭାଷାର ଏହା ଗୌରବ ହୋଇରହିବ । ସବୁ ଭାଷାର ଜନନୀ ସଂସ୍କୃତ ଭାଷା । କେବଳ ତାମିଲ ଭାଷାକୁ ଛାଡିଦେଲେ କୌଣସି ପ୍ରାଦେଶିକ ଓ ଆଞ୍ଚଳିକ ଭାଷାରେ ଏତେ ବଡ ବିଶାଳ ବିରାଟ ଗ୍ରନ୍ଥ କେହି ରଚନା କରିନଥିଲେ । ସାରଳା ଦାସ ମହାଭାରତ ରଚନା କରି ଓଡ଼ିଆ ଭାଷାର ମହତ୍ତ୍ୱ ଏବଂ ଓଡ଼ିଆ ଭାଷାର ଶ୍ରେଷ୍ଠତ୍ୱକୁ ପ୍ରତିପାଦନ କରିଥିଲେ । ଭାରତବର୍ଷର ବହୁ ଭାଷାରେ ସଂସ୍କୃତକୁ ଅନୁକରଣ ଓ ଅନୁବାଦ କରି ବହୁ ଗ୍ରନ୍ଥ ଲେଖାଯାଇଛି । କିନ୍ତୁ ସାରଳା ଦାସଙ୍କ ମହାଭାରତରେ ସଂସ୍କୃତର ଅନୁକରଣ ଆଦୌ ନାହିଁ । ଭାଷାରେ ତ ଅନୁକରଣ ନାହିଁ, ଭାବରେ ମଧ୍ୟ ଅନୁକରଣ ନାହିଁ । ମୂଳ ସଂସ୍କୃତ ମହାଭାରତ ଯିଏ ପାଠ କରିଥିବେ ସାରଳା ଦାସଙ୍କ ମହାଭାରତ ପଢିଲେ ଉଭୟ ଭିତରେ ଥିବା ପାର୍ଥକ୍ୟକୁ ସହଜରେ ଜାଣିପାରିବେ । ସାରଳା ଦାସ ତାଙ୍କ ମହାଭାରତରେ ଅତ୍ୟନ୍ତ ଗାଉଁଲି ଭାଷା ବ୍ୟବହାର କରିଛନ୍ତି । ଆଜି ତାକୁ ପଢିଲେ ଆମର ମନେ ହେବ ଯେ ସେ ଭାଷା ବର୍ତ୍ତମାନ ଆମର ପ୍ରଚଳିତ ନାହିଁ । ଆମ ଭାଷା ଆଜି ସଂସ୍କୃତ, ଇଂରେଜୀ ଓ ନାନାଦି ଭାଷା ଦ୍ୱାରା ପ୍ରଭାବିତ । ତେଣୁ ଆମେ ସାରଳାଙ୍କର ସେହି ସରଳ ଭାଷାକୁ ସହଜରେ ବୁଝି ପାରୁନାହୁଁ । କିନ୍ତୁ ତାହା ଅଶେଷ ପ୍ରାଣ ପ୍ରାଚୁର୍ଯ୍ୟରେ ଭରା ! କେତେ ନୂଆ ଶବ୍ଦ ସେ ସୃଷ୍ଟି କରିଛନ୍ତି ଓ ସେଗୁଡିକୁ ନିଜ ରଚନାରେ ବ୍ୟବହାର କରିଛନ୍ତି । ସେ ଭାଷା ଓ ସେ ଶବ୍ଦ ଦେଖିଲେ ଆଜି ବିସ୍ମିତ ହେବାକୁ ପଡେ । ସେକ୍‌ସପିଅର ଯେତେବେଳେ ତାଙ୍କ କାବ୍ୟ ଲେଖିଲେ ସେତେବେଳେ ଇଂରେଜ ଭାଷା ଅତି ଦରିଦ୍ର ଥିଲା । ତେଣୁ ସେ ତା' ଭିତରେ ପ୍ରାୟ ନ' ହଜାର ଶବ୍ଦ ଆଣି ଭର୍ତ୍ତି କଲେ । ଗ୍ରୀକ୍ ଶବ୍ଦ ଆଣିଲେ । ଲାଟିନ୍ ଶବ୍ଦ ଆଣିଲେ । ବିଭିନ୍ନ ଇଉରୋପୀୟ ଭାଷାରୁ ଶବ୍ଦ ଆଣି ତହିଁରେ ଯୋଗକଲେ । ଫଳରେ ଇଂରେଜ ଭାଷା ଏକ ସମୃଦ୍ଧ ଭାଷାରେ ପରିଣତ ହୋଇଗଲା । ସେହିପରି ସାରଳା ଦାସ ସଂସ୍କୃତ, ଦ୍ରାବିଡ, ତାମିଲ, ତେଲୁଗୁ ପ୍ରଭୃତି ବିଭିନ୍ନ ଭାଷାରୁ ଶବ୍ଦମାନ ଆଣି ସେଗୁଡିକୁ ନିଜ ଭାଷାରେ ଯୋଗ କରି ଭାଷାକୁ ସମୃଦ୍ଧ ଓ ଋଦ୍ଧିମନ୍ତ କରିଛନ୍ତି । ଅନେକ ନୂଆ ନୂଆ ଶବ୍ଦ ସେ ନିଜେ ସୃଷ୍ଟି କରିଛନ୍ତି, ଯଥା– ବାବନାଭୁତ । ବାବନାଭୁତ ଶବ୍ଦଟି କେବଳ ସାରଳା ଦାସଙ୍କ ମହାଭାରତରୁ ଆସିଛି । ପୁଣି ତାଙ୍କର 'ଭୀମର ବଳ କୁଇଁତାଙ୍କୁ ଜଣା' ପ୍ରଭୃତି ସରଳ ଅଭିବ୍ୟକ୍ତି ଆଜି ବିଶେଷ ଭାବରେ ବ୍ୟବହୃତ ହେଉଥିବା ଜଣାଯାଏ । ସାରଳା ଦାସ ଓଡ଼ିଆ ସାହିତ୍ୟ ପାଇଁ ଏକ ସ୍ୱତନ୍ତ୍ର ଶବ୍ଦ ଭଣ୍ଡାର ସୃଷ୍ଟି କରି ଯାଇଛନ୍ତି । ସେସବୁ ଶବ୍ଦର ଏକ ଅଭିଧାନ ରଚିତ ହେବା ଦରକାର ।

## ପ୍ରାଚୀନତମ ରଚନା

ସାରଳା ଦାସଙ୍କ ମହାଭାରତ, ପ୍ରାକୃତ ଭାଷାରେ ଲିଖିତ ମହାଭାରତଗୁଡିକ ମଧ୍ୟରେ ପ୍ରାଚୀନତମ । ସେତେବେଳକୁ ବଙ୍ଗ ଭାଷାରେ ମହାଭାରତ ଲେଖା ହୋଇ ନଥିଲା । ପାଞ୍ଚଶହ ବର୍ଷ ତଳେ ଏତେ ବଡ ବିରାଟ କୃତି ରଚିତ ହୋଇପାରେ, ଏ କଥା

କେହି କଳ୍ପନା କରିପାରିବେ ନାହିଁ । ଏତେ ନୂଆ ଶବ୍ଦ ବିଭବ ତା' ଭିତରେ ଅଛି ତାହା ଭାବିଲେ ବିସ୍ମିତ ହେବାକୁ ପଡେ । ସଂସ୍କୃତ ପରି ତାମିଲ ଭାଷା ହେଉଛି ଅତି ପ୍ରାଚୀନ ଭାଷା । ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରୁ ତାମିଲ ଭାଷା ଅଛି । ସେ ଭାଷାରୁ ସେ ଅନେକ ଶବ୍ଦ ଆଣିଛନ୍ତି । ଆଜି ଓଡ଼ିଆ ଭାଷାର ଚଳନ୍ତି ଭାଷାରେ ସେସବୁ ପରିଣତ ହୋଇଗଲାଣି ।

ସାରଳା ଦାସ ଥିଲେ ଜଣେ ଭାଷାର ସମ୍ରାଟ୍ । ଓଡ଼ିଆ ଭାଷାକୁ ଗଠନ କରିବାରେ ତାଙ୍କର ନିପୁଣତାକୁ ଓଡ଼ିଆ ଜାତି ଚିରଦିନ ମନେ ରଖିବ । ମହାଭାରତ ହେଉଛି ଭାରତୀୟ ସଂସ୍କୃତିର ପ୍ରତୀକ । ଯେତେଦିନ ପର୍ଯ୍ୟନ୍ତ ଏ ଦେଶରେ ରାମାୟଣ ଓ ମହାଭାରତ କଥିତ ଓ ପଠିତ ହେଉଥିବ ସେ ପର୍ଯ୍ୟନ୍ତ ଏ ଜାତିକୁ କେହି ମାରିପାରିବେ ନାହିଁ । ଗୋଟିଏ ସମୟରେ ଆମ ଉପରେ ପାଶ୍ଚାତ୍ୟ ପ୍ରଭାବ ଖୁବ୍ ଆସିପଡିଲା । ସେତେବେଳେ ଏ ଦେଶର ସଂସ୍କୃତି ସମ୍ପୂର୍ଣ୍ଣ ଭାବରେ ଧ୍ୱଂସର ସମ୍ମୁଖୀନ ହେଲା । ପାଶ୍ଚାତ୍ୟର ପ୍ରଭାବରେ ଓଡ଼ିଆ ଭାଷା ଓ ସଂସ୍କୃତିକୁ ସମ୍ପୂର୍ଣ୍ଣ ଭାବରେ ବଦଳାଇ ଦେବା ପାଇଁ ଚେଷ୍ଟା କରାଯାଇଥିଲା । ମାତ୍ର ମହାଭାରତ ଓ ରାମାୟଣ ଥିବା ଯୋଗୁଁ ଭାଷା ଓ ସଂସ୍କୃତିର କୌଣସି ପରିବର୍ତ୍ତନ ହେଲାନାହିଁ । ଆମର ସଂସ୍କୃତି ଅମର ହୋଇ ରହିଗଲା । ଓଡ଼ିଆ ଭାଷା ବିରୁଦ୍ଧରେ ଯେତେବେଳେ ଯେଉଁ ଚକ୍ରାନ୍ତ ହୋଇଛି କେହି ଏହି ଭାଷାକୁ ମାରି ପାରିନାହାନ୍ତି । କାରଣ ସାରଳା ଦାସଙ୍କ ମହାଭାରତ ଓଡ଼ିଆ ଭାଷାର ଏକ ବିରାଟ ଗୌରବମୟ ସ୍ତମ୍ଭରୂପରେ ଦଣ୍ଡାୟମାନ ହୋଇ ରହିଆସିଛି ।

**ସମନ୍ୱିତ ବିକାଶ ଆବଶ୍ୟକ**

ଯେକୌଣସି ଦେଶ ବା ଜାତି ପକ୍ଷରେ କେବଳ ସମୃଦ୍ଧି ଯଥେଷ୍ଟ ନୁହେଁ । ସମୃଦ୍ଧି ସହିତ ସଂସ୍କୃତିର ବିକାଶ ଏକାନ୍ତ ଆବଶ୍ୟକ । ସମୃଦ୍ଧି ଓ ସଂସ୍କୃତି ଉଭୟର ବିକାଶ ନହେଲେ ଜାତିର କେବେହେଲେ ସମନ୍ୱିତ ବିକାଶ ହୋଇପାରିବ ନାହିଁ । ଉଦାହରଣ ସ୍ୱରୂପ ଯୁକ୍ତରାଷ୍ଟ୍ର ଆମେରିକାକୁ ନିଆଯାଇପାରେ । ବର୍ତ୍ତମାନ ପୃଥିବୀର ସର୍ବଶ୍ରେଷ୍ଠ ଐଶ୍ୱର୍ଯ୍ୟର ଅଧିକାରୀ ହୋଇଛି ଆମେରିକା । କିନ୍ତୁ ଆମେରିକାର ଲୋକମାନଙ୍କୁ ୟୁରୋପର ଲୋକମାନେ ସୁଦୃଷ୍ଟିରେ ଦେଖନ୍ତି ନାହିଁ । କାରଣ ସଂସ୍କୃତି ଦୃଷ୍ଟିରୁ ଆମେରିକା ହେଉଛି ଅତ୍ୟନ୍ତ ଦରିଦ୍ର । ଆମେରିକାର ଲୋକମାନେ ଆମ ଦେଶକୁ ଆସିବା ସମୟରେ କେଉଁଠି ହଜାରେ ବର୍ଷର ମନ୍ଦିରଟିଏ ଦେଖିଲେ ଖୁବ୍ ବିସ୍ମିତ ହୋଇପଡନ୍ତି । କାରଣ ଆମେରିକାର ଇତିହାସ କେବଳ ମାତ୍ର ୩୦୦ ବର୍ଷର ଇତିହାସ । ସମୃଦ୍ଧିର ଚୂଡାନ୍ତ ଶିଖରରେ ପହଞ୍ଚିଥିଲେ ମଧ୍ୟ ସଂସ୍କୃତି କ୍ଷେତ୍ରରେ ସେମାନେ ବହୁତ ପଛରେ ପଡିଛନ୍ତି । ଏତେ ଧନାଢ୍ୟ ଦେଶ ହୋଇ ମଧ୍ୟ ସଂସ୍କୃତିର ଯାହା ବିକାଶ ହେବା କଥା ତାହା ତାଙ୍କର ହୋଇନାହିଁ । ତେଣୁ ସମୃଦ୍ଧି ଯଥେଷ୍ଟ ନୁହେଁ । ସମୃଦ୍ଧି ସହିତ ସଂସ୍କୃତିର ବିକାଶ ଏକାନ୍ତ ଆବଶ୍ୟକ ।

ଆଦିକବି ସାରଳା ଦାସ ଆମ ସଂସ୍କୃତିର ମୂଳଧାର କହିଲେ ଅତ୍ୟୁକ୍ତି ହେବନାହିଁ । ତାଙ୍କୁ ଆମ ଜାତୀୟ ସାହିତ୍ୟର ଜାହ୍ନବୀ ବୋଲି କୁହାଯାଇପାରେ । ତାଙ୍କଠାରୁ ସମସ୍ତେ ଶକ୍ତି ଆହରଣ କରିଛନ୍ତି । ସବୁକାଳ ପାଇଁ ଓଡିଆ ସାହିତ୍ୟରେ ସେ ଶକ୍ତିର ଉତ୍ସ ହୋଇ ରହିବେ । କେବଳ ସେତିକି ନୁହେଁ, ସେ ପ୍ରଚଣ୍ଡ ଆତ୍ମବିଶ୍ୱାସର ଅଧିକାରୀ ଥିଲେ । ସ୍ୱର୍ଗାରୋହଣ ପର୍ବରେ କବି ଲେଖିଛନ୍ତି–

'ପ୍ରଥମ ଜନ୍ମରେ ମୁଁ ହୋଇଲି କାଳିଦାସ,  
ମହା କାଳିକା ବିଜୟ ଜାତା ଅଂଶ ।  
ତୃତୀୟ ଜନ୍ମରେ ମୁଁ ସାରଳା ଦାସ କବି  
ଆର ଜନ୍ମରେ ପୁଣି ମର୍ତ୍ତ୍ୟ ମଣ୍ଡଳେ ଜନ୍ମିବି ।'

ପ୍ରଥମ ଜନ୍ମରେ ସେ କାଳିଦାସ ହୋଇ ଜନ୍ମ ହୋଇଥିଲେ । ଏବେ ସାରଳା ଦାସ ହୋଇ ଜନ୍ମ ହୋଇଛନ୍ତି । ଦରକାର ପଡିଲେ ପୁଣି ଆଉଥରେ ଜନ୍ମ ହେବେ । କି ପ୍ରଚଣ୍ଡ ଆତ୍ମବିଶ୍ୱାସ !! ଯେ କବି, ଯେ ଦ୍ରଷ୍ଟା ଓ ସାହିତ୍ୟିକ, ତାଙ୍କର ପ୍ରଚଣ୍ଡ ଆତ୍ମବିଶ୍ୱାସ ନରହିଲେ ସେ କେବେ ଚିରଦିନ ପାଇଁ ସାହିତ୍ୟ ସୃଷ୍ଟି କରିପାରିବେ ନାହିଁ ।

କବିଙ୍କର ଯେଉଁପରି ପ୍ରଚଣ୍ଡ ଆତ୍ମବିଶ୍ୱାସ ଥିଲା ସେପରି ବିନୟ ଓ ନମ୍ରତା ତାଙ୍କଠାରେ ଶୋଭା ପାଉଥିଲା । ନିଜକୁ ଏତେ ନ୍ୟୂନ ପ୍ରତିପାଦନ କରି କୌଣସି କବି କେବେ ଲେଖିନାହାନ୍ତି । ମୁଁ ଅତ୍ୟନ୍ତ ଅଜ୍ଞ, ଅପଣ୍ଡିତ, ଅଜଣା ଅଶୁଣା । ମୁଁ ଯେଉଁଠି ଜନ୍ମ ହୋଇଛି ତାହା ଲୋକେ ଜାଣି ନାହାଁନ୍ତି । ମୁଁ

ଯେଉଁ କୁଳରେ ଜନ୍ମଲାଭ କରିଛି ତାକୁ ମଧ କେହି ଜାଣିନାହାଁନ୍ତି । ମୁଁ ଯାହା କେବଳ ଲେଖିଛି ବା ଲେଖି ପାରିଛି, ତାହା କେବଳ ଶାରଳାଙ୍କ ପ୍ରସାଦରେ ଲେଖିଛି ।

ଜାତିରେ ଶୁଦ୍ର ମୁଁ ଯେ ଅଟଇ ମୁରୁଖ
ପାଠ ଶାହାସ୍ତ୍ରମାନ ମୁଁ ନ ଜାଣଇ ହାକ ।

ଶ୍ରୀ ସାରୋଳା ଚଣ୍ଡିନାମେ ଯେ ଅଟଇ ମହାଦେବୀ
ତାହାଙ୍କର ପୁତ୍ର ମୁଁ ଯେ ସାରୋଳ ଦାସ କବି ।
ପ୍ରସନ୍ନେଣ ଆଗ୍ୟା ମୋତେ ଦେଲେ ଶାକାମ୍ବରୀ
ଲଭ ତୁ କପିଳାସ ଶ୍ରୀ ମହାଭାରଥ କରି ।
ଶୁଣି ବୁଧ ଜନେ ନଧର ଆନ ଚିତ୍ତ
ଜନ୍ମେଣ ମରୁଖ ମୁହିଁ ନୋହଇ ପଣ୍ଡିତ ।

**ସୁଦୂର ପ୍ରସାରୀ ସାମ୍ରାଜ୍ୟ**

ସାରଳା ଦାସ ଯେତେବେଳେ ମହାଭାରତ ରଚନା କରିଥିଲେ ସେତେବେଳେ ଓଡ଼ିଶା ଦେଶର ସୁଦୂର ପ୍ରସାରୀ ସାମ୍ରାଜ୍ୟ ପ୍ରତିଷ୍ଠିତ ହୋଇଥିଲା । ତାହା ହେଉଛି କପିଳେନ୍ଦ୍ର ଦେବଙ୍କ ସମୟ । ଉତ୍ତରରେ ଗଙ୍ଗା ଓ ଦକ୍ଷିଣରେ କାବେରୀ । ମହାଭାରତ ଯୁଦ୍ଧର ନିଖୁଣ ବର୍ଣ୍ଣନା ପାଠ କଲେ ଜଣାଯାଏ ସତେ ଯେପରି ସେ କପିଳେନ୍ଦ୍ର ଦେବଙ୍କ ସେନାବାହିନୀର ଜଣେ ସୁଦକ୍ଷ ସୈନିକ ବା ସେନାପତି ଥିଲେ । କପିଳେନ୍ଦ୍ର ଦେବଙ୍କ ସେନାବାହିନୀରେ ସତେ ଯେପରି ସେ ନିଜେ ଯାତ୍ରା କରିଥିଲେ । ମହାଭାରତରେ ଥିବା ଅନେକ ତେଲୁଗୁ, ତାମିଲ ଶବ୍ଦରୁ ତାହା ଜଣାପଡେ ।

କପିଳେନ୍ଦ୍ରଙ୍କ ପରି ସାରଳା ଦାସ ଓଡ଼ିଆ ଜାତିର ଗୌରବ । ଜାତିର ଜାତୀୟ ଗର୍ବ ଓ ଗୌରବବୋଧ ନରହିଲେ କୌଣସି ଜାତି ଉପରକୁ ଉଠିପାରେ ନାହିଁ । ଯେପରି ପ୍ରତ୍ୟେକ ଇଂରେଜ ଛାତ୍ରର, ସେ ସ୍କୁଲ ଛାତ୍ର ହେଉ ବା କଲେଜ ଛାତ୍ର ହେଉ ସେକ୍ସପିଅର ପଢିବା ଅନିବାର୍ଯ୍ୟ । କାରଣ ସେକ୍ସପିଅର ନ ପଢିଲେ ଭାଷା ଶିକ୍ଷା ସମ୍ପୂର୍ଣ୍ଣ ନୁହେଁ ସେହିପରି ଯେକୌଣସି ଓଡ଼ିଆ ପକ୍ଷରେ ସାରଳା ଦାସ ନପଢିଲେ ଭାଷା ଶିକ୍ଷା ସମ୍ପୂର୍ଣ୍ଣ ହେବନାହିଁ । ସେକ୍ସପିଅର ଯେପରି ପ୍ରତ୍ୟେକ ଇଂରେଜର ଗର୍ବ ଏବଂ ଗୌରବ, ସାରଳା ଦାସ ସେହିପରି ପ୍ରତ୍ୟେକ ଓଡ଼ିଆର ଗର୍ବ ଏବଂ ଗୌରବ । ମହାଭାରତ ପଢିଲେ ଜଣାଯାଏ ସତେ ଯେପରି ମହାଭାରତ ଯୁଦ୍ଧ ହସ୍ତିନାରେ ହୋଇନାହିଁ । ଏଯୁଦ୍ଧ ହୋଇଛି ଓଡ଼ିଶାରେ । ଏଇଠିକି ଯୁଧିଷ୍ଠିର ଆସିଛନ୍ତି ଏବଂ ଭୀମ ସହିତ ତାଙ୍କର ଅନ୍ୟ ଭାଇମାନେ ଆସିଛନ୍ତି । ଏଇଠି ତାଙ୍କର ବିବାହ ହୋଇଛି । ଏଇଠି ସେ ତାଙ୍କର ଜୀବନ କଟାଇଛନ୍ତି । ତେଣୁ ସଂସ୍କୃତ ମହାଭାରତଠାରୁ ସାରଳା ମହାଭାରତ କେତେ ଯେ ତଫାତ୍ ତାହା ସହଜରେ ଜଣାପଡେ । ଏ ମହାଭାରତରେ କେତେ ଦେଶାତ୍ମବୋଧ, କେତେ ଜାତୀୟତା ! ଆଜି ଯଦି ଓଡ଼ିଶାର ପୁରପଲ୍ଲୀରେ ସାରଳାଙ୍କ ମହାଭାରତ ଯଥାର୍ଥ ଭାବରେ ପଠିତ ହୁଏ, ତାହାହେଲେ ସାରଳା ଦାସଙ୍କ ପ୍ରତି ତାହା ହେବ ଏ ଜାତିର ଉପଯୁକ୍ତ ଶ୍ରଦ୍ଧାଞ୍ଜଳି ।

ପୂର୍ବତନ ମୁଖ୍ୟମନ୍ତ୍ରୀ
ଓଡ଼ିଶା



# ସ୍ୱାଧୀନତାର ଶପଥ

ଡକ୍ଟର ସୌରୀବଂଧୁ କର

'ମୁଁ ଏପରି ଏକ ଭାରତ ପାଇଁ ଚେଷ୍ଟା କରିବି, ଯେଉଁଠାରେ ଗରିବରୁ ଅତି ଗରିବ ମନୁଷ୍ୟ ମଧ୍ୟ ଅନୁଭବ କରିବ ଯେ ଏହା ତାହାର ଦେଶ, ଯାହାର ଗଠନ ପାଇଁ ତାହାର ସ୍ୱର ମହତ୍ତ୍ୱ ରଖେ। ମୁଁ ଏପରି ଏକ ଭାରତ ପାଇଁ ପ୍ରଚେଷ୍ଟା କରିବି, ଯେଉଁଠି ଉଚ୍ଚ–ନୀଚର କୌଣସି ଭେଦଭାବ ରହିବ ନାହିଁ। ସମସ୍ତ ଜାତି ମିଳିମିଶି ରହିବେ। ଏପରି ଭାରତ ହେବ, ଅସ୍ପୃଶ୍ୟତା, ମଦ ଏବଂ ନିଶାଜାତ ଦ୍ରବ୍ୟର କୌଣସି ସ୍ଥାନ ରହିବ ନାହିଁ। ସେଠାରେ ସ୍ତ୍ରୀମାନଙ୍କୁ ପୁରୁଷମାନଙ୍କ ପରି ସମାନ ଅଧିକାର ମିଳିବ। ସମଗ୍ର ବିଶ୍ୱ ସହିତ ଆମର ସମ୍ପର୍କ ଶାନ୍ତି ଓ ଭ୍ରାତୃତ୍ୱ ହେବ। ଏହା ହେଉଛି ମୋର ସ୍ୱପ୍ନର ଭାରତ।' ଜାତିର ଜନକ ମହାତ୍ମା ଗାନ୍ଧୀଙ୍କର ଏହି ମନ୍ତ୍ର ଆଜି ବି ଆମ କର୍ଣ୍ଣ ଗହ୍ୱରରେ ଗୁଞ୍ଜରିତ ହୁଏ। ଗାନ୍ଧୀଙ୍କର ଏହି ମହାନ୍ ବାକ୍ୟକୁ କାର୍ଯ୍ୟରେ ରୂପାନ୍ତରିତ କରିବା ହେଉଛି ଆମ ସ୍ୱାଧୀନତାର ତାତ୍ପର୍ଯ୍ୟ ଓ ସଂକଳ୍ପ। ସେଥିପାଇଁ ସେ ମନୁଷ୍ୟ ଉପରେ ଗୁରୁତ୍ୱ ଦେଇଥିଲେ। ମନୁଷ୍ୟ ପରିବର୍ତ୍ତନ ହୋଇଗଲେ ସମାଜ ଆପେ ଆପେ ବଦଳିଯିବ, ସୁଧୁରିଯିବ। ସେଥିପାଇଁ ଜୀବନରେ ଶୁଦ୍ଧତା ଲୋଡ଼ା। ସେ ନିଜେ ଗଢ଼ିଥିବା ଆଶ୍ରମରେ ନିୟମ ରଖିଥିଲେ ସତ୍ୟ, ଅହିଂସା, ବ୍ରହ୍ମଚର୍ଯ୍ୟ, ଅସ୍ୱାଦ, ଅସ୍ତେୟ, ଅପରିଗ୍ରହ, ଅଭୟ, ଅସ୍ପୃଶ୍ୟତା ନିବାରଣ, ଶାରୀରିକ ଶ୍ରମ, ସର୍ବଧର୍ମ ସମନ୍ୱୟ ଓ ସ୍ୱଦେଶୀ ପରି ଏଗାର ଗୋଟି ବ୍ରତ। ଏହାକୁ ପାଳନ କରିବା ପ୍ରତ୍ୟେକ ଆଶ୍ରମବାସୀଙ୍କ ପାଇଁ ଥିଲା ଏକାନ୍ତ ଅପରିହାର୍ଯ୍ୟ। ମନୁଷ୍ୟ ଜୀବନର ସଫଳତା ଏହା ଉପରେ ନିର୍ଭର କରେ।

ସତ୍ୟ ଓ ଅହିଂସା ମାର୍ଗରେ ଯାଇ ଦେଶ ସ୍ୱାଧୀନ ହେଲା। ଦେଶ ଧର୍ମନିରପେକ୍ଷତାକୁ ଗ୍ରହଣ କଲା। ଅହିଂସା ଦ୍ୱାରା ରାଜନୈତିକ, ଆର୍ଥିକ ଏବଂ ସାମାଜିକ କାର୍ଯ୍ୟ ସୁରୁଖୁରୁରେ ହୋଇପାରିବ, ଏହା ଆମର ଦୀର୍ଘ ବର୍ଷର ଅନୁଭବ ଓ ଅନୁଭୂତି। ସର୍ବଧର୍ମ ସମନ୍ୱୟ ମାଧ୍ୟମରେ ଆମେ ଧର୍ମନିରପେକ୍ଷତା ନୀତିକୁ ଆହୁରି ଶକ୍ତିଶାଳୀ କରିପାରିବା। ଅହିଂସା ଆମର ଶକ୍ତି ଓ ସାମର୍ଥ୍ୟ। ମାର୍ଟିନ୍ ଲୁଥର କିଙ୍ଗ୍ କହିଥିଲେ, ଭାରତର ଲୋକମାନେ ଏହା ଦେଖାଇଦେଲେ ଯେ ଅହିଂସା ହେଉଛି ଏକ ଶକ୍ତିଶାଳୀ ନୈତିକତା ଏବଂ ସାମାଜିକ ପରିବର୍ତ୍ତନ ପାଇଁ ଏହି ଅହିଂସା ନିର୍ମାଣ ହୋଇଛି। ଖୁବ୍ ଶୀଘ୍ର କିଛି ସମୟ ପରେ ସଂସାରର ସମସ୍ତ ଲୋକମାନେ ଶାନ୍ତିରେ ମିଳିମିଶି ରହିବା ପାଇଁ ମାର୍ଗ ଖୋଜିବେ। ବ୍ୟକ୍ତି ମାନବୀୟ ସଂଗ୍ରାମ ପାଇଁ ଏହି ପଦ୍ଧତିର ବିକାଶ ଚାହେଁ, ଯାହା ପ୍ରତିରୋଧ, ଆକ୍ରମଣ ଓ ପ୍ରତିଶୋଧ କାର୍ଯ୍ୟକୁ ବିରୋଧ କରିବ।

୧୫ ଅଗଷ୍ଟ ୧୯୪୭ ମସିହାରେ ଦେଶ ସ୍ୱାଧୀନ ହେଲା। ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ପଣ୍ଡିତ ଜବାହରଲାଲ ନେହେରୁ ସାମ୍ବିଧାନିକ ସଭାରେ ଭାଷଣ ଦେଇ ଆମକୁ ମନେ ପକେଇ ଦେଇଥିଲେ, ଯେଉଁ ସଫଳତାର ଉତ୍ସବ ଆମେ ଆଜି ପାଳନ କରୁଛେ, ତାହା ହେଉଛି ଗୋଟିଏ ପଦକ୍ଷେପ ଆଗକୁ ଅପେକ୍ଷା କରିଥିବା ବୃହତ୍ ସଫଳତା ପାଇବା ପାଇଁ ସୁଯୋଗକୁ ଉନ୍ମୁକ୍ତ କରାଗଲା। ଆମେ କ'ଣ ସେତିକି ମାତ୍ରାରେ ସାହସୀ ଓ ପ୍ରଜ୍ଞାବାନ୍ ଯେ ଏହି ସୁଯୋଗକୁ ଧରି ପାରିବା ଏବଂ ଭବିଷ୍ୟତର ଆହ୍ୱାନକୁ ଗ୍ରହଣ କରିପାରିବା ?

ଭବିଷ୍ୟତର ଏହି ଆହ୍ୱାନ ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କ ଭାଷାରେ ଥିଲା ଏହିପରି : ଆମର ଗୋଟିଏ ଲକ୍ଷ୍ୟ ଓ ଗୋଟିଏ ଉଦ୍ଦେଶ୍ୟ ଏବଂ ତାହା ହେଉଛି ଦେଶର ସ୍ୱାଧୀନତାକୁ ନିର୍ମାଣ କରିବା ପାଇଁ ଓ ମାନବ ଜାତି ମଧ୍ୟରେ ଶାନ୍ତି ପ୍ରତିଷ୍ଠା କରିବା ପାଇଁ ଆମର ଯୋଗଦାନ।

ମଧ୍ୟରାତ୍ରରେ ଯେତେବେଳେ ସ୍ୱାଧୀନତା ମିଳିଲା ସେତେବେଳେ କଷ୍ଟଲବ୍ଧ ସ୍ୱାଧୀନତାକୁ ରକ୍ଷା କରିବା ପାଇଁ ଦେଶର ସେବା କରିବା ପାଇଁ ସମସ୍ତେ ଶପଥ ନେଇଥିଲେ। ବିଶ୍ୱରେ ଭାରତର ସ୍ଥାନ ମହିମା ବିମଣ୍ଡିତ ହେବ, ଏଥିପାଇଁ ଆମକୁ କାର୍ଯ୍ୟ କରିବାକୁ ହେବ ଓ ଶପଥ ନେବାକୁ ହେବ। ଏହାହିଁ ଥିଲା ଆମର ପୁରୋଦୃଷ୍ଟି। ସ୍ୱାଧୀନତା ଥିଲା ଆମ ପାଇଁ ଏକ ଅବର୍ଣ୍ଣନୀୟ ବିଜୟ। ୧୯୪୭ ରୁ ୨୦୧୮। ଦୀର୍ଘ ୭୧ ବର୍ଷର ଯାତ୍ରା ଆମକୁ ଅଭିଜ୍ଞ କରିଛି। ଆମ ଦେଶର ପ୍ରଗତି ଓ ବିକାଶରେ ଆମେ ସାମିଲ ହୋଇଛୁ । 'ସ୍ୱରାଜ୍ୟ ମୋର ଜନ୍ମଗତ ଅଧିକାର', ଆଜି ବାସ୍ତବରେ ରୂପ ନେଇଛି। ଗାନ୍ଧୀ ରସ୍କିନଙ୍କର 'ଅନ ଟୁ ଦି ଲାଷ୍ଟ'ରୁ ଶିକ୍ଷା ପ୍ରାପ୍ତ ହୋଇ ଯେଉଁ ହିନ୍ଦ୍ ସ୍ୱରାଜ୍ୟର କଥା କହିଥିଲେ, ତାହା ତିନିଗୋଟି ସିଦ୍ଧାନ୍ତ ଉପରେ ନିହିତ ଥିଲା।

ପ୍ରଥମତଃ ବ୍ୟକ୍ତିର ଶ୍ରେୟ ସମଷ୍ଟିର ଶ୍ରେୟ ମଧ୍ୟରେ ନିହିତ। ଦ୍ୱିତୀୟରେ ଓକିଲ ଓ ବାରିକ ଉଭୟଙ୍କ ମୂଲ୍ୟର ସମାନ ଅଧିକାର ରହିଛି। ତୃତୀୟରେ କୃଷକ, କାରିଗର ଏବଂ ଶ୍ରମିକର ଜୀବନ ଉତ୍ତମ ଏବଂ ସର୍ବୋତ୍କୃଷ୍ଟ। ଗାନ୍ଧିଜୀଙ୍କ ମତରେ ମନୁଷ୍ୟ ଯଦି ସୁଧୁରି ଯାଏ, ତେବେ ସମାଜ ଆପେ ଆପେ ସୁଧୁରିଯିବ। ଏଥିପାଇଁ ସମାଜରେ ଉତ୍ତମ ମନୁଷ୍ୟ ଉପରେ ସେ ଗୁରୁତ୍ୱ ଆରୋପ କରିଥିଲେ।

ଆମେ ସ୍ୱାଧୀନତାର ୭୧ ବର୍ଷ ପରେ ସମଷ୍ଟିର ଉନ୍ନତି କରିବା ପାଇଁ ବ୍ୟକ୍ତିଗତ ନିଷ୍ଠା, ଦାୟିତ୍ୱ ଓ କର୍ତ୍ତବ୍ୟ ଉପରେ ଗୁରୁତ୍ୱ ଦେବାକୁ ହେବ। ଆମ ସମସ୍ତଙ୍କର ପ୍ରାଥମିକ ଦାୟିତ୍ୱ ହେଉଛି ସାମାଜିକ କର୍ତ୍ତବ୍ୟ ସମ୍ମୁଖରେ ବ୍ୟକ୍ତିଗତ ଅଧିକାରକୁ ପଛକୁ ରଖିବାକୁ ହେବ। ବ୍ୟକ୍ତିର ଜୀବନ ସମଷ୍ଟିର ଜୀବନ ମଧ୍ୟରେ ନିହିତ, ବ୍ୟକ୍ତିର ବ୍ୟକ୍ତିଗତ ସୁଖ ସମଷ୍ଟିର ସୁଖ ମଧ୍ୟରେ ମିଳେ। ଅଗଷ୍ଟ ୧୫ ତାରିଖରେ ଆମେ ଦେଶର ଓ ଲୋକମାନଙ୍କର ଏକତ୍ୱ ଓ ଅଖଣ୍ଡତାକୁ ଅନୁଭବ କରୁ । ସ୍ୱାମୀ ବିବେକାନନ୍ଦ କହିଥିଲେ, ...ଗୋଟିଏ ରାଷ୍ଟ୍ରକୁ ତା'ର ଦୁର୍ବଳତାର କଡ଼ି ଯାହାକୁ ଆମେ ହିଂସା ଇତ୍ୟାଦି କହିପାରିବା, ତା' ଉପରେ ବିଚାର କରାଯାଏ ନାହିଁ। କାରଣ ତାହା କେବଳ ବାଲୁଙ୍ଗା ପରି ଯାହା ପଛରେ ରହିଯାଏ। ରାଷ୍ଟ୍ରକୁ ବିଚାର କରାଯାଏ ଭଲ, ଉଚ୍ଚ ବିଚାର ଓ ପବିତ୍ର ମନୁଷ୍ୟମାନଙ୍କ ଦ୍ୱାରା, ଯେଉଁମାନେ ଦେଖାଇ ଦିଅନ୍ତି ଯେ ଜାତୀୟ ଜୀବନ ସ୍ରୋତ ଅତ୍ୟନ୍ତ ପରିଷ୍କାର ଭାବରେ ଓ ଶକ୍ତିଶାଳୀ ଢଙ୍ଗରେ ପ୍ରବାହିତ ହେଉଛି। ତୁମେ କ'ଣ କେବେ କଞ୍ଚା, ଅବିକଶିତ ଓ ପୋକ ଦ୍ୱାରା ଆକ୍ରାନ୍ତ ତଳେ ପଡ଼ିଥିବା ଗୋଟିଏ ବଡ଼ ଆତକୁ ନେଇ ଯାହାର ସଂଖ୍ୟା ହୁଏତ ସମୟ ସମୟରେ ଅଧିକ ହୋଇପାରେ, ତାକୁ ନେଇ ଆତଗଛ ସମ୍ପର୍କରେ ବିଚାର କର? ଯଦି ସେହି ଗଛରେ ଗୋଟିଏ ବିକଶିତ ପାଚିଲା ଫଳ ରହିଛି, ତାହା ଆତଗଛର କ୍ଷମତା, ସମ୍ଭାବନା ଓ ଉଦ୍ଦେଶ୍ୟକୁ ବୁଝାଏ, ଶହ ଶହ ସଂଖ୍ୟାରେ ଅବିକଶିତ ଆତ ଫଳ ନୁହେଁ, ଆମ ଦେଶରେ ଲକ୍ଷ ଲକ୍ଷ ସଂଖ୍ୟାରେ ବିକଶିତ, ପ୍ରଜ୍ଞାବାନ୍, କର୍ତ୍ତବ୍ୟପରାୟଣ ବ୍ୟକ୍ତିବିଶେଷ ଗ୍ରାମ, ସହରମାନଙ୍କରେ ରହି ସମାଜର କାର୍ଯ୍ୟରେ ନିୟୋଜିତ ହୋଇଛନ୍ତି। ଦେଶର ବିକାଶ ସେମାନଙ୍କ ଉପରେ ନିର୍ଭର କରେ।' ପ୍ରଗତିର ଚକ୍ରକୁ ଆଗେଇ ନେବା ପାଇଁ ସତ୍ୟ ଓ ଅହିଂସାକୁ ନିଜର ପାଥେୟ କରି ସମଷ୍ଟିର ସେବାରେ ନିୟୋଜିତ ହେବା ହେଉଛି ସ୍ୱାଧୀନତା ଦିବସର ଶପଥ। ଆମକୁ ଦୃଢ଼ ଭାବରେ ଛିଡ଼ା ହେବାକୁ ହେବ ଏବଂ ଦେଶ ପ୍ରତି ଆମର କର୍ତ୍ତବ୍ୟକୁ ପାଳନ କରିବାକୁ ହେବ।

ପ୍ଲଟ୍ ନଂ–୫୦୧୨/୫୮୫୩
ଗଜପତି ନଗର, ଭୁବନେଶ୍ୱର–୭୫୧୦୦୫



# ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶାର ନାରୀ

**ବିମଳା ସିଂ**

'ପ୍ରକୃତି' ଓ 'ପୁରୁଷ', ଏ ଦୁଇ ସତ୍ତାର ମିଳନରେ ଏ ସୃଷ୍ଟିର ସୃଷ୍ଟି । ଜଳ ବିନା ମୀନର ଯେପରି ସ୍ଥିତି ନାହିଁ, ସେହିପରି ନାରୀ ବିନା ଏ ଜଗତର ସ୍ଥିତି ଅସମ୍ଭବ । ନାରୀ ଯୁଗଯୁଗ ଧରି ପୂଜା ପାଇ ଆସୁଛି ଜଗତ ଜନନୀ, କଲ୍ୟାଣମୟୀ, ମଙ୍ଗଳମୟୀ ରୂପେ । ସମାଜର ସ୍ଥିତି ଓ ବିକାଶର ଧାରା କେବଳ ସମ୍ଭବ ଏଇ ନାରୀ ଦ୍ୱାରା । ପରିବାରର ସୃଷ୍ଟିଠାରୁ ଆରମ୍ଭକରି ଏ ବିରାଟ ସଂସାର ବକ୍ଷରେ ନାରୀ ଯେ ନିହାତି ଆବଶ୍ୟକୀୟ ସତ୍ତାଟିଏ, ଏହା ସମସ୍ତେ ଜାଣନ୍ତି । ନାରୀ ଓ ପୁରୁଷ ଗୋଟିଏ ମୁଦ୍ରାର ଦୁଇ ପାର୍ଶ୍ୱ ସଦୃଶ । ନାରୀ ସୃଷ୍ଟିକାରିଣୀ, ସ୍ଥିତି ଓ ପ୍ରଳୟକାରିଣୀ ମଧ୍ୟ । ସ୍ଥଳବିଶେଷରେ ସେ ସାଜେ ସଂହାରକାରିଣୀ । ସେ କେତେବେଳେ ଦୁର୍ଗା ରୂପରେ, କେତେବେଳେ କାଳୀ ରୂପରେ ତ କେତେବେଳେ ରାଧା ଅବା ଦ୍ରୌପଦୀ ରୂପରେ ନିଜକୁ ସଜାଇପାରେ । ଭିନ୍ନ ଭିନ୍ନ ପରିସ୍ଥିତିରେ ତା'ର ବିଭିନ୍ନ ରୂପ । ସମାଜର ମଙ୍ଗଳ ପାଇଁ ସେ ଶାନ୍ତ ବାତାବରଣଟିଏ ସୃଷ୍ଟି କରିପାରେ ଓ ଆବଶ୍ୟକ ହେଲେ ହାତରେ ଖଡ୍ଗ ଧରି ଶତ୍ରୁର ସାମ୍ନା କରିବାକୁ ପଛାଏ ନାହିଁ ।

ଦେବଭୂମି, ଆର୍ଯ୍ୟଭୂମି ଆମ ଭାରତବର୍ଷରେ ଜନ୍ମ ନେଇ ମରଣକୁ ଜୟ କରିଛନ୍ତି ଅନେକ ବୀରା ନାରୀ । ଇତିହାସ ସେଇମାନଙ୍କ ବୀର ଗାଥା ଗାଏ । ଏଇ ବୀର ଭୂମିରେ ଆମ ଓଡ଼ିଶା ଅନନ୍ୟ ତା'ର କଳା, ସାହିତ୍ୟ. ସଂସ୍କୃତି ପାଇଁ । ଏତଦ୍‌ବ୍ୟତୀତ ଏଇ ପୁଣ୍ୟ ଭୂମିରେ ଭୂମିଷ୍ଠ ହୋଇଛନ୍ତି ଅନେକ ବୀରା ରମଣୀ, ଯେଉଁମାନଙ୍କୁ ଛାଡ଼ିଦେଲେ ଏ ମାଟିର ଇତିହାସ ଅସଂପୂର୍ଣ୍ଣ ବୋଲି କୁହାଯିବ । କୁଚକ୍ରାନ୍ତକାରୀ ବ୍ରିଟିଶମାନଙ୍କ କବଳରୁ ଏଇ ପୁଣ୍ୟ ଭୂଇଁକୁ ରକ୍ଷା କରିବା ପାଇଁ ଯେଉଁ ସଂଗ୍ରାମ ହୋଇଥିଲା ସେଥିରେ ନାରୀ ସଂଗ୍ରାମୀମାନଙ୍କ କାହାଣୀ ଶୁଣିଲେ ବା ପଢ଼ିଲେ ନିଜକୁ ଗର୍ବ ଅନୁଭବ କରିବାକୁ ପଡେ ଯେ ମୁଁ ଏଇ ବୀରା ରମଣୀମାନଙ୍କର ଦାୟାଦ ।

ଦୁର୍ଦ୍ଧର୍ଷ ବ୍ରିଟିଶମାନଙ୍କଠାରୁ ଏ ଦେଶର ସ୍ୱାଧୀନତା ରକ୍ଷା କରିବା ପାଇଁ ଯେତେବେଳେ ଭାରତବର୍ଷର ବିଭିନ୍ନ ସ୍ଥାନରୁ ବିଦ୍ରୋହର ସ୍ୱର ଉଠିଲା, ସେତେବେଳେ ନିଜ ମାତୃଭୂମିକୁ ରକ୍ଷା କରିବା ପାଇଁ ପୁରୁଷମାନଙ୍କ ସହ ମଧ୍ୟ ନାରୀମାନେ ଯୁଦ୍ଧ କ୍ଷେତ୍ରରେ ସଗରବେ ଓହ୍ଲାଇ ଆସିଥିଲେ । ସେମାନଙ୍କ ମଧ୍ୟରେ ଅଗ୍ରପୂଜ୍ୟ ରାଣୀ ଶୁକଦେଈ, ରାଣୀ ଲକ୍ଷୀବାଈ । ଏଇ ବୀରା ରମଣୀମାନଙ୍କୁ ଆଜି ପର୍ଯ୍ୟନ୍ତ ଇତିହାସ ଭୁଲି ନାହିଁ । ଏଣୁ ଏଇ ମାଟିର ସନ୍ତାନ ଭାବରେ ସର୍ବଭାରତୀୟ ସ୍ତରରେ ଯେତେ ନାରୀ ନେତ୍ରୀ ମହାତ୍ମା ଗାନ୍ଧୀଙ୍କ ଅହିଂସା ଆନ୍ଦୋଳନରେ ସାମିଲ ହୋଇ ଲହୁ ଲୁହ ଏକାକାର କରିଦେଇ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ କାରାବରଣ କରିଥିଲେ, ସେଇମାନଙ୍କ ଭିତରୁ ଆମ ଓଡ଼ିଶାର ଅନେକ ନାରୀ ନେତ୍ରୀ ତତ୍କାଳୀନ ସମାଜର କଠୋର ହିନ୍ଦୁ ନୀତିକୁ ଆଡ଼ଆଖି କରି ପରଦା ଆଡ଼େଇ ଦେଇ ସ୍ୱାଧୀନତା ସଂଗ୍ରାମୀ ସାଜିଥିଲେ । ସେଇ ଚିର ସ୍ମରଣୀୟା ନାରୀ ନେତ୍ରୀମାନଙ୍କ ମଧ୍ୟରେ ଅନ୍ନପୂର୍ଣ୍ଣା ଦେବୀ, ସରଳା ଦେବୀ, ମାଳତୀ ଚୌଧୁରୀ, ରମା ଦେବୀ, ରାଧାମଣି ଦେବୀ, ସୁଭଦ୍ରା ଦେବୀ, ଜାହ୍ନବୀ ଦେବୀ, ହରପ୍ରିୟା ଦେବୀ, ସୁନାମଣି ଦେବୀ, ଶୋଭାବତୀ ଦେବୀ, କୃଷ୍ଣକାମିନୀ ଦେବୀ, ଆଶାଲତା ଆଚାର୍ଯ୍ୟ, ବିମଳା ଦତ୍ତ, ଅନ୍ନପୂର୍ଣ୍ଣା ରଥ, ଗୁଣମଣି ଦେବୀ, ସୁନ୍ଦରମଣି ଦେବୀ, ସରସ୍ୱତୀ ଦେବୀ, ନିରୂପମା ଦେବୀ, କ୍ଷେତ୍ରମଣି ଦେବୀ, ଅମ୍ବିକା ଦେବୀ, କୁମାରୀ ଆଧାରମଣି

ଦେବୀ, ସୁଶିଳା ଦେବୀ, କୁମୁଦ ଦେବୀ, କୋକିଳ ଦେବୀ, ମୋହିନୀ ଦେବୀ, କୁମାରୀ ତୁଳସୀ ଦେବୀ, କୁମୁଦିନୀ ଦେବୀ, କୁମାରୀ ଛାୟା ଦେବୀ, ମାଳତୀ ଦେବୀ (କ), ମାଳତୀ ଦେବୀ (ଖ), ହାରାମଣି ଦେବୀ, ଶୁକ ଦେବୀ, ସଖା ଦେବୀ, ଚାରୁବାଳା ଦେବୀ, ମଙ୍ଗଳା ସେନ୍ , ମାଣିକ ଦେବୀ, ହେମଲତା ଦେବୀ, କୁମାରୀ ନିଶାମଣି ଦେବୀ, ଗୋଦାବରୀ ଦେବୀ, କିରଣ ରେଖା ରାୟ, ଶକୁନ୍ତଳା ଦେବୀ, ଶଶୀବାଳା କାନୁନ୍‌ଗୋ, ବେଲ ଦେଈ, ବିଳାସୀ ଦେଈ, ଝୁପେଇ ଦେଈ, ପାର୍ବତୀ ଗିରି, ଚମ୍ପା ଦେବୀ, ଯଶୋଦା ଦେବୀ, ଜମ୍ବୁଲତା ଦେବୀ, ବିମଳା ଦେବୀ, ନୀଳମଣି ଦେବୀ, ପ୍ରଭାବତୀ ଦେବୀ, ବୀଣାପାଣି ଦେବୀ, କୁନ୍ତଳା କୁମାରୀ ସାବତ ଇତ୍ୟାଦି ଅନେକ ନାରୀ ନେତ୍ରୀ ସ୍ୱାଧୀନତା ସଂଗ୍ରାମର ଲେଲିହାନ ଶିଖାରେ ଝାସ ଦେଇ ସେମାନଙ୍କର ଆଗାମୀ ପିଢ଼ି ପାଖରେ ଆଦର୍ଶ ଓ ତ୍ୟାଗର ଯେଉଁ ବୀଜ ବୁଣି ଦେଇଯାଇଛନ୍ତି, ତା'ର ପଟ୍ଟାନ୍ତର ନାହିଁ ।

ତତ୍‌କାଳୀନ ସମାଜରେ କିଛି ବିଲାତ ଫେରନ୍ତା ଉଚ୍ଚଶିକ୍ଷିତ ଯୁବଗଣ ଇଂରେଜ ସରକାରର ଶୋଷଣ ନୀତି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ଓଡ଼ିଶା ମାଟିରେ କିନ୍ତୁ ବଣ ରାଇଜର ମଣିଷ– କନ୍ଧମାନେ ଚକରା ବିଷୋୟୀଙ୍କ ନେତୃତ୍ୱରେ ମେଳି କରି ଇଂରେଜମାନଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ, ଯାହାକୁ ଆମେ ଇତିହାସରେ ୧୮୧୭ ମସିହାର 'ପାଇକ ବିଦ୍ରୋହ' ନାମରେ ଜାଣୁ । ତା'ର ପରବର୍ତ୍ତୀ ପର୍ଯ୍ୟାୟରେ ଏଇ ଓଡ଼ିଶା ମାଟିରୁ ଜନ୍ମ ନେଇଥିବା ଆଞ୍ଚଳିକ ବିଦ୍ରୋହ ଏକ ଜାତୀୟ ବିଦ୍ରୋହର ରୂପ ନେଇଥିଲା ୧୮୫୭ ମସିହାରେ 'ସିପାହୀ ବିଦ୍ରୋହ' ନାମରେ । ଏଥିରେ ଉତ୍ପୀଡ଼ିକ ଭାରତବାସୀ ଆବାଳବୃଦ୍ଧବନିତା ସଂଗ୍ରାମ ରୂପକ ନିଆଁରେ ଝାସ ଦେଇ ଭାରତମାତାକୁ ବିଦେଶୀ କବଳରୁ ସେମାନଙ୍କ ଶୋଷଣ, କଷଣ, ଅତ୍ୟାଚାରରୁ ରକ୍ଷାକରିବା ପାଇଁ ଅଣ୍ଟାଭିଡ଼ି ବାହାରି ଆସିଥିଲେ । ଏ ବିଦ୍ରୋହରେ ନଥିଲା ନାରୀ ପୁରୁଷର ଭେଦ, ଆଞ୍ଚଳିକ ମନୋଭାବ, ଉଚ୍ଚନୀଚ ଭାବ, ଜାତିଆଣ ଭାବ । ନିଜ ଦେଶକୁ ନିଜେ ଶାସନ କରିବାର ଅଧିକାରକୁ ଛଡ଼ାଇ ନେଇଥିବା କୁଚକ୍ରୀ ଇଂରେଜମାନଙ୍କୁ ଏ ଦେଶରୁ ତଡ଼ିବା ପାଇଁ ତତ୍‌କାଳୀନ ସମାଜରେ ଆବଶ୍ୟକ ହୋଇ ପଡ଼ିଥିଲା ଗୋଟିଏ ମନ, ଗୋଟିଏ ନେତୃତ୍ୱ । ଭାରତୀୟ ଜାତୀୟ କଂଗ୍ରେସର ପତାକା ତଳେ ଯେଉଁ କେତେଜଣ ଯୋଗଜନ୍ମା ଏ ଦେଶର ଭାଗ୍ୟବିଧାତା ସାଜି ଆଗେଇ ଆସିଥିଲେ ସ୍ୱାଧୀନତାର ମନ୍ତ୍ରରେ ସମଗ୍ର ଭାରତବାସୀଙ୍କୁ ଦୀକ୍ଷା ଦେବା ପାଇଁ ଗୋଟିଏ ମନ୍ତ୍ରରେ, ସେ ଥିଲେ ଏ ଶତାବ୍ଦୀର ଶ୍ରେଷ୍ଠ ପୁରୁଷ 'ମହାତ୍ମା ଗାନ୍ଧୀ,' ଆଉ ତାଙ୍କର ମନ୍ତ୍ର ଥିଲା 'ଅହିଂସା ମନ୍ତ୍ର' । ସେଇ ଅହିଂସା ମନ୍ତ୍ରରେ ଦୀକ୍ଷିତ ହୋଇ ଭାରତର ଜନସାଧାରଣ 'କାଟି ପିନ୍ଧ, କୁଟି ଖାଅ' ଆହ୍ୱାନଟିକୁ ସାଦରେ ଆଦରି ନେଇଥିଲେ । ଗାନ୍ଧୀ ମନ୍ତ୍ରରେ ଦୀକ୍ଷିତ ଓଡ଼ିଶାର ତତ୍‌କାଳୀନ ଯୁବ ନେତା ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ପ୍ରେରଣାରେ ଅଭିମନ୍ତ୍ରିତ ହୋଇ ଓଢ଼ଣା ଆଢୁଆଳରେ ଜୀବନ ବିତାଉଥିବା ନାରୀମାନେ ଚାରିପାଖର ପାଚେରି ଡେଇଁ ନିଜକୁ ସାମିଲ କରାଇଥିଲେ ଏଇ ସଂଗ୍ରାମରେ । ଏଥିପାଇଁ ସେମାନଙ୍କୁ ତତ୍‌କାଳୀନ ସମାଜରୁ ମଧ୍ୟ ଅନେକ ଦୁଃଖ. ଯାତନା ଭିତର ଦେଇ ଗତି କରିବାକୁ ପଡ଼ିଥିଲା । ବ୍ରିଟିଶ୍ ସରକାର ଭାରତୀୟମାନଙ୍କ ମଧ୍ୟରେ ସାଂପ୍ରଦାୟିକତାର ବୀଜ ବୁଣି, ଧର୍ମ ଧର୍ମ ଭିତରେ ବିଭେଦ ସୃଷ୍ଟି କରାଇବା, ଛୁଆଁ ଅଛୁଆଁର ଭେଦ ଭାବ ରଖି ଏ ଜାତିର ଏକତାକୁ ନଷ୍ଟ କରିବା ପାଇଁ ବହୁବାର ଚେଷ୍ଟା କରି ବିଫଳ ହୋଇଥିଲା । ବିଫଳ ହେବା ପଛରେ ଥିଲା ଏକ ଦୃଢ଼ ମାନସିକତା ଯେଉଁଥିରେ କି ସାମିଲ ହୋଇଥିଲେ ପୁରୁଷ ସତ୍ୟାଗ୍ରହୀମାନଙ୍କ ସହ ନାରୀ ସତ୍ୟାଗ୍ରହୀ । ୧୯୩୦ ମସିହାରେ ଗାନ୍ଧୀଙ୍କ ଆହ୍ୱାନରେ ଡାକରା ଦିଆଯାଇଥିବା 'ଲବଣ ସତ୍ୟାଗ୍ରହ' ଏହାର ଜ୍ୱଳନ୍ତ ଉଦାହରଣ । କି ପରୁଷ, କି ନାରୀ ସମସ୍ତେ ଇଂରେଜ ସରକାର ବିରୁଦ୍ଧରେ ଏ ସତ୍ୟାଗ୍ରହରେ ଯୋଗଦେଇ ଲୁଣ ମାରିଥିଲେ । ଆମ ଓଡ଼ିଶାର ଇଞ୍ଚୁଡ଼ି, ହୁମ୍ମା, ସାରଥା, ଶ୍ରୀଜଙ୍ଗ, କାକଟପୁର, କୁଜଙ୍ଗ ଆଦି ସ୍ଥାନରେ ନାରୀ ନେତ୍ରୀମାନେ ମଧ୍ୟ ପୁରୁଷମାନଙ୍କ ସହ ସାମିଲ ହୋଇ ପରଦା ପ୍ରଥାକୁ ଭୁଲିଯାଇ ଲୁଣ ମାରିଥିଲେ । ସେମାନଙ୍କ ମଧ୍ୟରେ ସରଳା ଦେବୀ, ରମା ଦେବୀ, ମାଳତୀ ଦେବୀ, କିରଣବାଳା ସେନ୍ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ଏବଂ ଅନେକ ଝିଅ ବୋହୂ ଏମାନଙ୍କ ସହ ହାତ ମିଳାଇଥିଲେ । ଭାଇମାନଙ୍କ ସହ କାନ୍ଧରେ କାନ୍ଧ ମିଳାଇ ସଂଗ୍ରାମ କରିବା ପାଇଁ ବିଚ୍ ବଜାରକୁ ବାହାରି ଆସିଥିଲେ ଏବଂ ବେଳେବେଳେ ପୁରୁଷମାନଙ୍କୁ ମଧ୍ୟ ଟପି ଯାଇଥିଲେ । ନାରୀ ଯେ ପୁରୁଷମାନଙ୍କ ଅପେକ୍ଷା ଅଧିକ

ଶକ୍ତି ସଂପନ୍ନା, ତାହା ଏସବୁ ନାରୀ ସତ୍ୟାଗ୍ରହୀମାନଙ୍କଠାରେ ଦେଖିବାକୁ ମିଳିଥିଲା । ୧୯୩୧ ମସିହାରେ କରାଚୀଠାରେ ହୋଇଥିବା ଭାରତୀୟ ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନ ଏବଂ ସେହିବର୍ଷ ମେ ମାସ ୧୦ ତାରିଖରେ ପୁରୀଠାରେ ହୋଇଥିବା ମହିଳା ସମ୍ମିଳନୀ ଏହାର ଅନ୍ୟତମ ଉଦାହରଣ । ଏଇ ଦୁଇ ସମ୍ମିଳନୀରେ ଯଥାକ୍ରମେ ଓଡ଼ିଶାରୁ ପ୍ରତିନିଧିତ୍ୱ କରିଥିଲେ ସରୋଜିନୀ ଚୌଧୁରୀ, ମାଳତୀ ଦେବୀ, ରମା ଦେବୀ, ସରଳା ଦେବୀ (କରାଚୀଠାରେ) ଏବଂ ଜାହ୍ନବୀ ଦେବୀଙ୍କ ଅଧ୍ୟକ୍ଷତାରେ କୁମୁଦିନୀ ଦେବୀ, କିରଣବାଳା ସେନ୍, ରମା ଦେବୀ, ସାବିତ୍ରୀ ଦେବୀ, ରାଧାମଣି ଦେବୀ, ଇଚ୍ଛାମଣି ଦେବୀ, ଗୌରୀ ଦେବୀ, ଯମୁନା ଦେବୀ, ରୋହିଣୀ ଲେଙ୍କା, ଚଞ୍ଚଳା ଜେମା (ପୁରୀଠାରେ) ପ୍ରମୁଖ ସ୍ଥାନ ଅଧିକାର କରିଥିଲେ । ପୁନଶ୍ଚ ୧୯୩୧ ମସିହା ଅଗଷ୍ଟ ଦୁଇ ତାରିଖରେ ବାଲେଶ୍ୱରର ବାଗ୍ ବୃନ୍ଦାବନ ପଡ଼ିଆଠାରେ ହୋଇଥିବା ବିରାଟ ମହିଳା ସମ୍ମିଳନୀରେ ଡାକ୍ତର କୁନ୍ତଳା କୁମାରୀ ସାବତ ଅଧ୍ୟକ୍ଷତା କରିଥିଲେ ଏବଂ ତାଙ୍କ ରଚିତ 'ଆହ୍ୱାନ' ପୁସ୍ତକଟି ଇଂରେଜମାନଙ୍କ ଦ୍ୱାରା ବ୍ୟାଜ୍ୟାପ୍ତ ହୋଇଥିଲେ ମଧ୍ୟ ଲୋକମାନେ ମୁହଁରେ କେତୋଟି ଧାଡ଼ି ଆବୃତ୍ତି କରୁଥିଲେ ଯଦ୍ୱାରା ସେଇ ଗୀତରେ ଉଦ୍‌ବୁଦ୍ଧ ହୋଇ ଆହୁରି ଅନେକ ଲୋକ ଏଇ ସଂଗ୍ରାମରେ ସାମିଲ ହୋଇଥିଲେ ଦେଶପ୍ରେମରେ ମଜ୍ଜିଯାଇ । ଏହି ମହିଳା ସମାବେଶରେ ସଂଖ୍ୟା ଏତେ ଅଧିକ ହୋଇଥିଲା ଯେ ଇଂରେଜ ସରକାରକୁ ଚକିତ କରିଦେଇଥିଲା । ଏହି ସମ୍ମିଳନୀରେ ଯୋଗ ଦେବା ପାଇଁ କୋକିଳ ଦେବୀ ବାଲେଶ୍ୱରରେ ଘରେ ଘରେ ବୁଲି ଏହାର ପ୍ରଚାର କରିଥିଲେ ଏବଂ ଏହି ଅଭ୍ୟର୍ଥନା କମିଟିର ଅଧ୍ୟକ୍ଷା ଥିଲେ ଜାହ୍ନବୀ ଦେବୀ । ତତ୍କାଳୀନ ସମାଜରେ ନାରୀ ଶିକ୍ଷାର ପ୍ରସାର ନାରୀମାନଙ୍କ ଭିତରେ ଏତେ ହୋଇ ନଥିଲେ ମଧ୍ୟ, ମାନସିକ କ୍ଷେତ୍ରରେ ନାରୀମାନେ ନିଜ ଦେଶର ସ୍ୱାଧୀନତା ପାଇଁ ବହୁତ ଦୂର ଆଗେଇ ଯାଇଥିଲେ । ଏହାର ଅନ୍ୟତମ ଉଦାହରଣ ଥିଲା ଓଡ଼ିଶାରେ ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନ ଏବଂ ଏହାର ଆୟୋଜକ ଏବଂ ଅଭ୍ୟର୍ଥନା କମିଟି ଗଠନରେ ନାରୀ ନେତ୍ରୀମାନଙ୍କର ସକ୍ରିୟ ଅଂଶ ଗ୍ରହଣ ତଥା ଅଣ-ଓଡ଼ିଆ ପ୍ରତିନିଧିମାନଙ୍କର ଦାୟିତ୍ୱ ନେବା ପାଇଁ ସ୍ୱେଚ୍ଛାସେବୀ ଭାବେ ଅଂଶ ଗ୍ରହଣ ଏବଂ ସମ୍ମିଳନୀର ସଫଳତା ପାଇଁ ବୁଲିବୁଲି ଗୀତ ଗାଇ ମାଗଣ କରିବା ।

୧୯୩୧ ମସିହାରେ ବିଲାତରେ ହୋଇଥିବା ଗୋଲ୍‌ଟେବୁଲ ବୈଠକର ବିଫଳତା ପାଇଁ ପୁନଶ୍ଚ ଆମ ଦେଶରେ ଆନ୍ଦୋଳନ ଚାଲିବା ଏବଂ ଗାନ୍ଧୀଙ୍କ ସହ ଅନ୍ୟ ନେତାମାନଙ୍କୁ ବନ୍ଦୀ କରିବା ଦ୍ୱାରା ୧୯୩୨ ଜାନୁଆରୀ ୨୬ ତାରିଖରେ ଏହାର ପ୍ରତିବାଦ ସଭା କରି ସଂକଳ୍ପ ପାଠ କରିବା ପାଇଁ କଟକଠାରେ ତିନୋଟି ସଭା କରାଯାଇଥିଲା – ଅଦାଲତ ଆଗରେ, ବାଲୁବଜାରରେ ଏବଂ ଚୌଧୁରୀ ବଜାରରେ । ଏହି ତିନୋଟି ସ୍ଥାନରେ ଯଥାକ୍ରମେ କିରଣ ବାଳା ସେନ୍, ଜାହ୍ନବୀ ଦେବୀ ଏବଂ ରମା ଦେବୀ ସଂକଳ୍ପ ପାଠ କରିଥିଲେ । ଏଥିପାଇଁ ସେମାନେ ଇଂରେଜମାନଙ୍କ ଦ୍ୱାରା ବନ୍ଦୀ ହୋଇଥିଲେ । ଏହି ବୀରା ସଂଗ୍ରାମୀମାନଙ୍କର ବୀରପୁତ୍ରମାନେ ସେମାନଙ୍କ ହାତରୁ ସଂକଳ୍ପପତ୍ର ଛଡ଼ାଇ ଆଣି ପାଠ କରିବା ମାତ୍ରେ ଇଂରେଜମାନଙ୍କ ଦ୍ୱାରା ମଧ୍ୟ ବନ୍ଦୀ ହୋଇଥିଲେ ଏବଂ ଏହି ବନ୍ଦୀମାନଙ୍କ ସଂଖ୍ୟା ଷାଠିଏ ହଜାରରୁ ଅଧିକ ଥିଲା । ସେମାନଙ୍କ ଭିତରେ ପ୍ରମୁଖ ଥିଲେ ମନମୋହନ ଚୌଧୁରୀ, ଗୌରଗୋପାଳ ଦାସ ଏବଂ ନିପେନ୍ଦ୍ର ନାରାୟଣ ସେନ୍ । ମହିଳା ଏବଂ ପୁରୁଷ ବନ୍ଦୀମାନଙ୍କ ସଂଖ୍ୟା ଏତେ ହେଲା ଯେ କଟକ, ପୁରୀ ଓ ବାଲେଶ୍ୱର ଜେଲ୍‌ର ଜନାନା ୱାର୍ଡ ଭର୍ତ୍ତି ହୋଇ ଯାଇଥିଲା ।

ଫଳରେ ଭାଗଲ୍‌ପୁର ସେଣ୍ଟ୍ରାଲ ଜେଲ, ହଜାରିବାଗ୍ ସେଣ୍ଟ୍ରାଲ ଜେଲକୁ ମହିଳା ବନ୍ଦୀମାନେ ସ୍ଥାନାନ୍ତରିତ ହେଲେ । ଏହି ମହିଳା ବନ୍ଦୀମାନେ ସେମାନଙ୍କ ବାପା, ମାଆ,ସ୍ୱାମୀଙ୍କ ପ୍ରେରଣାରେ ବା ଇଚ୍ଛା ବିରୁଦ୍ଧରେ ଲଢ଼େଇ କରି ସତ୍ୟାଗ୍ରହୀ ପାଲଟିଥିଲେ ।

ଏଇଥିରୁ ଜଣାଯାଏ ସ୍ୱାଧୀନତା ସଂଗ୍ରାମରେ ତତ୍କାଳୀନ ନାରୀମାନଙ୍କର କି ବ୍ୟାକୁଳତା ! ଅନେକ ଅପବାଦ, ନିନ୍ଦା, ଅପମାନ, ଆଉ ଦୁଃଖକୁ ସେମାନେ ଆଦରି ନେଇଥିଲେ ମଧ୍ୟ ଭାରତମାତା ତଥା ଉତ୍କଳ ଜନନୀର ମୁକ୍ତି ପାଇଁ ଏହି ମହିୟସୀ, ଚିର ନମସ୍ୟା ନାରୀ ନେତ୍ରୀମାନେ ହସିହସି ଏସବୁ କଷ୍ଟକୁ ସହିଯିବା ସହ ଅନେକ ଗଠନମୂଳକ କାର୍ଯ୍ୟକ୍ରମରେ

ଯୋଗଦେଇ ସେମାନଙ୍କର ମହନୀୟତା ପ୍ରତିପାଦନ କରି ଯାଇଛନ୍ତି । ୧୯୩୪ ମସିହାରେ ଗାନ୍ଧିଜୀଙ୍କର ଓଡ଼ିଶା ଆଗମନ ସମୟରେ ହୋଇଥିବା ପଦଯାତ୍ରାରେ ବିପ୍ଳବିନୀ ଗୋଦାବରୀ ଦେବୀ ଗାନ୍ଧିଜୀଙ୍କୁ 'ଓଡ଼ିଆ ବର୍ଣ୍ଣବୋଧ' ପଢ଼ାଇଥିଲେ । ସ୍ୱାମୀଙ୍କ ଦେହାନ୍ତ ପରେ ସୁଶିଳା ଦେବୀ ଶାଶୁ ନଣନ୍ଦଙ୍କ ଆକଟ, ଅତ୍ୟାଚାର ସହି ନପାରିବାରୁ ଘରୁ ଲୁଚି ପଳାଇଆସି ଆନନ୍ଦପୁରର ଭାଗିରଥି ଦାସଙ୍କୁ ସାକ୍ଷାତ କରିବା ପରେ ରମା ଦେବୀଙ୍କ ପ୍ରେରଣାରେ କଟକରେ ପ୍ରାଚୀରପତ୍ର ବାଣ୍ଟି ଜେଲ୍ ଯାଇଥିଲେ । ଏହି ସ୍ୱାଧୀନତା ସଂଗ୍ରାମୀ ବହୁବାର ଜେଲଦଣ୍ଡ, ଶାଶୁ ଘର ଏବଂ ବାପ ଘରର ଅକଥନୀୟ ଅତ୍ୟାଚାର ସହିବା ପରେ ନିଜକୁ ସମାଜ ସେବାରେ ନିଯୋଗ ପୂର୍ବକ, ହରିଜନ ପିଲାଙ୍କର ଯତ୍ନ ନେବା, ପାଠ ପଢ଼ାଇବା, ସ୍ୱାସ୍ଥ୍ୟ ସେବା କରିବା ସହ ସୂତା କାଟି ଖଦୀ ପ୍ରସ୍ତୁତ କରିବା କାମରେ ଅନେକ ଲୋକଙ୍କୁ ରୋଜଗାରକ୍ଷମ କରାଇବାରେ ସାହାଯ୍ୟ କରିଥିଲେ । ଭାରତଛାଡ଼ ଆନ୍ଦୋଳନରେ ଯୋଗ ଦେଇ କାରାବରଣ କରିଥିଲେ ମଧ୍ୟ ଭାଙ୍ଗିପଡ଼ି ନ ଥିଲେ ନିଜର ଭଗବତ୍ ବିଶ୍ୱାସ ଯୋଗୁଁ । ଦେଶର ସ୍ୱାଧୀନତା ଦେଖିବା ପରେ ସେ ଇହଲୀଳା ସମ୍ବରଣ କରିଥିଲେ । ତାଙ୍କର ଅନୁଗାମିନୀ ଥିଲେ କୃଷ୍ଣକାମିନୀ ଦେବୀ ଯେ କି 'କଲିକତା ଆକାଶବାଣୀ'ର ପ୍ରଥମ ଓଡ଼ିଆ କର୍ମକର୍ତ୍ତା ଥିଲେ ଏବଂ ସ୍ୱାଧୀନତା ସଂଗ୍ରାମରେ ସ୍ୱାମୀଙ୍କ ସହ ଝାସ ଦେଇ କାରାବରଣ କରିଥିଲେ । ଜେଲ୍‌ରୁ ମୁକୁଳିବା ପରେ ସେ ହରିଜନ ସେବା କାମରେ ନିଜକୁ ଉତ୍ସର୍ଗ କରିଥିଲେ ।

ଅହିୟାସର ଅନ୍ୟତମ ନାରୀନେତ୍ରୀ ଥିଲେ ମୋହିନୀ ଦେବୀ । ରମା ଦେବୀ ଏବଂ ସରୋଜିନୀ ଚୌଧୁରୀଙ୍କ ପ୍ରେରଣାରେ ସେ ବିବାହ ପରେ ଶାଶୁଘର ଛାଡ଼ିଦେଇ ଆସି ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ ଏବଂ ଅନେକ ଥର କାରାଦଣ୍ଡ ଭୋଗ କରିଥିଲେ ।

ଅଧରମଣି ଦେବୀ ଏବଂ ହାରାମଣି ଦେବୀ ଥିଲେ ଦୁଇ ଜଣ ମହିଳା ସତ୍ୟାଗ୍ରହୀ, ଯେଉଁମାନେ 'ଦେଶ କାମ' କରିବା ପାଇଁ ଘରେ ନ ଜଣାଇ ଗୃହତ୍ୟାଗ କରି ଚାଲି ଆସିଥିଲେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେବା ପାଇଁ ମାଳତୀ ଦେବୀଙ୍କ ନିକଟକୁ । ପରବର୍ତ୍ତୀ ପର୍ଯ୍ୟାୟରେ ଇଂରେଜମାନଙ୍କ ଦ୍ୱାରା ଅନେକ ସ୍ଥାନରେ ନିର୍ଯ୍ୟାତିତା ହୋଇଥିଲେ, ଜେଲ ଯାଇଥିଲେ, ହରିଜନ ସେବା କରିଥିଲେ ଜେଲରୁ ମୁକୁଳିବା ପରେ ।

ଗାନ୍ଧିଜୀଙ୍କ ନେତୃତ୍ୱରେ ଅସ୍ପୃଶ୍ୟତା ବିରୋଧରେ ସଂଗ୍ରାମ ଚାଲିଥିଲା ବେଳେ ଓଡ଼ିଶାରେ ମଧ୍ୟ ଏଇ ନାରୀ ନେତ୍ରୀମାନେ ଅସ୍ପୃଶ୍ୟତା ନିବାରଣ ସମିତି ଗଢ଼ି, ହରିଜନମାନଙ୍କ ପାଇଁ କୂଅ ପୋଖରୀ ବ୍ୟବହାର କରିବା ସୁବିଧା କରାଇବା, ଛାତ୍ରାବାସ କରାଇବା, ହରିଜନ ପିଲାଙ୍କୁ ପଢ଼ାଇବା, ହରିଜନ ବସ୍ତି ସଫା କରିବା, ସେମାନଙ୍କୁ ମଦପିଆ ଛଡ଼ାଇବା ଆଦି କାମ କରିଥିଲେ ।

ଓଡ଼ିଶାରେ ଅନେକ ପୁରୁଷ ସତ୍ୟାଗ୍ରହୀଙ୍କ ସହ ମିଶି ନାରୀ ସଂଗ୍ରାମୀମାନେ ଗାଁମାନଙ୍କରେ 'ସେବା କୁଟୀର' ସ୍ଥାପନ କରି ଗାଁର ଝିଅ ବୋହୂଙ୍କୁ ସେବା କରିବା କ୍ଷେତ୍ରରେ ନିଜକୁ ନିୟୋଜିତ କରି ରଖିବାକୁ ପ୍ରବର୍ତ୍ତାଉ ଥିଲେ । ଏହି ନାରୀ ନେତ୍ରୀମାନଙ୍କ ମଧ୍ୟରେ ସର୍ବାଗ୍ରେ ଥିଲେ ମାଳତୀ ଦେବୀ, ରମା ଦେବୀ, ଅନ୍ନପୂର୍ଣ୍ଣା ମହାରଣା । ସେମାନଙ୍କ ତ୍ୟାଗ, ନିଷ୍ଠା, ସଂଗ୍ରାମୀ ଚେତନା ଆଜି ବି ଇତିହାସ ପୃଷ୍ଠାରେ ସଜୀବ । ସେମାନଙ୍କର ନିଃସ୍ୱାର୍ଥପର ସେବା ନିଜର ଜନ୍ମଭୂମି ପାଇଁ, ପ୍ରତି ଓଡ଼ିଆଙ୍କ କାନରେ ଏବେ ବି ଅନୁରଣିତ ହୁଏ । ପ୍ରାତଃ ସ୍ମରଣୀୟା ଏହି ମହିୟସୀ ମହିଳାମାନେ ଆମର ଚିର ନମସ୍ୟ । ସେମାନଙ୍କର ଆଦର୍ଶରୁ କାଣିଚାଏ ବି ଆମ ହୃଦୟରେ ଆମେ ବହନ କରି ପାରିଲେ ଏକ ନିଷ୍କଳଙ୍କ ପଥରେ ଆଗେଇ ଯାଇ ଦେଶ ମାତୃକାର ସେବାରେ ନିଜକୁ ସାମିଲ କରି ପାରିବାରେ ସହାୟକ ହୋଇପାରିବା ।

---

ପ୍ଲଟ ନଂ– ୧୮୬୮, ଭକ୍ତମଧୁ ନଗର, ଗଣ୍ଡମୁଣ୍ଡା
ପୋ– ଖଣ୍ଡଗିରି, ଭୁବନେଶ୍ୱର–୩୦

# ସଂଗ୍ରାମୀ–ସାହିତ୍ୟ ସଂରଚକ ଚାଖି ଖୁଣ୍ଟିଆ

ନିର୍ମଳା କୁମାରୀ ମହାପାତ୍ର

ବିପଦରେ ପଡି ଚିଟାଉ ଲେଖିଚି
ଝାନ୍‌ସିର ରାଣୀ ଲକ୍ଷ୍ମୀବାଇ
କେତେ ଉପହାର କେତେ ସଂପଦ
ପଠାଇ ଦେଇଚି ଆମରି ପାଇଁ....।

x x x

ଘୋଟକ ବାହନେ ପୁରୁଷର ବେଶେ
ଆସି ଚଳାଇଲେ ଲକ୍ଷ୍ମୀବାଇ
ଚାଖି ଖୁଣ୍ଟିଆ ବଇରୀ ହାଣିଲେ
ଝାନ୍‌ସି ରାଣୀର ପାଶରେ ଥାଇ ।

– ଚାଖି ଖୁଣ୍ଟିଆ/ ପଦ୍ମଶ୍ରୀ ରାଧାମୋହନ ଗଡନାୟକ/ ଗଡନାୟକ ଗ୍ରନ୍ଥାବଳୀ–ପୃ. ୩୨୪–୩୩୧ ।




ସିପାହୀ ବିଦ୍ରୋହରେ ଯୋଗ ଦେଇଥିଲେ ଓଡିଶାର ପ୍ରଖ୍ୟାତ ସଂଗ୍ରାମୀ ତଥା ବୀର ଚନ୍ଦନ ହଜୁରୀ (୧୮୨୭–୧୮୭୦ ଖ୍ରୀ.ଅ.) । ସେ ଝାନ୍‌ସିର ରାଣୀ ଲକ୍ଷ୍ମୀବାଇଙ୍କ ସପକ୍ଷରେ ଲଢ଼ିଥିଲେ । ପୁରୀର ଏଇ ସ୍ୱାଧୀନଚେତା ବ୍ରାହ୍ମଣ ପିଲାଦିନେ ବିବିଧ ଖାଦ୍ୟ ଚାଖିବାକୁ ଭଲ ପାଉଥିବାରୁ ପିତାମାତା ଶ୍ରଦ୍ଧାରେ ଡାକୁଥିଲେ 'ଚାଖିଆ' ବୋଲି । ଏଣୁ ଲୋକମୁଖରେ ସେ ଥିଲେ ଚାଖି ଖୁଣ୍ଟିଆ ନାମରେ ପରିଚିତ ଯଦିଓ ତାଙ୍କର ପୂର୍ଣ୍ଣ ପରିଚୟ ହେଲା କବି ଚନ୍ଦନ ହଜୁରୀ । ପୁରୀର ଶ୍ରୀଜଗନ୍ନାଥଙ୍କ ସେବକ ଭାବେ ସେ ରାଣୀ ଲକ୍ଷ୍ମୀବାଇଙ୍କ ପିତୃଉଆସରେ ବେଶ୍ ପରିଚିତ ଥିଲେ । ଜଗନ୍ନାଥ ଦର୍ଶନ ଉପଲକ୍ଷେ ଆସୁଥିବା ବାଳିକା ଲକ୍ଷ୍ମୀ, ଖୁଣ୍ଟିଆ ପରିବାରର ଆତିଥ୍ୟ ଗ୍ରହଣ କରୁଥିଲେ । ଲକ୍ଷ୍ମୀଙ୍କର ପିଲାଦିନର ନାମ ଥିଲା 'ମନୁ' । ସେ ଚନ୍ଦନ ହଜୁରୀଙ୍କ ପରିବାରରେ ଯେପରି ପରିଚିତ ଥିଲେ, ଅନ୍ୟ ପକ୍ଷରେ ଚନ୍ଦନ ହଜୁରି ମଧ୍ୟ 'ମନୁ'ଙ୍କ ପିତା ଉଆସରେ ସେହିପରି ଅବକାଶ କଟାଉଥିଲେ । ଉଭୟ ପରିବାର ମଧ୍ୟରେ ଥିଲା ବନ୍ଧୁତ୍ୱ । ବାଳିକା ମନୁ ପରବର୍ତ୍ତୀ କାଳରେ ହେଲେ ଦେଶୀୟ ରାଜ୍ୟ ଝାନ୍‌ସିର ରାଣୀ । ପ୍ରଥମେ ବାଳୁତ ପୁତ୍ର ଓ ପରେ ସ୍ୱାମୀଙ୍କୁ ହରାଇ ସେ ଦୁଃଖରେ ପଡ଼ିଲେ । ତତ୍କାଳୀନ ଇଂରେଜ ସରକାର ଲକ୍ଷ୍ମୀବାଇଙ୍କୁ ଝାନ୍‌ସିର ପ୍ରଶାସିକା ନ ମାନି, ସେ ରାଜ୍ୟକୁ ବ୍ରିଟିଶ୍ ଆୟତ୍ତକୁ ନେଇଥିଲେ । ଏହା ଥିଲା ଲର୍ଡ଼ ଡେଲହାଉସୀଙ୍କ କାର୍ଯ୍ୟକାଳର କଥା । ରାଜ୍ୟସ୍ୱତ୍ୱ ଲୋପନୀତି ପ୍ରବର୍ତ୍ତନ କରି ସେ ଇଂରେଜ ସାମ୍ରାଜ୍ୟ ବଢ଼ାଇ ଥିଲେ । ଏଇ ନୀତି ବଳରେ ସେ ସାତରା, ଝାନ୍‌ସି, ନାଗପୁର, ଜୈତପୁର, ସଂବଲପୁର ପ୍ରଭୃତି ରାଜ୍ୟକୁ ଇଂରେଜ ରାଜ୍ୟଭୁକ୍ତ କରିଥିଲେ । ଇଂଲଣ୍ଡର ଶାସନମୁଖ୍ୟା ହେଲେ ରାଣୀ । ତେଣୁ ସେମାନେ ଗାଆନ୍ତି– " Long Live the Queen". କାର୍ଯ୍ୟତଃ ଥିଲା ଓଲଟା । ରାଜ୍ୟସ୍ୱତ୍ୱଲୋପ ନୀତିରେ ଝାନ୍‌ସିର ରାଣୀ ଲକ୍ଷ୍ମୀବାଇଙ୍କୁ ରାଜ୍ୟ ଅଧିକାରରୁ

ବଂଚିତ କରାଯାଇଥିଲା । ଫଳତଃ ସଂଗ୍ରାମର ସୂତ୍ରପାତ ହୋଇଥିଲା । ତେଣୁ ରାଣୀ ଲକ୍ଷ୍ମୀବାଈ ଚନ୍ଦନ ହଜୁରୀଙ୍କୁ ଚିଠି ଲେଖିଥିଲେ । ଲକ୍ଷ୍ମୀବାଈଙ୍କ ସପକ୍ଷରେ ପ୍ରଧାନ ଯୋଦ୍ଧା ଥିଲେ ଅସାଧାରଣ ବଳର ଅଧିକାରୀ ଚନ୍ଦନ ହଜୁରୀ ଓରଫ୍ ଚାଖି ଖୁଣ୍ଟିଆ । ତାଙ୍କର ସମଯୋଦ୍ଧା ଥିଲେ ତାନ୍ତିଆ ଟୋପେ, କୁଆଁର ସିଂହ, ନାନା ସାହେବ ଆଦି ।

ସନ ୧୮୫୭ର ସିପାହି ବିଦ୍ରୋହରେ ସାରା ଦେଶ ତାତି ଉଠିଥିଲା । ସିପାହିମାନେ ବେରେଲି, ମିରଟ, ଝାନ୍ସି, ବାରାକ୍‌ପୁର, କାଶୀ, ଲକ୍ଷ୍ନୌ, କାନପୁର, ଗୋଆଲିଅର, ବିଠୁର ଆଦି ସ୍ଥାନରେ ବିଦ୍ରୋହ କରିଥିଲେ । ଇଂରେଜ ପକ୍ଷରେ ଆମର ପ୍ରଧାନ ଶତ୍ରୁଥିଲେ କ୍ୟାପ୍‌ଟେନ୍ ରୋଜ୍, ବର୍ଣ୍ଣାଡ଼ ରିଡ୍ ଆଦି । ସେମାନେ ପଛପଟୁ ଗୁଳି କଲେ । ତଦ୍ୱାରା ଝାନ୍‌ସୀ ରାଣୀ ଘୋଡ଼ା ପିଠିରୁ ଟଳି ପଡ଼ିଲେ । ଲକ୍ଷ୍ମୀବାଈଙ୍କ ମୃତ୍ୟୁପରେ ଚାଖି ଖୁଣ୍ଟିଆ ନେପାଳ ଚାଲିଗଲେ । ସେ ଗୋଟିଏ ପୋଲ ତଳେ ୧୭ ଦିନ (ସତର ଦିନ) ଆତ୍ମଗୋପନ କରି ନେପାଳରେ ପ୍ରାୟ ବାରବର୍ଷ ରହି ପୁରୀକୁ ଫେରି ଦେଖିଲେ ଯେ ତାଙ୍କର ସ୍ତ୍ରୀ ବିଧବା ବେଶରେ ଅଛନ୍ତି । ସମସ୍ତେ ଧରି ନେଇଛନ୍ତି ଯେ ସିପାହୀ ବିଦ୍ରୋହରେ ଚାଖି ଖୁଣ୍ଟିଆ ଆଉ ନାହାଁନ୍ତି । ଚାଖି ଖୁଣ୍ଟିଆ ଲେଉଟି ଥିବାରୁ ପରିସ୍ଥିତି ପୂରା ବଦଳି ଯାଇଥିଲା । ତାଙ୍କ ପରିବାରରେ ଆନନ୍ଦର ଲହରି ଖେଳି ଯାଇଥିଲା । ଲୋକେ ଗାଇଲେ ଗୀତ ଯାହା ଏବେ ପ୍ରବାଦ ହୋଇ ରହିଛି । ତାହା ହେଲା–

‘ନଈରେ ବାଳିଆ ଚହଟିଲା,
କଜଳ, ସିଂଦୂର ନାଆ ଲୋ ରାଣ୍ଡ
ପୁଣି ଚାଖିଆ ନେଉଟିଲା’ ।

ଇଂରେଜ ସରକାରଙ୍କ ହାକିମ ଚାଖିଆଙ୍କୁ ତଲବ କଲେ । ପଚାରିଲେ– ‘ତୁମେ ସିପାହି ଦଳରେ ଥିଲ କି ନେତା ?’ ନିର୍ଭୟରେ ଚାଖିଆ କହିଲେ– ‘ହଁ ମୁଁ ଥିଲି ।’ ତା’ ପରଠୁଁ ସେ ଇଂରେଜ ସରକାରଠୁଁ ବୃତ୍ତିପାଇ ଜୀବନର ଶେଷ ସମୟ ଯାଏଁ ପୁରୀରେ ନିଜ ପରିବାର ସହ ରହିଥିଲେ ।

ଚାଖିଆ ଥିଲେ ଜଣେ କବି । ତାଙ୍କର ରଚନାରୁ ଶବ୍ଦ ସଂଯୋଜନାର ଉନ୍ନତ କୌଶଳ ଜଣାଯାଏ । ନିମ୍ନରେ କିଂଚିତ୍ ପ୍ରଦତ୍ତ ହୋଇଅଛି । ଯଥା–

‘ଚକା ନୟନକୁ ପତିତ କେହି,
ଡକାଇ ଖର ନିଃଶ୍ୱାସ ପକାଇ
ଡକା ପକାଇ ଗରୁଡ଼ ପଛରେ,
ବକାରି ! ମୋ ଆର୍ତ୍ତ ଶୁଣ ସତ୍ୱରେ ହେ
ଢକ୍‌କା ବାଜୁଛି ମହିମା ହେ,
ଠକାରି କରି କର୍ଣ୍ଣେ ଗିର ନ ଶୁଣ,
କାହିଁକି ବିଚିତ୍ରକର୍ମା ହେ । ।୧।
କରୀ–ହରିଣୀ ଦ୍ରୌପଦୀ ବିପତ୍ତି,
ହରି ! ହରିଛ ପରା ଡେରି ଶ୍ରୁତି ।
ଦରିଦ୍ର ସୁଦାମାକୁ କୋଟିନିଧି,
ପରିପୂର୍ଣ୍ଣେ ଦେଲେ କୃପାବାରିଧି ହେ
ଧରି ଯା ମହିମା ଚିତ୍ତେ ହେ,
ସରିତ ଯାଉଛି ହରି ! ଆଉଥରେ,
ନ ଚାହିଁଲେ କୃପା ନେତ୍ରେ ହୋ ।୨।
ଅଜାନବାହୁ ମୁଁ ପତିତ ଜଣେ,
ଅଜାମିଳୁଁ ବଳି ସହସ୍ର ଗୁଣେ ।
ଲଜ୍ଜା ହରି ନ ତାରିଲେ ନିକର,
ଧ୍ୱଜା ଚକ୍ରରୁ ବହନ ଉତ୍ତାର ହେ
ମଜ୍ଜାରେ ମୁଁ ଏହା ଭାବେ ହେ,
ବଜାଇ ଜୟ ଆର୍ତ୍ତତ୍ରାଣ ଡିଣ୍ଡିମ
ହଜାଇ ଦେଉଛି ଏବେ ହେ । ।୩।
ଧଣ୍ଡାମାଳ ବୁହା ! ଦୁର୍ଦ୍ଦଶା ରାହୁ,
ଚଣ୍ଡାଳ ଗ୍ରାସୁଅଛି ଚାହୁଁ ଚାହୁଁ ,
ଭଣ୍ଡାରେ ଖଣ୍ଡା ନାହିଁକି ମଣିମା,
ଗଣ୍ଡାକର ଦିଶୁନାହିଁ ମହିମା,
ହଣ୍ଡା ମୋ ଯାଉଛି ଫାଟି ହେ,
ଦୟାକରି କୃପାଜଳ ବୃଷ୍ଟିକର,
ମୋ’ ଚିତ୍ତ–ଚାତକ ପାଟି ହେ । ।୪।
ମନ୍ଦରଧର ନୀଳଗିରିବାସୀ,
କନ୍ଦରବାସୀ ପ୍ରାୟେ ଅଛ ବସି,
ପନ୍ଦର ନେତ୍ର ଧାତା ପୁରନ୍ଦର,
ବନ୍ଦନ କରନ୍ତି ଯେଉଁ ପୟର,
ଛଳଛାଡ଼ ଦେବରାଜ ହେ,

ନନ୍ଦନନ୍ଦନ ଶ୍ରୀଚରଣାବିନ୍ଦେ
ଚନ୍ଦନ ହଜୁରୀ ଭଜେ ହେ । ।୫।
(ଶ୍ରୀଜଗନ୍ନାଥ ଭଜନ ଜଣାଣ ଓ ଚଉତିଶା, ପୃଷ୍ଠା–୭୭)

କବି ଚନ୍ଦନ ହଜୁରୀଙ୍କର ଖଣ୍ଡିଏ ପାଣ୍ଡୁଲିପି ତାଙ୍କ ପରିବାରରୁ ସଂଗ୍ରହ କରାଯାଇଛି ବିଶିଷ୍ଟ ଗବେଷକ ଶ୍ରୀ ସଦାଶିବ ରଥଶର୍ମାଙ୍କ ଦ୍ୱାରା । ପାଣ୍ଡୁଲିପିର ନାମ 'ଲକ୍ଷ୍ମୀବାଈ' । ଏହା ଛାନ୍ଦବନ୍ଧରେ ଲିଖିତ । ଏହା ଚନ୍ଦନ ହଜୁରୀଙ୍କ ଜୀବନ ଚରିତର ଏକ ବଳିଷ୍ଠ ଉପାଦାନ । ଆମ ରାଜଧାନୀ ଭୁବନେଶ୍ୱରର କଳ୍ପନା ଛକରେ ଚନ୍ଦନ ହଜୁରୀଙ୍କର ପ୍ରତିମୂର୍ତ୍ତି ସଗର୍ବେ ଉଭା ହୋଇଅଛି । ସେ ଥିଲେ ବଳଶାଳୀ ସାହସୀ ସଂଗ୍ରାମୀ ଓ ସାହିତ୍ୟ ସଂରଚକ ମଧ୍ୟ । ତାଙ୍କ ସଂପର୍କରେ ସାରସ୍ୱତ ସାଧକ ଡାକ୍ତର ବିକ୍ରମ ଦାସ କହନ୍ତି ତାଙ୍କର ଉପନ୍ୟାସ 'ଭଲେ ବିରାଜୋ ଜୀ' (ପୃଷ୍ଠା–୩)ରେ ନିମ୍ନ ପ୍ରକାରେ । ଯଥା–

'ଆରେ ! ଚନ୍ଦନ ହଜୁରୀର ସାହସ ନ ଥିଲେ ସେ ସିପାହୀ ବିଦ୍ରୋହ ବେଳେ ଦୂର ରାଜ୍ୟମାନଙ୍କରେ ଯାଇ ବିଦ୍ରୋହୀ ରାଜାରାଣୀମାନଙ୍କର ଗୁରୁ ହୋଇପାରି ନଥାନ୍ତା କି ଆଜି ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସରେ ତା'ର ନାମ ସୁନା ଅକ୍ଷରରେ ଲେଖା ଯାଇନଥାନ୍ତା ।'

ଚନ୍ଦନ ହଜୁରୀଙ୍କର ସାହସିକତା, ବୀରତ୍ୱ, ଆତ୍ମବିଶ୍ୱାସ ଓ ତ୍ୟାଗର ମହତ୍ୱ ଇତିହାସ ପୃଷ୍ଠାରେ ବର୍ଣ୍ଣିତ ।

ସେକ୍ଟର–୨/୪୨୬–୪୨୭
ନୀଳାଦ୍ରି ବିହାର, ଭୁବନେଶ୍ୱର–୨୧

# ଶରଧା ବାଲିରେ ବସିଥିବା ଲୋକ

**ଦିଲୀପ କୁମାର ସ୍ୱାଇଁ**

ଶରଧା ବାଲିରେ ବସିଥିବା ଲୋକ ଜାଣେ
ତମେ ଫିସନ ଆସିବ ତା'ର ପିଠି ଆଉଁସିବାକୁ ।
ବୁଢ଼ାଲୋକଟି ଭୁଲିଯାଏ
ଧାନ କିଆରିର ଅକାଳ ବାର୍ଦ୍ଧକ୍ୟ
ପୁଅ ସୁରଟରୁ ନ ଫେରିବାର କଷ୍ଟ
ବିଛଣାରେ ଘୁସୁରୁଥିବା ପତ୍ନୀ ପାଇଁ
ନେବାକୁ ଆସିଛି ସେ ଦୟଣା ପତ୍ର ।
ତମକୁ ରଥରେ ଦେଖିନେବା ମାତ୍ରେ
ଶୁଖିଲା କ୍ଷେତରେ ପୁଣି ନାଚି ଉଠିବେ ଧାନଗଛ
ହଳଦୀ ବସନ୍ତ ଉଡି ବସିବ ଚାଳରେ
ପୁଅ ଫେରି ଆସିଛି ବୋଲି
ହୁରି ପଡିବ ଗାଁ ଦାଣ୍ଡରେ ।
କାଳିଆରେ
ଏଇ ଟିକେ ଖୁସି ପାଇଁ ସେ ବସିଛି ଶରଧା ବାଲିରେ
ତୋ ମୟୂର ଚନ୍ଦ୍ରିକାରେ ଲାଗିହେଲେ ନୂଆ ମେଘ
ବୁନ୍ଦାଏ ଆଖିର ଲୁହ ତୋତେ ସମର୍ପିବ
ଅପେକ୍ଷା କରିଛି ବୁଢ଼ାଲୋକଟି
କାହିଁ କେତେ ଯୁଗରୁ ।
ମୁଁ ତ ପ୍ରତିବର୍ଷ ଠିଆହୁଏ ସାଲବେଗ ମନ୍ଦିର କଡରେ
କାଳେ ତୋ ଭକ୍ତକୁ ଖୋଜୁଖୋଜୁ
ମୁଁ ମିଶିଯିବି ତୋ କଳାଡୋଳାରେ
ଲୁହମୟ ହୋଇଯିବ ବଳଗଣ୍ଡି ଛକ ।
ସେ ବୁଢାଲୋକ ଆଉ ମୋ ଭିତରେ
ଦୂରତା କେତେ ?
ବାଇଶି ପାହାଚରେ ତୋ ଟାହିଆ ହଲିଲେ
ଏଠି ମୁହଁ ଦେଖେଇବ ଆଷାଢ଼ର ମେଘ ।

ବିଭାଗୀୟ ମୁଖ୍ୟ, ଓଡ଼ିଆ ବିଭାଗ
ସାମନ୍ତ ଚନ୍ଦ୍ରଶେଖର ସ୍ୱୟଂଶାସିତ ମହାବିଦ୍ୟାଳୟ, ପୁରୀ

# ବାଇଶି ପାହାଚ : ତତ୍ତ୍ୱ ଓ ମହତ୍ତ୍ୱ

ଡକ୍ଟର ଶ୍ରୀହରି ପଣ୍ଡା

ବିଶ୍ୱ ସଂସ୍କୃତିରେ ଶ୍ରୀଜଗନ୍ନାଥ ସଂସ୍କୃତିର ଐତିହ୍ୟ ଓ ପରମ୍ପରା ସ୍ୱତନ୍ତ୍ର ଏବଂ ନିଆରା । ସାରା ବିଶ୍ୱରେ ଥିବା ସମସ୍ତ ମନ୍ଦିର ନୀତି ଅପେକ୍ଷା ଶ୍ରୀମନ୍ଦିରର ନୀତି ସ୍ୱତନ୍ତ୍ର ଓ ତତ୍ତ୍ୱପୂର୍ଣ୍ଣ । ଶ୍ରୀଜଗନ୍ନାଥଙ୍କ ତତ୍ତ୍ୱ ନୀତି, ବିଧିବିଧାନ ସବୁ ଗୁପ୍ତ, ଗମ୍ଭୀର ଓ ବ୍ୟାପକ । ଜଗନ୍ନାଥଙ୍କର ରୂପ ଯେପରି ଅଦ୍ଭୁତ ଓ ରହସ୍ୟମୟ, ସେହିପରି ମନ୍ଦିରର ପ୍ରତି ଶିଳାଖଣ୍ଡ ହେଉଛନ୍ତି ଅଦ୍ଭୁତ, ତତ୍ତ୍ୱମୟ ଏବଂ ରହସ୍ୟପୂର୍ଣ୍ଣ ସତେଯେପରି ଗୁପ୍ତରହସ୍ୟର ମହାସମୁଦ୍ର । ଶ୍ରୀଜଗନ୍ନାଥଙ୍କ ଦର୍ଶନ କରିବାକୁ ହେଲେ ବାଇଶି ପାହାଚ ଅତିକ୍ରମ କରିବାକୁ ପଡିଥାଏ । ଇତିହାସ ପ୍ରସିଦ୍ଧ ଏହି ଶ୍ରୀମନ୍ଦିର ଅତ୍ୟନ୍ତ ପବିତ୍ର ସ୍ଥାନ ହୋଇଥିବା ବେଳେ ତନ୍ମଧ୍ୟସ୍ଥ ରତ୍ନସିଂହାସନ, କଳ୍ପବଟ, ରୋହିଣୀକୁଣ୍ଡ ଭଳି ବାଇଶି ପାହାଚର ମାହାତ୍ମ୍ୟ ଓ ପବିତ୍ରତାକୁ ଅତି ଗୁରୁତ୍ୱପୂର୍ଣ୍ଣ ରୂପେ ବିବେଚନା କରାଯାଏ । ବାଇଶି ପାହାଚ ସାଧାରଣ ଭକ୍ତ ହୃଦୟରେ ଅତ୍ୟନ୍ତ ପବିତ୍ରତମ ସ୍ଥାନର ମର୍ଯ୍ୟାଦା ହାସଲ କରିଥିବା ସମୟରେ ବାଇଶି ପାହାଚ ସ୍ପର୍ଶ କରିବା ପୂର୍ବରୁ ଭକ୍ତଟିଏ ବନ୍ଦନା ଓ ପ୍ରଣାମ କରିବା ସହ ପଡିଥିବା ଭକ୍ତଙ୍କ ପଦରଜ ଟିକିଏ ମୁଣ୍ଡରେ ବୋଳି ଭକ୍ତ ପାଏ ପରମ ତୃପ୍ତି । ଏହି ବାଇଶି ପାହାଚ ଶ୍ରୀମନ୍ଦିର ସିଂହଦ୍ୱାର ବା ମୁଖ୍ୟଦ୍ୱାରର ପ୍ରବେଶମାର୍ଗରୁ ଦୃଶ୍ୟମାନ ହୁଏ । ଶ୍ରୀମନ୍ଦିରର ପ୍ରତ୍ୟେକ ବିଭବ, ବାସ୍ତୁଭାଜନ, ଶୈଳୀ ଆମ ଚଳଣି ଓ ପରମ୍ପରାରେ ତତ୍ତ୍ୱପୂର୍ଣ୍ଣ ପରି ମନେହୁଏ । ମୂର୍ତ୍ତ କଳ୍ପନାଠାରୁ କୈବଲ୍ୟ ପର୍ଯ୍ୟନ୍ତ–ପ୍ରତ୍ୟେକ ବିଷୟ ଅନୁପମ ଓ ତାତ୍ତ୍ୱିକ । ସେହି ଦୃଷ୍ଟିରୁ ମର୍ତ୍ତ୍ୟ ବୈକୁଣ୍ଠ–ଏହି ପୁରୁଷୋତ୍ତମ କ୍ଷେତ୍ରରେ ବାଇଶି ପାହାଚ ସମ୍ପର୍କରେ ଏକ ଶୂନ୍ୟ ସଂଚାରୀ ଦୃଷ୍ଟିର ଆବଶ୍ୟକତା । ସିଂହଦ୍ୱାର ଗୁମୁଟରୁ ମନ୍ଦିର ମଧ୍ୟକୁ ପ୍ରବେଶ କରିବାକୁ ଯେଉଁ ପାହାଚମାନ ଅଛି, ତାହାକୁ ବାଇଶି ପାହାଚ କୁହାଯାଇଥାଏ । ଏହା ଶ୍ରୀମନ୍ଦିରରେ ଅବସ୍ଥିତ ହୋଇଥିବା ବେଳେ ଏହି ପାହାଚର ବାମପାର୍ଶ୍ୱରେ କାଶୀ ବିଶ୍ୱନାଥ ମନ୍ଦିର, ଶ୍ରୀରାମଚନ୍ଦ୍ର ଦେଉଳ, ଶ୍ରୀନରସିଂହ ଓ ଗଣେଶଙ୍କ ଦେଉଳ ତଥା ସରଘର ରହିଅଛି ।

ବାଇଶି ପାହାଚ ସମ୍ପର୍କରେ ବର୍ଣ୍ଣନା ବହୁ ପ୍ରାଚୀନ ଗ୍ରନ୍ଥମାନଙ୍କରେ ଦେଖାଯାଏ । ଏହି ପାହାଚ ମୁଖ୍ୟ ଦ୍ୱାରକୁ ସଂଯୁକ୍ତ ହୋଇଥିବାରୁ ପାହାଚ ଦେଇ ଶ୍ରୀଜୀଉମାନଙ୍କର ବାହାର ବୁଲା କାର୍ଯ୍ୟକ୍ରମ ହେଉଥିବା ସମୟରେ ଶ୍ରୀଜୀଉଙ୍କ ଚଳନ୍ତି ପ୍ରତିମାମାନ ବିଭିନ୍ନ ସମୟରେ ବାହାରକୁ ଯାଇ ନିଜ ନିଜର ଲୀଳା କରିଥାଆନ୍ତି । ଏହି ପାହାଚ ଶ୍ରେଣୀ ଅତ୍ୟନ୍ତ ପବିତ୍ର ହୋଇଥିବାରୁ ଶଙ୍କରାଚାର୍ଯ୍ୟ, ରାମାନୁଜ, ଶ୍ରୀଚୈତନ୍ୟ, ନାନକ ପ୍ରମୁଖ ଧର୍ମଗୁରୁମାନେ ଏହି ମାର୍ଗଦେଇ ଶ୍ରୀବିଗ୍ରହଙ୍କୁ ଦର୍ଶନ ନିମନ୍ତେ ପ୍ରବେଶ କରିଥିବାର ସୂଚନା ମିଳେ । ଏହି ପାହାଚଗୁଡିକର ଓସାର ୬ଫୁଟ, ଲମ୍ବ ୭୦ ଫୁଟ ଓ ଉଚ୍ଚତା ୬ ଇଞ୍ଚରୁ ୭ ଇଞ୍ଚ ମଧ୍ୟରେ ହେବ । ଏହାକୁ ବାଇଶି ପାହାଚ କୁହାଯାଉଥିଲେ ହେଁ ବାସ୍ତବରେ ଏବେ ଏହା ୧୭ଟି ପାହାଚରେ ସୀମିତ । ଡକ୍ଟର ରାଜେନ୍ଦ୍ର ଲାଲ ମିତ୍ର ୧୮୮୦ରେ ଏହି ପାହାଚ ଶ୍ରେଣୀକୁ 'ବାଇଶି ପଇଟ'ସମ୍ବୋଧନ କରିଥିବା ସହ ଏଥିରେ ୧୭ଟି ପାହାଚ ଥିବା ସ୍ୱୀକାର କରିଛନ୍ତି । ସେହିପରି ଐତିହାସିକ ମନମୋହନ ଗାଙ୍ଗୁଲି ୧୫ଟି ପାହାଚ ଥିବାର ଲେଖିଛନ୍ତି । ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାଶ ଏହି ବାଇଶି ପାହାଚକୁ କୂର୍ମବେଢା, ରୋଷଆଡ଼ ଓ ଆନନ୍ଦ ବଜାର ଯିବା ନିମନ୍ତେ ଯାତାୟାତର ମାର୍ଗ ବୋଲି ବର୍ଣ୍ଣନା କରିଛନ୍ତି । ପ୍ରଫେସର

ଗୌରୀକୁମାର ବ୍ରହ୍ମା ଏହି ଦ୍ୱନ୍ଦ୍ୱର ସମାଧାନ କରିବାକୁ ଯାଇ ଲେଖିଛନ୍ତି, 'ପୂର୍ବେ ଏଠାରେ ପ୍ରକୃତରେ ବାଇଶି ପାହାଚ ଥିବା ସମୟରେ ବିଭିନ୍ନ ସମୟରେ ମରାମତି ଓ ଅନ୍ୟାନ୍ୟ କାରଣ ଯୋଗୁଁ ଏହା ଏବେ ଆଉ ଦେଖା ଯାଉନାହିଁ । ବର୍ତ୍ତମାନ ଆନନ୍ଦବଜାରକୁ ଯିବାକୁ ଦୁଇ ପାହାଚ ମିଶାଇ ଏହାର ସଂଖ୍ୟା ୨୦ରେ ସୀମିତ ରହିଛି । 'ଏହି ପାହାଚଟି ଆରମ୍ଭ ହୋଇଛି ଅଷ୍ଟାଦଶତମ ସୋପାନରୁ ଏବଂ ପ୍ରସରିଛି ଆନନ୍ଦ ବଜାର ପ୍ରବେଶ ମାର୍ଗର ଦ୍ୱାର ଯାଏଁ । ଏହି ଦ୍ୱାରଟିର ଦୁଇ ପାର୍ଶ୍ୱରେ ଶୋଭା ପାଉଛନ୍ତି ୭ଫୁଟ ଉଚ୍ଚତା ବିଶିଷ୍ଟ ଦୁଇଟି ପ୍ରକାଣ୍ଡ ସିଂହମୂର୍ତ୍ତି । ବାଇଶି ପାହାଚର ସମସ୍ତ ସୋପାନର ଆୟତନ ସମାନ ନୁହେଁ । ଏହାର ଅଷ୍ଟାଦଶ ପାହାଚଟି ଓସାରିଆ (ପ୍ରସ୍ଥ ପ୍ରାୟ ୧୫ ଫୁଟ) ହୋଇଥିବା ବେଳେ ୧୯ତମ ଏବଂ ବିଂଶତମ ପାବଛ ଦୁଇଟି ଅର୍ଦ୍ଧ ଗୋଲାକୃତିର ଏବଂ ପ୍ରସ୍ଥ ପ୍ରାୟ ଛଅ ଫୁଟ । ପୂବେ ଏହି ବାଇଶି ପାହାଚରେ ମହାପ୍ରସାଦ ବିକ୍ରୟ କରାଯାଉଥିଲା ମାତ୍ର ଏବେ ତାହା ଆନନ୍ଦ ବଜାରରେ ବିକ୍ରୟ କରାଯାଉଛି । ବାଇଶି ପାହାଚ ଅତ୍ୟନ୍ତ ପବିତ୍ରତମ ସ୍ଥାନ ହୋଇଥିବାରୁ ଏଠାରେ ପିତାମାତାମାନେ ନିଜର ସନ୍ତାନକୁ ଗଡାଇଥାନ୍ତି ଭକ୍ତମାନଙ୍କ ପଦରଜ ଟିକିଏ ପାଇବା ନିମନ୍ତେ । ଏହି ପାହାଚ ଉପରେ ମହାଳୟା ଦିନ ବହୁ ସଂଖ୍ୟାରେ ଭକ୍ତମାନେ ନିଜ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଶ୍ରାଦ୍ଧ ଓ ପିଣ୍ଡଦାନ କରିଥାନ୍ତି । ମହାଳୟା ଦିନ ଏଠାରେ ଅସଂଖ୍ୟ ବ୍ୟକ୍ତି ଶ୍ରାଦ୍ଧ ସହ ଦୀପଦାନ କରିଥାନ୍ତି । ଏହି ଦିନ ମନ୍ଦିର ପ୍ରଶାସନ ତରଫରୁ କୌଣସି ଦେୟ ନିଆଯାଏ ନାହିଁ । ଏହି ବାଇଶି ପାହଚର ସମସ୍ତ ପାହାଚ ବଉଳମାଳା ପଥରରେ ନିର୍ମିତ । ଏଥିରେ ଥିବା ପ୍ରାୟ ୧୫ଗୋଟି ପାହାଚର ଲମ୍ବ,ପ୍ରସ୍ଥ ଓ ଉଚ୍ଚତା ସମାନ । ଏହାର ଦୁଇ ପାର୍ଶ୍ୱରେ ଦୁଇଟି ପାଚେରୀ ଥିବାବେଳେ ପାଚେରୀର ଉପର ଅଂଶ ସମତଳ ।

ସଂଖ୍ୟା ଦୃଷ୍ଟିରୁ ବାଇଶି ପାହାଚର ଗୁରୁତ୍ୱ ଯାହା ହେଉନା କାହିଁକି ତତ୍ତ୍ୱ ଦୃଷ୍ଟିରୁ ଏହାର ମହତ୍ତ୍ୱ ଯଥେଷ୍ଟ ଅଧିକ ଓ ସ୍ୱତନ୍ତ୍ର । ଏହାର ପ୍ରଥମ ପାହାଚରୁ ଆରମ୍ଭ କରି ପ୍ରତ୍ୟେକ ପାହାଚର ଇତିହାସ, କିମ୍ବଦନ୍ତୀ ଓ ତତ୍ତ୍ୱ ମହତ୍ତ୍ୱପୂର୍ଣ୍ଣ । ବାଇଶି ପାହାଚର ପ୍ରଥମ ପାହାଚରେ ରହିଛି ରତ୍ନଭଣ୍ଡାର ଏବଂ ଜ୍ୟୋତିଶିଳା । ଯେଉଁଠାରେ ଠିଆ ହୋଇ ଭକ୍ତିର ସହ ମହାପ୍ରଭୁଙ୍କୁ ଧ୍ୟାନକଲେ ଭକ୍ତର ଅଭୀଷ୍ଟ ପୂର୍ଣ୍ଣ ହୁଏ । ଦ୍ୱିତୀୟ ପାହାଚ ହେଉଛି ଜୀବ ପରମ ମୋକ୍ଷ ପ୍ରାପ୍ତିର ପାହାଚ । ତୃତୀୟ ପାହାଚ ସତ୍ତ୍ୱ , ରଜ ଓ ତମର ପାହାଚ । ଏହି ପାହାଚର ଦକ୍ଷିଣ ପାର୍ଶ୍ୱରେ କାଶୀ ବିଶ୍ୱନାଥଙ୍କ ମନ୍ଦିର । ଯେଉଁଠି ଅନ୍ନଗ୍ରହଣ କରି କୁମ୍ଭାରୁଣୀ କାଶୀ ଗମନର ଫଳସ୍ୱରୂପ ମୋକ୍ଷ ପ୍ରାପ୍ତ ହୋଇଥିବାର କଥା ଜନଶ୍ରୁତିରେ ବିଦ୍ୟମାନ । ଏହି ତୃତୀୟ ପାହାଚରେ ଛିଡା ହୋଇ ଭଗବାନଙ୍କୁ ସ୍ମରଣ କଲେ ସମସ୍ତ ଗର୍ବ, ଅହଂକାର ଦୂରୀଭୂତ ହୋଇଥାଏ । ଏହିପରି ପ୍ରତ୍ୟେକ ପାହାଚରେ ଭିନ୍ନଭିନ୍ନ ପ୍ରକାର ଫଳ ମିଳିଥାଏ । ବାଇଶି ପାହାଚର ଶେଷ ପାହାଚ ହେଉଛି ବ୍ରହ୍ମଲୋକ କାରଣ ଏହା ପୂର୍ବରୁ ଭକ୍ତ ପଞ୍ଚ ଜ୍ଞାନେନ୍ଦ୍ରିୟ ସହିତ ପଞ୍ଚ କର୍ମେନ୍ଦ୍ରିୟ, ମନ, ବୁଦ୍ଧି, ଅହଂକାର, କାମ, କ୍ରୋଧ, ଲୋଭ, ମୋହ, ଆସକ୍ତି, କାମନା, ତମ ଓ ରଜଗୁଣ ରୂପକ ୨୧ ସୋପାନ ଅତିକ୍ରମ କରି ବ୍ରହ୍ମ ଜ୍ଞାନକୁ ପ୍ରାପ୍ତ ହୋଇ ସାରିଥାଏ । ଏଣୁ ବାଇଶି ପାହାଚ ପରେ ଭକ୍ତ କୂର୍ମବେଢା ବା ଆତ୍ମସଂଯମର ସ୍ଥାନରେ ପହଞ୍ଚେ । ଏଠାରେ ଆତ୍ମ ସଂଯମୀ ହେଲେ ଯାଇ ଭଗବାନଙ୍କର ଦର୍ଶନ ପାଇବାକୁ ଭକ୍ତ ସମର୍ଥ ହୋଇଥାଏ । ତତ୍ତ୍ୱକାରମାନେ ଏହି ବାଇଶି ପାହାଚ ମନୁଷ୍ୟର ୨୨ଦୋଷର ପ୍ରତୀକ ଭାବରେ ଗ୍ରହଣ କରିଛନ୍ତି । ଯୋଗୀ ୨୨ ପରା ପ୍ରକୃତିକୁ ଅତିକ୍ରମ କଲେ ଭଗବତ୍ ଦର୍ଶନ କରିବ । ୨୨ ପରା ପ୍ରକୃତି ହେଲା– କାମ, କେଳି, ସମ୍ଭୋଗ, ଉତ୍କଣ୍ଠା, ସଞ୍ଚୟ, ଅବମୟ, କିଶୁନତ୍, ଘୃଣା, ଅଜ୍ଞତା, ରାଗ, ଅହଙ୍କାର, ମୈଥୁନ, ଲୋଭ, କୋଷ, ହିଂସା, କପଟତା, ନିନ୍ଦା, କ୍ରୋଧ, ମଦ, ଈର୍ଷା, ମିଥ୍ୟା ଓ ଦ୍ୱେଷ ।ଏହି ବାଇଶି ଦୋଷକୁ ଦୂର କଲେ ଯାଇ ଭଗବତ୍ ଦର୍ଶନ ସମ୍ଭବ କିମ୍ବା ଅନ୍ୟ ଅର୍ଥରେ ଏହି ବାଇଶି ପାହାଚରେ ପହଞ୍ଚିବାମାତ୍ରେ ମନୁଷ୍ୟର ଏହି ବାଇଶି ଦୋଷ ସ୍ୱତଃ ନଷ୍ଟ ହୋଇଥାଏ । ତତ୍ପରେ ମନୁଷ୍ୟ ଭଗବତ ଦର୍ଶନ ପାଏ । ଏହି ପାହାଚ ମନୁଷ୍ୟକୁ ଦୋଷ ଦୁର୍ବଳତାରୁ ମୁକ୍ତି ଦେବା ସହିତ ମୋକ୍ଷ ପ୍ରଦାନ କରିଥାଏ ବୋଲି ବିଶ୍ୱାସ ଅଛି । ସେହିପରି କେହି କେହି ଏହାକୁ ୨୨ ଜୈନ ତୀର୍ଥଙ୍କର ସହିତ ଯୋଡିଥିବା ବେଳେ କେହି ଏହାକୁ ବୈକୁଣ୍ଠ ସହିତ ତୁଳନା କରିଛନ୍ତି । ଜୈନ ମତ ଅନୁସାରେ ଧରାପୃଷ୍ଠରେ ସଂଯମ ଓ ଜ୍ଞାନର ମାର୍ଗ ଦେଖାଇବା ପାଇଁ ବହୁ ସହସ୍ର ବର୍ଷର ବ୍ୟବଧାନରେ ଯେଉଁ ମହାପୁରୁଷ ଆସନ୍ତି ସେମାନଙ୍କୁ ତୀର୍ଥଙ୍କର ଜୀନ କୁହାଯାଏ ।

ଋଷଭନାଥଙ୍କଠାରୁ ମହାବୀର ଜୀନଙ୍କ ପର୍ଯ୍ୟନ୍ତ ସେମାନଙ୍କର ସଂଖ୍ୟା ହେଉଛି ୨୪ । ଋଗ୍ ବେଦରେ ଋଷଭନାଥଙ୍କୁ ଜୀନ ତୀର୍ଥଙ୍କର ନାମ ରହିଥିବା ସହିତ ବିଷ୍ଣୁପୁରାଣ ଓ ଭାଗବତରେ ନାରାୟଣଙ୍କ ଅବତାର ରୂପେ କୀର୍ତ୍ତିତ । ଏହି ୨୪ ତୀର୍ଥଙ୍କରଙ୍କୁ ବାଇଶି ପାହାଚ ସହିତ ବଡଦାଣ୍ଡ ଏବଂ ରତ୍ନସିଂହାସନକୁ ମିଶାଇ ୨୪ଗୋଟି ତାତ୍ତ୍ୱିକ ଅବସ୍ଥାର ଅନୁମାନ କରାଯାଇପାରେ । ଜୀବସ୍ୱଭାବ ଜୀବାତ୍ମା ବଡଦାଣ୍ଡରେ ଅବସ୍ଥିତ ଉତ୍ତାନପାଦ ଯାତ୍ରୀ । ସେଠାରୁ ସେ ବାଇଶି ପାହାଚ ଅତିକ୍ରମ କଲେ ମୂଳ ତୀର୍ଥଙ୍କର ସତ୍ୟ–ସ୍ୱରୂପ ଋଷଭନାଥଙ୍କ ଦର୍ଶନ ପାଇବ । ଜୀନଧାରାରେ ଏହା କ୍ରମୋନ୍ନତିର ସଙ୍କେତ ଚିହ୍ନ । ଋଷଭନାଥଙ୍କ ସ୍ଥିତିରେ ସେ କେବଳ(କୈବଲ୍ୟ)ମାତ୍ର । ପରମ ଶାନ୍ତି ଓ ମୁକ୍ତିର କ୍ରମ ପର୍ଯ୍ୟାୟରେ ଆମେ ଏହି ଅବ୍ୟବହିତ ଦ୍ୱାବିଂଶତି ସ୍ତର ବାଇଶି ପାହାଚକୁ ଜ୍ଞାନଦୃଷ୍ଟିରେ ଚିନ୍ତା କରିପାରିବା । ସଂଯମ ଓ ତପସ୍ୟାର ଆଧାର ଉପରେ ଉତ୍ତରଣର ଦେବଦୁର୍ଲ୍ଲଭ ସନ୍ତର୍ପଣ ଓ କୈବଲ୍ୟ ମୁକ୍ତିର ସନ୍ମାର୍ଗ ସ୍ୱରୂପ ଏହି 'ବାଇଶି ପାହାଚ' ସାଙ୍କେତିକ ଶଙ୍କୁ । ସେହିପରି କ୍ଷେତ୍ର ଓ କ୍ଷେତ୍ରଜ୍ଞଯୋଗରେ ବିବେଚନା କଲେ ଶରୀରକୁ କ୍ଷେତ୍ର କୁହାଯାଉଥିବା ବେଳେ ଶରୀର ବିଳସିତ ଦେବତା ହେଉଛନ୍ତି କ୍ଷେତ୍ରଜ୍ଞ । ସେ ହିଁ ପ୍ରତ୍ୟେକ ପ୍ରାଣୀଙ୍କ ହୃଦ ଦେଶରେ ବିରାଜିତ । ପଞ୍ଚମାହାଭୂତ, ଦଶଇନ୍ଦ୍ରିୟ, ପଞ୍ଚତନ୍ମାତ୍ର, ବୁଦ୍ଧି ଓ ଅବ୍ୟକ୍ତ ପ୍ରକୃତି ସମେତ କ୍ଷେତ୍ର, କ୍ଷେତ୍ରଜ୍ଞର ସମାହାର ହେଉଛି ଚତୁର୍ବିଂଶତି ସାଂଖ୍ୟ ନିର୍ଣ୍ଣିତ ତତ୍ତ୍ୱର ସମୀକ୍ଷା । କ୍ଷେତ୍ରଜ୍ଞ ପୁରୁଷଙ୍କ ବ୍ୟତୀତ କ୍ଷେତ୍ର ରୂପୀ ତ୍ରୟୋବିଂଶ ତତ୍ତ୍ୱ ମଧ୍ୟରେ ଦ୍ୱାବିଂଶ ସଂଖ୍ୟକ ବ୍ୟବଧାନ ରହୁଛି । ଏହା ହିଁ ସମଗ୍ର ପ୍ରକୃତି । ଏହି ଦ୍ୱାବିଂଶ ବ୍ୟବଧାନକୁ ଅତିକ୍ରମ ନକଲେ ଦେହାଭିମାନୀ ଜୀବ କ୍ଷେତ୍ରଜ୍ଞଙ୍କୁ ଲାଭ କରିପାରିବ ନାହିଁ । ସମ୍ଭବତଃ ବାଇଶି ପାହାଚ ଅନ୍ତରାଳରେ ପ୍ରକୃତି ରାଜ୍ୟରେ ଏହି ବାଇଶି ସଂଖ୍ୟକ ବ୍ୟବଧାନ ଅନ୍ତରାୟ ଉପଲକ୍ଷିତ ହୋଇଛି । ଇଚ୍ଛା, ଦ୍ୱେଷ, ସଂଘାତ, ଚେତନା ଓ ଧୃତି, ସୁଖ–ଦୁଃଖର ବୋଧ–ଏମାନେ ଇନ୍ଦ୍ରିୟ ପ୍ରକୃତିର ବିକାର ମାତ୍ର । ପ୍ରକୃତିର ଏହି ମାର୍ଗକୁ ଅତିକ୍ରମ ନକରି କୌଣସି ଜୀବ ପରମ ଚେତନାକୁ ଲାଭ କରିପାରିବ ନାହିଁ । ପ୍ରତ୍ୟେକ ସ୍ତର(ପାହାଚ)କୁ ଅତିକ୍ରମ କରିବା ପାଇଁ ଜୀବକୁ ବହୁ ଜନ୍ମର ନିରବଛିନ୍ନ ଚେଷ୍ଟା ଓ ସାଧନା ଆବଶ୍ୟକ ହୋଇଥାଏ । ତାହା ହିଁ ଜ୍ଞାନାଶ୍ରୟୀ ତପସ୍ୟା । ଏହି ଋଦ୍ଧିମନ୍ତ ଜ୍ଞାନସମୁଚୟ ମଧ୍ୟ ବାଇଶି ସଂଖ୍ୟକ । ଅମାନିତ୍ୱ(ନିରଭିମାନଭାବ), ଅଦମ୍ଭିତ୍ୱ, ଅହିଂସା, କ୍ଷମାଗୁଣ, ସରଳତା, ଗୁରୁସେବା, ଶୌଚ, ସ୍ଥିରତା, ଆତ୍ମବିନିଗ୍ରହ, ଇନ୍ଦ୍ରିୟ ସମାଦିତ ବିଷୟରେ ଅନାସକ୍ତି, ଅହଂକାର, ଜନ୍ମ–ମୃତ୍ୟୁ–ଜରା–ବ୍ୟାଧିର ଦୁଃଖକୁ ସାମାନ୍ୟ ଭାବରେ ବୁଝିବା,ପୁତ୍ରଦାର–ଗୃହପ୍ରତି ଅନାସକ୍ତ ରହିବା ଓ ସେମାନଙ୍କ ସୁଖ–ଦୁଃଖରେ ସମ୍ବନ୍ଧାତୀତ ଭାବରେ ରହିବା, ଇଷ୍ଟ ଓ ଅନିଷ୍ଟ ଲାଭରେ ସମଚିତ୍ତତା,ପୁରୁଷୋତ୍ତମଙ୍କଠାରେ ଅନନ୍ୟ ସମାହିତ ଭକ୍ତି, ଚିତ୍ତର ପ୍ରସନ୍ନକାରକ ପବିତ୍ର ଓ ଏକାନ୍ତ ସ୍ଥାନରେ ରହିବା, ପ୍ରାକୃତ ଗୋଷ୍ଠୀରେ ଲିପ୍ତ ନରହିବା, ଆତ୍ମଜ୍ଞାନରେ ନିଷ୍ଠାବାନ ହେବା ଏବଂ ବିଶ୍ୱର ସମସ୍ତ ଘଟଣା ମୂଳରେ ବିଦ୍ୟମାନ ତତ୍ତ୍ୱଜ୍ଞାନକୁ ବୋଧଗମ୍ୟ କରାଇବା–ଏହା ହିଁ ଜ୍ଞାନ ସାଧନା । ନିଜକୁ ପରମାତ୍ମାଙ୍କ ସହିତ, ସମାଧାନ ମାର୍ଗରେ ଏହା ହିଁ ପାବଛ ଶ୍ରେଣୀ ।

ଏହି ବାଇଶି ପାହାଚକୁ ମଧ୍ୟ ଦ୍ୱାବିଂଶ ମାତୃଗଣଙ୍କ ସହିତ ସ୍ତୁତି କରାଯାଇଛି । ଏହି ମାତୃଗଣ ସମୁଚ୍ଚୟ ହେଲେ–ବିଷ୍ଣୁମାୟା, ଚେତନା, ବୁଦ୍ଧି, ନିଦ୍ରା, କ୍ଷୁଧା, ଛାୟା, ଶକ୍ତି, ତୃଷ୍ଣା, କ୍ଷାନ୍ତି, ଜାତି, ଲଜ୍ଜା, ଶାନ୍ତି, ଶ୍ରଦ୍ଧା, କାନ୍ତି, ବୃତ୍ତି, ସ୍ମୃତି, ଦୟା, ତୁଷ୍ଟି, ମାତୃ, ଭ୍ରାନ୍ତି ଓ ଚେତନା । ଏହି ବିଷ୍ଣୁମାୟା ଜନନୀଙ୍କର ଆଶୀର୍ବଚନ ଲାଭ ନକଲେ କେହି ନିର୍ଗୁଣ ଭାବକୁ ବୁଝି ପାରିବ ନାହିଁ । ତେଣୁ ନିର୍ଗୁଣ ସତ୍ତାକୁ ଉପଲବ୍ଧି ପାଇଁ ସଗୁଣ ଓ ପ୍ରବୃତ୍ତ୍ୟାଶ୍ରୟୀ ମାଧ୍ୟମ । ତେଣୁ ବାଇଶି ପାହାଚ ପ୍ରତ୍ୟେକ ପାହାଚର କ୍ଳାନ୍ତିକାରୀ ବୋଧରେ ଜୀବ ବିଷ୍ଣୁମାୟାଙ୍କ ଅନୁଗ୍ରହ ଲାଭକରି ଶେଷରେ ମାତୃକରୁଣାରେ ପରମାତ୍ମାବୋଧ ଲାଭ କରିବ । ସଗୁଣ ସଂସାରର ପ୍ରତୀକ ବାଇଶି ପାହାଚ ସଂସାର ବୃକ୍ଷକୁ ବୁଝାଉଛି । ଏହି ସ୍ଥାନରେ ସପ୍ତ ଦିବ୍ୟ ପିତୃ, ଦଶ ବିଶ୍ୱଦେବତା ଓ ସପ୍ତ ମନୁ ଅବସ୍ଥାନ କରିଛନ୍ତି । ଏହା ହିଁ ବ୍ରହ୍ମାଣ୍ଡ । ବ୍ରହ୍ମାଙ୍କ ପର୍ଯ୍ୟନ୍ତ ବିସ୍ତୃତ ଏହି ସଂସାର ପୁନଃ ଆବର୍ତ୍ତିତ ହେଉଛି । ତେଣୁ ବାଇଶି ପାହାଚ ହେଉଛି ଜୀବଲୋକର ଗମନାଗମନର ସ୍ଥାନ । ଦେବତାମାନେ ନୂତନ ସଂଭାବନାରେ ଜନ୍ମ ନେଇ ମଣିଷ ସଂସ୍କୃତିରେ ପିତୃ ହୋଇଛନ୍ତି ଏବଂ ଏହି ପିତୃପୁରୁଷ ଉର୍ଦ୍ଧ୍ୱାୟନ ଦେବମାର୍ଗରେ ଗତିକରି ଦେବତା ରୂପେ କଳ୍ପିତ ହୁଅନ୍ତି । ସେଥିପାଇଁ ପିତା–ପିତାମହ–ପ୍ରପିତାମହଙ୍କୁ ଯଥାକ୍ରମେ ବସୁ,

ରୁଦ୍ର ଓ ଆଦିତ୍ୟ ରୂପରେ ସ୍ତୁତି କରାଯାଏ । ପରମାତ୍ମାଙ୍କ ସାନ୍ନିଧ୍ୟ ପାଇଁ ଏହି ଦେବ-ପିତୃ-ଋଷି ମାଧ୍ୟମର ପାବଚ୍ଛ ଶ୍ରେଣୀକୁ ଶ୍ରଦ୍ଧା, ଭକ୍ତି ଓ ସନ୍ତର୍ପଣରେ ପ୍ରଦକ୍ଷିଣ କରି ଅତିକ୍ରମ କରିବାକୁ ହେବ । ଦଶ ବିଶ୍ୱେଦେବ, ସପ୍ତ ପିତୃ ଏବଂ ପଞ୍ଚମହର୍ଷି ଏମାନଙ୍କୁ ଯଥାକ୍ରମେ ଦେବଯଜ୍ଞ, ପିତୃଯଜ୍ଞ ଓ ଋଷିଯଜ୍ଞରେ ଏହି ବାଇଶି ପାହାଚରେ ସନ୍ତର୍ପିତ କରିବା ବିଧେୟ । ବଡଦାଣ୍ଡରେ ନୀଳଚକ୍ର ଛାୟାରେ ଭୂତଯଜ୍ଞ (ପ୍ରାଣୀ ଓ ଅତିଥିଙ୍କ ସେବା କରିବା)ସମାପନ କରି ମୁକ୍ତିକାମୀ ଜୀବ ବାଇଶି ପାହାଚରେ ଦେବ-ପିତୃ-ଋଷି ପୂଜନ ପୂର୍ବକ ଶ୍ରୀମନ୍ଦିରରେ ପ୍ରବେଶ କରି ବ୍ରହ୍ମଯଜ୍ଞରେ ସ୍ୱୟଂ ନାରାୟଣଙ୍କୁ ଗରୁଡସ୍ତମ୍ଭ ନିକଟରେ ଦର୍ଶନ କରି ଉପାସନା କରିବେ । ଶ୍ରୀଜଗନ୍ନାଥଙ୍କର ବିଜେସ୍ଥଳୀ ଗୋଲକ ହୋଇଥିବାରୁ ଏହାର ଅଧଃ ଦେଶରେ ଅଷ୍ଟ ବୈକୁଣ୍ଠ ଓ ତା'ର ଅଧଃ ଦେଶରେ ଚତୁର୍ଦ୍ଦଶ ଭୁବନ । ହିରଣ୍ୟଗର୍ଭ ହେଉଛନ୍ତି ମହାପ୍ରଭୁଙ୍କ ପଦ୍ମାସନ । ରତ୍ନବେଦୀକୁ ଯିବାକୁ ହେଲେ ଅଷ୍ଟ ବୈକୁଣ୍ଠ ଓ ଚତୁର୍ଦ୍ଦଶ ଭୁବନ ଅତିକ୍ରମ କରିବାକୁ ପଡିଥାଏ । ତେଣୁ ବାଇଶି ପାହାଚ ହେଉଛି ଅଷ୍ଟ ବୈକୁଣ୍ଠ ଓ ଚତୁର୍ଦ୍ଦଶ ଭୁବନର ସମାହାର । ଅଷ୍ଟ ବୈକୁଣ୍ଠ ମଧ୍ୟରେ ଶ୍ରୀବୈକୁଣ୍ଠ, କୈବଲ୍ୟ ବୈକୁଣ୍ଠ, କାରାଣାର୍ଣ୍ଣବ ବୈକୁଣ୍ଠ, ଶ୍ୱେତ ବୈକୁଣ୍ଠ, ଶ୍ୱେତ ଦ୍ୱୀପ ବୈକୁଣ୍ଠ, ପରବ୍ୟୋମ ବୈକୁଣ୍ଠ, ଗର୍ଭୋଦକଶାୟୀ ବୈକୁଣ୍ଠ ଓ କୈଳାସ ବୈକୁଣ୍ଠ । ବାଇଶି ପାହାଚରେ ଏମାନଙ୍କର ଅନୁଷ୍ଠାନ । ମାତ୍ର କେହି ତତ୍ତ୍ୱବିତ୍ କହନ୍ତି ଜଗନ୍ନାଥ ହେଉଛନ୍ତି ଭାଗବତଙ୍କ ସ୍ୱରୂପ । ଭାଗବତ ଦ୍ୱାଦଶ ସ୍କନ୍ଦ, ତହିଁରେ ଦଶ ତତ୍ତ୍ୱ ଯଥା-ବାସୁଦେବ, ନୃସିଂହ, ରାମକୃଷ୍ଣ, ଶ୍ରୀଦେବୀ, ଭୂଦେବୀ, ଗୋବିନ୍ଦ, ନାରାୟଣ, ମଦନମୋହନ, ବିମଳା ଓ ଭୁବନେଶ୍ୱରୀ ମିଶିଲେ ବାଇଶି ପାହାଚ ହୁଏ । ଏହା ବ୍ୟତୀତ ବାଇଶି ପାହାଚ ହେଉଛି ପଞ୍ଚ ମାତ୍ରା, ପଞ୍ଚ ଭୂତ, ପଞ୍ଚ ବୀଜ, ପଞ୍ଚ ଦେବ ଏବଂ ଜୀବ ଓ ପରମ ନାମକ ଦୁଇ ଆତ୍ମାର ମିଳିତ ତନୁ । ଏହା ମଧ୍ୟ ବାଇଶିଟି ତୀର୍ଥ ଭୂମି, ବାଇଶିଟି ତତ୍ତ୍ୱର ପ୍ରତୀକ ଓ ବାଇଶି ଭାବର ସ୍ୱରୂପ । ସେହିପରି ପଞ୍ଚ ରସ, ଅଷ୍ଟ ସାତ୍ତ୍ୱିକ ଭାବ, ତ୍ରିବୀଜ, ତ୍ରିଶକ୍ତି ଓ ତ୍ରିଗୁଣର ସମାହାର ଶ୍ରୀଜଗନ୍ନାଥ ମନ୍ଦିରର ବାଇଶି ପାହାଚ । ଏଣୁ ଶ୍ରୀଜଗନ୍ନାଥ ଦର୍ଶନ କରିବାର ସମସ୍ତ ବ୍ୟାକୁଳତାର ଆଂଶିକ ପରିତୃପ୍ତି ବାଇଶି ପାହାଚରେ ଘଟିଲେ ମହାପ୍ରଭୁଙ୍କ କୃପା ଓ ପୂର୍ଣ୍ଣପ୍ରାଣ ଦର୍ଶନ ସମ୍ଭବ ହୋଇଥାଏ ।

ବାଇଶି ପାହାଚର ସ୍ପର୍ଶରେ ସମସ୍ତ ପାପରାଶି ବିନିଷ୍ଟ ହେବା ସହ ଦାରୁବ୍ରହ୍ମଙ୍କ ଦର୍ଶନ ସୁଲଭ ତଥା ସୁଗମ ହୋଇଥିବା ବିଶ୍ୱାସ । ପବିତ୍ର ମନ, ଉତ୍ସର୍ଗୀକୃତ ହୃଦୟରେ ଏହି ବାଇଶି ପାହାଚ ଅତିକ୍ରମ କଲେ ପରଂବ୍ରହ୍ମଙ୍କ ଦର୍ଶନ ମିଳିଥାଏ ।

ଗୌଡ଼ଗାଁ, କପ୍ତିପଦା, ମୟୂରଭଞ୍ଜ

# ଅପହଞ୍ଚ

**ସୁବିଦ୍ୟା ଦେବୀ**

ତୁମ ହାତ ଦି'ଟା ଏତେ ପ୍ରସାରିତ ଯେ
ତାହା ଦାସିଆର ନଡ଼ିଆକୁ ଛୁଇଁପାରେ ।
ତୁମ ଆଖି ଦି'ଟାରେ ଏତେ ମାୟା ଲୁକ୍କାୟିତ ଯେ
ତାହା ଶବରୀର ଅଇଁଠା କୋଳିକୁ ଚିହ୍ନିପାରେ ।
ତୁମ କାନ ଏତେ ପରିବ୍ୟାପ୍ତ ଯେ
ସେଥିରେ ସାଲବେଗର ଜଣାଣ ଗୁଞ୍ଜରେ ।
ତୁମ ଦୟା ଏତେ କ୍ଷିପ୍ର ପ୍ରବାହିତ ଯେ
ପାପୀର ସବୁ ପାପତାପ ଅକାତରେ ଧୋଇପାରେ ।
ଖାଲି ମୋ'ରି ପାଇଁ
ତମ ହାତ, ଆଖି, କାନ, କରୁଣା
ସବୁ କାହିଁକି ଅପହଞ୍ଚ ରହିଯାଏ ?
ମୋତେ କ'ଣ ଦାସିଆର ନଡ଼ିଆଟାଏ
ଶବରୀର ଅଇଁଠା କୋଳିଟାଏ
ସାଲବେଗର ଆକୁଳ ଜଣାଣଟାଏ,
ପାପୀର ଅକ୍ଷମ ପାପଟାଏ ହେବାକୁ
ଜନ୍ମଜନ୍ମାନ୍ତର ଅପେକ୍ଷା କରିବାକୁ ପଡ଼ିବ ପ୍ରଭୁ ?

ଝାଡେଶ୍ୱରୀ କ୍ଲବ୍ ନିକଟ, ପୁରୀ

# ଦେଶପ୍ରେମୀ ଓଡ଼ିଆ କବି ଓ କବିତା

**କୁଞ୍ଜ ବିହାରୀ ସାହୁ**

ଆମେ ଭାରତୀୟ , ଭାରତ ଆମର ମାଆ । ଆମେ ସ୍ୱାଧୀନ ଦେଶର ସନ୍ତାନ । ଭାରତ ସ୍ୱାଧୀନତା ଲାଭ କଲା ପରେ ସମସ୍ତ ଭାରତୀୟଙ୍କ ଏହିଭଳି ଭାବନା ଯୁକ୍ତିଯୁକ୍ତ । ଭାରତର ସ୍ୱାଧୀନତା ପାଇଁ କେତେ ଯେ ବୀର ପୁଙ୍ଗବ ନିଜ ଜୀବନକୁ ବଳି ଦେଲେ ତା'ର ହିସାବ ନାହିଁ । ନିଜ ଜନ୍ମମାଟିକୁ ଶତ୍ରୁ ହାତରୁ ମୁକୁଳେଇବା ପାଇଁ ଦିନରାତିକୁ ଏକାକାର କରିଦେଇଥିଲେ । ଦେହରେ ଶତ ସିଂହର ବଳ, ମନରେ ପ୍ରଜ୍ୱଳିତ ଶିଖା । ଶତ୍ରୁ ପାଖରେ ହାରିବାର ସେ ଶିଖିନି । ସେ ଦେଖିଛି ବଂଚିବାର ବାଟ । ସାଉଁଟି ଆଣିଛି ଭାରତୀୟ ଭାବନା । ସେଇଥିପାଇଁ ତ ଆମ ଦେଶ ଭାରତବର୍ଷ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ସ୍ୱାଧୀନତା ଲାଭ କଲା । ଇଏ ବୋଧେ ମୁକ୍ତିର ବିପୁଳ ଆନନ୍ଦ ।

ଆମ ହାତପାଆନ୍ତାରେ ଅଗଷ୍ଟ ପନ୍ଦର । ସ୍ୱାଧୀନତାର ସୁଅବସର । ଆମ ଦେଶକୁ ମୁକ୍ତି ଦେବାରେ, ଅସୀମ ସାହସର ସହ ଲଢ଼ିଥିବା ଶହୀଦମାନଙ୍କର ସ୍ମୃତିଚାରଣର ଦିବସ । ସେମାନଙ୍କର ଉତ୍ସର୍ଗୀକୃତ ପ୍ରୟାସ, ଅବିରତ ପରିଶ୍ରମ, ଅକୁଣ୍ଠ ତ୍ୟାଗ ବାସ୍ତବିକ ଆମ ପାଇଁ ଅଭୁଲା ମୁହୂର୍ତ୍ତ । ଆମେ ସ୍ୱାଧୀନତା ପାଇଛୁ କେବଳ ପୂର୍ବସୂରୀଙ୍କ ଯୋଗୁଁ ।

ଭାରତର ସ୍ୱାଧୀନତା ଆନ୍ଦୋଳନରେ ଓଡ଼ିଶାର ଭୂମିକା ଅଦ୍ୱିତୀୟ । ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ପାଇକ ବିଦ୍ରୋହ ଓ ପରେ ପରେ ସିପାହୀ ବିଦ୍ରୋହର ସୂତ୍ରପାତ ଭାରତର ସ୍ୱାଧୀନତା ଆନ୍ଦୋଳନକୁ ଆହୁରି ଘନୀଭୂତ କରିବାକୁ ଲାଗିଲା । ପାଇକ ବିଦ୍ରୋହର ଦୁଇ ଶତ ବର୍ଷ ଅତିକ୍ରାନ୍ତ ହେଲେ ମଧ୍ୟ ଏବେ ବି ମନେପଡୁଛି ବୀର ଶହୀଦମାନଙ୍କର ବଳିଦାନ । ଇଂରେଜମାନଙ୍କୁ ପରାହତ କରି ଓଡ଼ିଶାମାଟିକୁ ଶାସନମୁକ୍ତ କରିବାରେ ନେଇଥିବା ଆନ୍ଦୋଳନାତ୍ମକ ଭୂମିକା ପ୍ରକୃତରେ କାଳଜୟୀ । ପାଇକପୁଅ ସ୍ୱାଭିମାନୀ । ହାରିବାର ସ୍ୱପ୍ନ ଦେଖିନି । ବ୍ରିଟିଶର ଲୋମହର୍ଷଣକାରୀ ଆକ୍ରମଣରେ ସେ ମୁହ୍ୟମାନ ନୁହେଁ ।

ଓଡ଼ିଆ ପାଇକ ବୀର ନିଜ ସ୍ୱାଭିମାନକୁ ହରେଇ ନାହିଁ । ସେ ଆପଣା ଜନ୍ମମାଟିର ସୁରକ୍ଷା ପାଇଁ ସଦାସର୍ବଦା ନିଜକୁ ବଳିଦାନ ଦେବାକୁ ଆଗେଇ ଆସୁଥିଲେ । ସେଥିପାଇଁ ତ ଓଡ଼ିଆ ପାଇକ ବୀର ସବୁବେଳେ ମହୀୟାନ ଓ ସମସ୍ତଙ୍କର ପ୍ରଶଂସାର ପାତ୍ର ।

ଜାତିର ପିତା ମହାତ୍ମାଗାନ୍ଧୀଙ୍କ ଅହିଂସା ଯୁଦ୍ଧର ଡାକରାରେ ଅନୁପ୍ରାଣିତ ହୋଇ ସମଗ୍ର ଓଡ଼ିଶାବାସୀ ସ୍ୱାଧୀନତାର ମନ୍ତ୍ର ଉଚ୍ଚାରଣ କଲେ । ଗାନ୍ଧିଜୀଙ୍କ ଓଡ଼ିଶା ଆଗମନରେ ଓଡ଼ିଆମାନେ ଦେଶପ୍ରେମରେ ଉଦବୁଦ୍ଧ ହୋଇଥିଲେ । ଗାନ୍ଧିଜୀ କହିଥିଲେ– 'ଆମ୍ଭମାନଙ୍କ ହାତରେ ତରବାରୀ ବା ଶାରୀରିକ ବଳ ନାହିଁ । ମୋ ମତରେ ତରବାରୀ ଥିଲେ ସୁଦ୍ଧା ଶତ୍ରୁ ଓ ପାପୀ ଆଗରେ ତାହାକୁ ଉତ୍ତୋଳନ କରିବା ନାହିଁ । ଅସହଯୋଗ ଆମର ଧର୍ମ । ସ୍ୱରାଜ ଆମର ମୁକ୍ତି ।' (ସୌଜନ୍ୟ–ଉତ୍କଳ ପ୍ରସଙ୍ଗ–୨୦୧୭ ଅଗଷ୍ଟ ପୃଷ୍ଠା–୪୩) ।

ଉତ୍କଳର ସୁଯୋଗ୍ୟ ସନ୍ତାନ ଜୟୀ ରାଜଗୁରୁ, ବୀର ସୁରେନ୍ଦ୍ର ସାଏ, ବାଜି ରାଉତ, ଲକ୍ଷ୍ମଣ ନାଏକ, ବିର୍ସା ମୁଣ୍ଡା, ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର, ରଘୁ–ଦିବାକର,

ଉତ୍କଳମଣି ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ ଦାସ, ପଣ୍ଡିତ ନୀଳକଂଠ ଦାସ, ଆଚାର୍ଯ୍ୟ ହରିହର, ହରେକୃଷ୍ଣ ମହତାବ, ନେତାଜୀ ସୁଭାଷ ଚନ୍ଦ୍ର ବୋଷ, ବୈଷ୍ଣବ ପାଣି, ନବକୃଷ୍ଣ ଚୌଧୁରୀ, ଗୋପବନ୍ଧୁ ଚୌଧୁରୀ, ପାରଳା ମହାରାଜ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ଚନ୍ଦନ ହଜୁରୀ ଓ ବିଜୁ ପଟ୍ଟନାୟକଙ୍କ ପରି ଆହୁରି ଅନେକ ସ୍ୱାଧୀନତା ସଂଗ୍ରାମୀ ନିଜ ଜୀବନକୁ ବାଜି ଲଗେଇ ଦେଶମାତୃକାର ମୁକ୍ତିପଥରେ ଅଗ୍ରସର ଥିଲେ । ସେହିଭଳି ମା' ରମାଦେବୀ, ସରଳା ଦେବୀ, ମାଳତୀ ଚୌଧୁରୀ, ପାର୍ବତୀ ଗିରି, ଜାହ୍ନବୀ ଦେବୀ, କୁଜଙ୍ଗର ପୂର୍ବତନ ରାଣୀ ଭାଗବତୀ ପାଟ୍ଟ ମହାଦେଈ, କୁନ୍ତଳାକୁମାରୀ ସାବତ, ଅନ୍ନପୂର୍ଣ୍ଣା ଦେବୀ ଆଦି ମହିଳାଗଣ ସ୍ୱାଧୀନତା ସଂଗ୍ରାମରେ ନିଜେ ସାମିଲ ହୋଇ ମା' ଓ ମାଟି ପାଇଁ ଅନେକ ଦୁଃଖ–ଯାତନା ସହିଥିଲେ । ଇଂରେଜ ଶାସନକାଳରେ ପୋଲିସମାନଙ୍କ ସହ ଯୁଝି କାରାଗାର ବରଣ କରିଥିଲେ । ସେମାନଙ୍କର ଅଦମ୍ୟ ସାହସ, ଅଟଳ ପ୍ରତିଜ୍ଞା, ବଳିଦାନ ସ୍ୱରାଜ୍ୟ ସାଧନାରେ ବତୀଘର ସଦୃଶ ମନେହୁଏ ।

ଜନ୍ମମାଟି ଓଡ଼ିଶା ପାଇଁ ସ୍ୱପ୍ନ ଦେଖିଥିବା ଅନେକ ଦେଶପ୍ରେମୀ ଓଡ଼ିଆ କବି ନିଜର ଶାଣିତ ଲେଖନୀ ମୁନରେ ଅଗ୍ନିବର୍ଷୀ ଦେଶାତ୍ମବୋଧକ କବିତା ରଚନା କରିଥିଲେ । ସେଗୁଡିକ ଅନୁଭବର କବିତା । କବିତାର ବିପ୍ଳବାତ୍ମକ ଚେତନା ମନପ୍ରାଣରେ ଜାଗରଣ ସୃଷ୍ଟି କରିଥିଲା । ଯାହାଫଳରେ ତାହା ସମୟାନୁକ୍ରମେ କାଳଜୟୀ ହୋଇପାରିଥିଲା ଏବଂ ଲୋକଙ୍କ ମୁହଁରେ ସ୍ରୋତସ୍ୱିନୀ ନଦୀ ପରି ବହିଗଲା ।

ସ୍ୱାଧୀନତାକୁ ଭଲ ଭାବେ ଚିହ୍ନିପାରିଥିବା ସ୍ୱାଧୀନତା ସଂଗ୍ରାମୀ ଓ କବି ଗୋପବନ୍ଧୁ ଦାସଙ୍କ 'କାରା କବିତା' ଓ 'ବନ୍ଦୀର ଆତ୍ମକଥା' କବିତା ସତେଯେମିତି ଦୁଃଖ ଶୋଚନାର ସରହଦ ପାରିହୋଇଯାଇଛି । ପ୍ରତ୍ୟେକ ଶବ୍ଦରେ ବୈପ୍ଳବିକ ଚିନ୍ତାଧାରା ଜଡ଼ିରହିଛି । ନିଜେ ଦୁଃଖରେ ସନ୍ତୁଳି ହୋଇ ସମସ୍ତ ଉତ୍କଳବାସୀଙ୍କୁ ସାହସ ଯୋଗାଇଛନ୍ତି ବୀର ଦର୍ପରେ ଶତ୍ରୁ ସହ ଲଢ଼ିବାକୁ । ସାହସର ସହ ନିଜର ପାରିଲା ପଣିଆକୁ ଜାହିର କରିବା ପାଇଁ ଆହ୍ୱାନ ଦେଇଛନ୍ତି । ନିମ୍ନୋକ୍ତ ପଦରୁ ଏହା ସ୍ପଷ୍ଟ ଅନୁମେୟ ।

ଦଗ୍ଧ ହେଉ ଦେହ, ଭସ୍ମ ହେଉ ଘର
ସ୍ୱରାଜ୍ୟ ସାଧନେ କେବେ ହେଁ ନ ଡର ।
ନ ଛାଡ଼ ସାହସ ନ ହୁଅ ନିରାଶ
ହେଲେ ହେଉ ପଛେ କାରାଗାରେ ବାସ ।
(ବନ୍ଦୀର ଆତ୍ମକଥା)

ଗୋପବନ୍ଧୁଙ୍କ ଏଭଳି ଦେଶାତ୍ମବୋଧକ କବିତା ତଥା ନିଜର ସ୍ୱାର୍ଥରହିତ ସଂଗ୍ରାମୀ ଭାବନା ସେତେବେଳର ସ୍ୱାଧୀନତା ପାଇଁ ଉତ୍ସାହ ପ୍ରଦାନ କରିଥିଲା । ସେ କହିଥିଲେ– 'ପରାଧୀନ ଭାବ ଦାସତ୍ୱ, ସ୍ୱାଧୀନତା ଭାବ ବିଭୁତ୍ୱ । ସ୍ୱାଧୀନତାର ଭାବରେ ସାକ୍ଷାତ ଭଗବାନଙ୍କୁ ଆଗରେ ଦେଖି ତାଙ୍କର ସତ୍ତା ଅନୁଭବ କରିବାକୁ ହେବ । ତାଙ୍କର ଆହ୍ୱାନ ଶୁଣିବାକୁ ହେବ । ସ୍ୱାଧୀନତା ବାହାରେ ନାହିଁ । ଏହା ଆତ୍ମାରେ ପ୍ରତିଷ୍ଠିତ । ଆତ୍ମଶାସନ ହିଁ ଏହାର ସାଧନା, ତିତିକ୍ଷା ହିଁ ଏହାର ମନ୍ତ୍ର । '

ଆଧୁନିକ ଓଡ଼ିଶାର ନିର୍ମାତା, ଅନ୍ୟତମ ସ୍ୱାଧୀନତା ସଂଗ୍ରାମୀ ଏବଂ ଉତ୍କଳର ବରପୁତ୍ର ଉତ୍କଳଗୌରବ ମଧୁସୂଦନ ଦାସ ସାହିତ୍ୟରେ ଜଣେ ଉଚ୍ଚକୋଟୀର ବାଗ୍ମୀ ଥିଲେ ବି ଖୁବ୍ ସ୍ୱାଭିମାନୀ ସେ । ସ୍ୱତନ୍ତ୍ର ଉତ୍କଳପ୍ରଦେଶ ଗଠନର ପୁରୋଧା ତଥା ଉତ୍କଳ ସମ୍ମିଳନୀର ପ୍ରତିଷ୍ଠାତା ଭାବେ ନିଜକୁ ପରିଚୟ ଦେଇଥିଲେ । ଦେଶ ଓ ଜାତିର ଉନ୍ନତି ନିମନ୍ତେ ତାଙ୍କ ପ୍ରାଣ କାନ୍ଦୁଥିଲା ।

ତୋଷାମଦ, ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ମାଟି–ମାଆର ସେବାରେ ଲାଗିଲେ ଦେଶ ଉନ୍ନତି ପଥରେ ଆଗେଇ ପାରିବ, ଏହା ଥିଲା ତାଙ୍କର ଦେଶବାସୀଙ୍କ ପ୍ରତି ଆବେଦନ । ତାଙ୍କର ପ୍ରତ୍ୟେକ କବିତା ରସୋତୀର୍ଣ୍ଣ ଓ ଭାବନାତ୍ମକ ।

ଓଡିଆ ପ୍ରାଣରେ ବୈପ୍ଳବିକ ଚିନ୍ତାଧାରା ସଂଚାର କରି ସ୍ୱାଧୀନତା ପଥରେ ଚାଲିବାକୁ ବାଟ ଦେଖାଇଥିଲେ ଜାତୀୟ କବି ବୀରକିଶୋର ଦାସ । ମୁକ୍ତି ଆନ୍ଦୋଳନରେ ସଭିଏଁ ଝାସ ଦେବାକୁ ଆହ୍ୱାନ ଦେଇଥିଲେ । ମନର ତାତିଲାପଣକୁ ପ୍ରକାଶ କରି 'ରଣ ଦୁନ୍ଦୁଭି ' କବିତାରେ ସେ ଲେଖିଥିଲେ–

'ଦିନରାତି ମୋର ସେହି ଚିନ୍ତା, ବନ୍ଧୁ ସେହି ଚିନ୍ତା
ଏ ସରକାର ଶବ ଦାହ କେବେ ହେବ
ଦେଖିବି ମୁଁ ତାର ଶେଷ ଚିତା ।'

କବି ସଚ୍ଚି ରାଉତରାୟ ଓଡ଼ିଆ କାବ୍ୟ ସାହିତ୍ୟର ଦିଗ୍‌ଦର୍ଶକ । ଆଧୁନିକ କବିତାରେ ନୂଆ ଧାରା ତିଆରି କରିଛନ୍ତି । କବିତାଗୁଡ଼ିକ ସାବଲୀଳ ଓ ସାମାଜିକ ପରିପ୍ରେକ୍ଷୀରେ ଚିରସବୁଜ । ବିଭିନ୍ନ କବିତାରେ ବୈପ୍ଳବିକ ଚିନ୍ତାଧାରାକୁ ସାମିଲ କରି ବ୍ରିଟିଶ ଶାସନରେ ନିଆଁ ଲଗେଇଛନ୍ତି । ସେ 'ବାଜିରାଉତ' କବିତାରେ ବାଜିରାଉତଙ୍କୁ ଜଣେ ସାହସୀ, ଦେଶପ୍ରେମୀ ବୋଲି ବର୍ଣ୍ଣନା କରି ଲେଖିଛନ୍ତି–

ନୁହେଁ ବନ୍ଧୁ ନୁହେଁ ଏ ସଳିତା,<br>
ଏ ଦେଶ ତିମିର ତଳେ ଏ ଅଲିଭା ମୁକତି ସଳିତା ।

କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ସ୍ୱାଧୀନତା ଆନ୍ଦୋଳନର ଏକ ଚର୍ଚ୍ଚିତ ନାଁ । 'ବନ୍ଦେ ଉତ୍କଳ ଜନନୀ' କବିତା ରଚନା କରି ଉତ୍କଳ ଜନନୀ ପ୍ରତି ସେ ନିଜର ଭକ୍ତିଭାବ ପ୍ରଦର୍ଶନ କରିଥିଲେ ।

ଅବିଭକ୍ତ ସମ୍ବଲପୁର ଜିଲ୍ଲାର ବରପାଲି ଗ୍ରାମରେ ଜନ୍ମଗ୍ରହଣ କରିଥିବା ସ୍ୱଭାବ କବି ଗଙ୍ଗାଧର ମେହେର ନିଜର କାବ୍ୟିକ ମହିମାରେ ମହିମାନ୍ୱିତ । ଓଡ଼ିଆ ଭାଷା ପ୍ରତି ଯେତିକି ସମ୍ମୋହିତ, ଜାତୀୟତାରେ ବି ସେତିକି ଅନୁରକ୍ତ । କବିତାର ପ୍ରତିଟି ଛନ୍ଦେ ଛନ୍ଦେ ଉଦ୍‌ବୋଧନୀ ସ୍ୱର ଝଙ୍କୃତ ହୋଇଛି ।

'ଉଠ ଭାଇ ଉଠ ନବୀନ ଆଲୋକେ<br>
ଶୋଇଥିଲେ ଚାହିଁ ହସୁଥିବେ ଲୋକେ<br>
ଶୁଭକର୍ମ ପଥେ ହୁଅ ଅଗ୍ରସର<br>
ଚକ୍ଷୁ ମିଳିବାକୁ ନାହିଁ ଅବସର ।'

ଓଡ଼ିଆ ଗଳ୍ପର ଆଦ୍ୟ ପ୍ରତିଷ୍ଠାତା ଫକୀରମୋହନ ସେନାପତି । ମକର ସଂକ୍ରାନ୍ତିରେ ଜନ୍ମ ହୋଇଥିବାରୁ କେହି କେହି ତାଙ୍କୁ ସଂକ୍ରାନ୍ତି ପୁରୁଷ ବୋଲି କହିଥାନ୍ତି । ଓଡ଼ିଆମାନଙ୍କ ସ୍ୱାଭିମାନ, ଓଡ଼ିଆ ଭାଷାର ସୁରକ୍ଷା ପାଇଁ ସେ ସଦାସର୍ବଦା ଆଗେଇ ଆସିଛନ୍ତି ।

ଜାତୀୟ କବି ବାଞ୍ଛାନିଧି ମହାନ୍ତି କିଶୋର ଅବସ୍ଥାରୁ ଭଦ୍ରକ ଜିଲ୍ଲାର ଇରମ ଗ୍ରାମବାସୀଙ୍କର ଦୁଃଖ–ଦୁର୍ଦ୍ଦଶା, ଜନ୍ମମାଟିର ହାହାକାରମୟ ଚିତ୍ର ଦେଖି ବ୍ୟଥିତ ହୋଇପଡ଼ିଥିଲେ । ଯାତ୍ରା, ଥିଏଟର, ସଭା ସମିତିରେ ନିଜେ ଗୀତ ଲେଖି ସୁନ୍ଦର ସୁଲଳିତ ଢଙ୍ଗରେ ଗାୟନ କରୁଥିଲେ । ମହାତ୍ମା ଗାନ୍ଧୀଙ୍କ ଦ୍ୱାରା ଅନୁପ୍ରାଣୀତ ହୋଇ ଜାତୀୟ ଜାଗରଣ ଏବଂ ସ୍ୱାଧୀନତା ସଂଗ୍ରାମର ମହନୀୟତାକୁ ଅନୁଭବ କରିପାରିଥିଲେ । ୧୯୩୦ ମସିହାରେ ଲବଣ ସତ୍ୟାଗ୍ରହରେ ଭାଗ ନେଇଥିଲେ । କଟକରେ ଅନୁଷ୍ଠିତ ନିଖିଳ ନେତା ସମ୍ମିଳନୀରେ କବି ଏକ ଯୁଗାନ୍ତକାରୀ କବିତାଟିଏ ଗାଇ ସମସ୍ତଙ୍କୁ ଚେତେଇ ଦେଇଥିଲେ –

କହ କେଉଁ ଜାତି ପାଇଛି ମୁକତି<br>
କରି ହୁରି ହାରି ଗୁହାରୀ<br>
ପାଇଛି କେ ସୁଖ ଲିଭାଇଛି ଦୁଃଖ<br>
ମାଗି ମାଗି ପଥ ଭିକାରି ।

ଓଡ଼ିଶାର ଗୌରବମୟ ଇତିହାସ, ଓଡ଼ିଆର ମାନମର୍ଯ୍ୟାଦା କ୍ଷୁଣ୍ଣ ହୋଇଯାଉଥିବାବେଳେ ପଣ୍ଡିତ ଗୋଦାବରୀଶ ମହାପାତ୍ର 'ଉଠ କଙ୍କାଳ' କବିତା ରଚନା କରି ସମଗ୍ର ଓଡ଼ିଶାବାସୀଙ୍କୁ ଓଡ଼ିଶାର ହୃତ ଗୌରବକୁ ଫେରାଇ ଆଣିବାକୁ ଆହ୍ୱାନ ଦେଇଥିଲେ ।

ଆଧୁନିକ ସାହିତ୍ୟର ଯୁଗସ୍ରଷ୍ଟା କବିବର ରାଧାନାଥ ରାୟ ଓଡ଼ିଆ ସାହିତ୍ୟ ପ୍ରତି ଗଭୀର ରୁଚି ରଖିଥିଲେ । ଉତ୍କଳ ସମ୍ମିଳନୀ ପାଇଁ ମଧୁସୂଦନ ଦାସଙ୍କ ଅନୁରୋଧକ୍ରମେ 'ଭାରତ ଗୀତିକା' କବିତା ରଚନା କରିଥିଲେ । କ୍ରମଶଃ ଏହି ସୁମଧୁର ଲଳିତ ଦେଶାତ୍ମବୋଧକ କବିତାଟି ସମ୍ମିଳନୀ ମଣ୍ଡପରେ ଗାନ କରାଯାଇଥିଲା ଏବଂ ଜନାଦୃତି ଲାଭ କରିଥିଲା ।

ନାରୀକବି କୁନ୍ତଳା କୁମାରୀ ସାବତ ସ୍ୱାଧୀନତା ଆନ୍ଦୋଳନରେ ଇଂରେଜୀମାନଙ୍କ ବିଦ୍ରୁପ ଶୁଣିଛନ୍ତି । ଓଡ଼ିଆ ଦେଶପ୍ରେମୀର ଦୁଃଖ କାହାଣୀ ଶୁଣି କାତର ହୋଇଛନ୍ତି । ସରଳ, ତରଳ ମା' ମନ କାନ୍ଦିଉଠିଛି । ସେ ଲେଖିଛନ୍ତି–

'ପଖାଳ ଗଣ୍ଡାକୁ ଟିପେ ନାହିଁ ଲୁଣ<br>
ବାହୁନିବା କିସ ଶାସନର ଗୁଣ<br>
ଅପୂର୍ବ ରଚନା ଶାସନ ପ୍ରଣାଳୀ<br>
ତେତ୍ରିଶକୋଟି ଯା' କବଳେ କାଙ୍ଗାଳୀ ।'

ରଣପୁର ମାଟିର ସୁଯୋଗ୍ୟ ସନ୍ତାନ ଶହୀଦ ଦିବାକର ପରିଡ଼ା ଭାରତୀୟ ସ୍ୱାଧୀନତା ସଂଗ୍ରାମ ତଥା ଗଡଜାତ

ଆନ୍ଦୋଳନରେ ପ୍ରମୁଖ ଭୂମିକା ନେଇଥିଲେ । ଓଡ଼ିଆ ସଂସ୍କୃତି, ଜନସାଧାରଣଙ୍କ ପ୍ରତି ଶ୍ରଦ୍ଧା ଏପରିକି ମାତୃଭୂମି ପ୍ରତି ମୋହ, ମାୟାକୁ ସାଉଁଟୁ ଥିଲେ । ବ୍ରିଟିଶ ବାହିନୀକୁ ପରାହତ କରି ଦେଶକୁ ସ୍ୱାଧୀନ କରିବା ହିଁ ଥିଲା ତାଙ୍କର ଏକମାତ୍ର ଲକ୍ଷ୍ୟ । ନିଜ ଜୀବନକୁ ପାଣି ଛଡେଇ ଦେଶମାତୃକାର ସେବାରେ ବ୍ରତୀ ହୋଇଥିଲେ । ସେ ଲେଖିଥିବା ଏକ କବିତାର କିୟଦଂଶ ହେଲା–

‘ସ୍ୱାଧୀନ ରଖିବେ ଜନମ ଭୂଇଁକି
ଚିର ଦିନ ପାଇଁ ତ୍ରିରଙ୍ଗାକୁ ଟେକି
ପୂର୍ଣ୍ଣ ହେବ ସତେ ଦିବାକର ଆଶା
ସୁଜଳା, ସୁଫଳା, ସମୃଦ୍ଧ ଓଡ଼ିଶା ।’

ଓଡ଼ିଶା ସ୍ୱାଧୀନ ଲାଭ କଲା । ସୁଜଳା ସୁଫଳା ଓଡ଼ିଶା ମାଟିରେ ଜନ୍ମିତ ବୀର ଶହୀଦ ଦିବାକର ପରିଡାଙ୍କର ଆଶା ପୂର୍ଣ୍ଣ ହୋଇଗଲା ।

କବିମାନଙ୍କ କଲମ ମୁନ ସବୁବେଳେ ଗତିଶୀଳ । ଯେକୌଣସି ମୁହୂର୍ତ୍ତରେ ସେ କବିତାଟିଏ ରଚନା କରି ଆତ୍ମତୃପ୍ତି ପାଏ । ସେହିଭଳି ଜଣେ ସ୍ୱାଧୀନଚେତା ପ୍ରଥିତଯଶା ଶିଶୁ ସାହିତ୍ୟିକ ତଥା ଗବେଷକ ଡକ୍ଟର ଦିଗରାଜ ବ୍ରହ୍ମା । କବି ଗଣତନ୍ତ୍ରର ପ୍ରକୃତ ଦାୟାଦ ଭାବରେ ଭାରତର ସ୍ୱାଧୀନତାକୁ ମୂଳମନ୍ତ୍ର କରି ନିଜର ସ୍ୱାଭିମାନ, ଐତିହ୍ୟକୁ ବଜାୟ ରଖିଛନ୍ତି । ଗର୍ବରେ ଛାତି ଫୁଲେଇ ଲେଖିଛନ୍ତି କବିତା ‘ଜୟ ମୋ ଭାରତ ଦେଶ’ ।

ସ୍ୱାଧୀନତା ଆମ ମୂଳତନ୍ତ୍ର
ଜୀବନର ଧର୍ମ ଗଣତନ୍ତ୍ର
ଗଣତନ୍ତ୍ରର ଜାଗ୍ରତ ପ୍ରହରୀ ଆମେ ସବୁ ଭାରତୀୟ
ସଂସ୍କୃତି ଆମର ଚିର ଉନ୍ନତ ଐତିହ୍ୟ ନମନୀୟ ।
ସ୍ୱାଧୀନତା ଆମ ବୁଦ୍ଧ ଗାନ୍ଧୀ
ସ୍ୱାଧୀନତା ଆମ ଜୟହିନ୍ଦ୍
ସ୍ୱାଧୀନତା ଆମ ଗୁରୁ ଗଉରବ ଆମେ ସବୁ ଭାରତୀୟ
ବିଶ୍ୱ ଇତିହାସେ ଆମେ ସଂଭ୍ରମ ଉନ୍ନତ ନମନୀୟ ।
ଆମେ ଭାରତୀୟ ଏକତନ୍ତ୍ର
ସ୍ୱାଧୀନତା ଆମ ମୂଳତନ୍ତ୍ର
ଅର୍ଦ୍ଧଶତାବ୍ଦୀର ଚିନ୍ତା ଚେତନାରେ ଆମେ ଲେଖୁ ଇତିହାସ
ଆମେ ତ ଜାତିର ଗୁରୁ ଗଉରବ ଜୟ ମୋ ଭାରତ ଦେଶ ।

ଶିଶୁ ସାହିତ୍ୟରେ ରାମକୃଷ୍ଣ ନନ୍ଦଙ୍କ ନାମ ଘରେ ଘରେ ପରିଚିତ । ସରଳ, ସାବଲୀଳ ଭାଷାରେ କବିତା ରଚନା କରି ସେ ସମସ୍ତଙ୍କ ମନ ଜିଣିପାରିଛନ୍ତି । ଓଡ଼ିଆ ବୋଲି ସୁନ୍ଦର ଭାବନାଟିଏ ତାଙ୍କ ମନ ଭିତରେ ଉଙ୍କି ମାରିଛି । ତାଙ୍କର କବିତା ସଂକଳନ ‘ଝୁମୁକା’ର ‘ଓଡ଼ିଶା ମୋର ଦେଶ’ ରେ ଲେଖିଛନ୍ତି–

‘ଏଇ ଦେଶର ପାଣି ପବନେ ଶରୀର ହେଲା ଗଢା
ଏଇ ଦେଶର ଚାଟଶାଳୀରେ ଶିଖିଲୁ ପାଠ ପଢ଼ା ।
ଏଇ ଦେଶର ସେବାରେ ଆମ ଜୀବନ ହେଉ ଶେଷ
ଓଡ଼ିଆ ଆମେ, ଓଡ଼ିଆ ଆମେ, ଓଡ଼ିଶା ଆମ ଦେଶ ।’

ଶିଶୁ କବିତାର ବରେଣ୍ୟ ସ୍ରଷ୍ଟା ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ କୋମଳମତି ଶିଶୁମାନଙ୍କ ମନରେ ଦେଶପ୍ରତି ବୀରତ୍ୱ ଭାବ ଜାଗ୍ରତ କରାଇବା ସଙ୍ଗେ ସଙ୍ଗେ ସମରକଳାରେ ପାରଦର୍ଶିତା ଦେଖାଇବାର ସୁଯୋଗ ତିଆରି କରିଛନ୍ତି । ନିଜ କବିତା ସଂକଳନ ‘ଦେଶ ଓ ଦଶ’ରେ ସ୍ଥାନିତ କବିତା ‘ମୋ ଭାଇଟି ଓଡ଼ିଆ’ରେ ଲେଖିଛନ୍ତି –

‘ମୋ ଭାଇଟି ଓଡ଼ିଆ ଥିଲାରେ ଦିନେ ଓଡ଼ିଆ
ମଣୁଥିଲା ସେ ରଣଭୂଇଁକୁ ପିଲାଙ୍କ ଖେଳ ପଡ଼ିଆ ।

ମାସିକ ଶିଶୁ ଓ କିଶୋର ପତ୍ରିକାର ସଂପାଦିକା ତଥା ସୁସାହିତ୍ୟିକା ଅନସୂୟା ନନ୍ଦ ଓଡ଼ିଶା ମାଟିରେ ଜନ୍ମ ହୋଇ ନିଜ ଜୀବନକୁ ସାର୍ଥକ ମଣନ୍ତି । ମାଟି ଓ ପାଣି–ପବନକୁ ଭଲ ପାଉଥିବା କବୀଟିଏ ନିଜ କବିତାରେ ଓଡ଼ିଶା ଗାଁ ର ସୁନ୍ଦର ଚିତ୍ରଟିଏ ଆଙ୍କିଛନ୍ତି । ସେ ତାଙ୍କର କବିତା ‘ଆମେ ସବୁ ବଢ଼ିଆ’ରେ ଉପସ୍ଥାପନା କରିଛନ୍ତି ଏଇଭଳି–

ପୂର୍ଣ୍ଣମୀ ରାତିରେ ଯେବେ ଆକାଶରେ ଚାନ୍ଦ ଉଏଁ
ପଲ୍ଲୀବାଳା ଚେଇଁଉଠେ କଇଁକୁ ଜଗାଇଥାଏ ।
ଜୋଛନାର ରୁଣୁଝୁଣୁ ଭରିଦିଏ ପୁଲକ
ଇଏ ତ କେବଳ ଆମ ଓଡ଼ିଶାର ମହକ ।
ବରଷାର ଝରଝର ଝରଣାର ପାଣିରେ
ପାହାଡ଼ କନ୍ଦରେ ଶୁଭେ ବେଦମନ୍ତ୍ର ବାଣୀରେ
ମଧୁ ସମୀରଣ ଗାଏ ଓଡ଼ିଆଙ୍କ ଗରିମା
ଇଏ ତ ଆମର ଏକା ଓଡ଼ିଶାର ମହିମା ।

କବିମାନେ ଚିର ସବୁଜ । ସ୍ୱାଧୀନ ଦେଶର ସନ୍ତାନ ହୋଇ ବରିଷ୍ଠ ଶିଶୁ ସାହିତ୍ୟିକ ରଘୁନନ୍ଦନ ମହାପାତ୍ର ତାଙ୍କ କବିତାରେ ସ୍ୱାଧୀନତାକୁ ଉଚ୍ଚ ଆସନ ଦେଇଛନ୍ତି । ନିଜର ଅଭିଳଷିତ ଇଚ୍ଛାକୁ ବ୍ୟକ୍ତ କରିଛନ୍ତି 'ଆମେ ସ୍ୱାଧୀନ' କବିତାରେ ।

ସ୍ୱାଧୀନ ଦେଶର ସନ୍ତାନ ଆମେରେ
ମନ ଖୋଲି କଥା କହିପାରୁ
ନିରବରେ ପୁଣି ସହିପାରୁ
ସହି ପୁଣି ସବୁ ଭୁଲିପାରୁ
ଆମେ ବନ୍ଧୁତାର ହାତ ମେଲିପାରୁ ।
ସ୍ୱାଧୀନ ଦେଶର ସୈନିକ ହୋଇ
ଆମେ ମାତୃଭୂମି ପାଇଁ ଲଢ଼ିପାରୁ
ଶତ୍ରୁକୁ ଦେଶରୁ ତଡ଼ିପାରୁ
ଟୋପାଏ ରକତ ଥିବାଯାଏଁ ଆମେ
ସ୍ୱାଧୀନତା ରକ୍ଷା କରିପାରୁ ।

ଗୋପବନ୍ଧୁ ଦାସଙ୍କ ଅନନ୍ୟ କବି ପ୍ରତିଭା, ସୃଜନଶୀଳତା, ନିଚ୍ଛକ ବ୍ୟକ୍ତିତ୍ୱ, ଜନ୍ମମାଟି ପ୍ରତି ଅନାବିଳ ପ୍ରେମ ଓ ଆତ୍ମୋତ୍ସର୍ଗର ପ୍ରକୃଷ୍ଟ ଉଦାହରଣକୁ ଲକ୍ଷ୍ୟକରି କବିବର ରାଧାନାଥ ରାୟ ଲେଖିଥିଲେ–

'ଧନ୍ୟ କବି ! ତୁମ୍ଭ ଜନ୍ମ ଶୁଭ କ୍ଷଣେ
ମୃତ୍ୟୁଞ୍ଜୟ ତୁମ୍ଭେ ଉତ୍କଳ ଭୁବନେ ।
ତୁମ୍ଭ ମାଟି ଦେହ ଗ୍ରାସିଛି ଶ୍ମଶାନ
ମାତ୍ର ଯଶୋଦେହେ ତୁମ୍ଭେ ଆୟୁଷ୍ମାନ ।'

(ଚିଲିକା କାବ୍ୟ)

କବିବର ରାଧାନାଥଙ୍କ ଏଭଳି ଶ୍ରଦ୍ଧାଶୀଳ ଉକ୍ତି କେବଳ ଯେ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ପାଇଁ ପ୍ରଯୁଜ୍ୟ, ତା' ନୁହେଁ ସ୍ୱାଧୀନତାର ସୂର୍ଯ୍ୟାଲୋକ ଦେଖି ଆସୁଥିବା ସମସ୍ତ ଓଡ଼ିଆ କବିମାନଙ୍କ ପାଇଁ ଯଥୋଚିତ କାବ୍ୟିକ ସମ୍ମାନ ।

ଦେଶର ଗର୍ବ ଓ ଗୌରବ ତ୍ରିରଙ୍ଗା ପତାକା ଆକାଶରେ ଉଡ଼ାଇଲା ବେଳେ ମନେପଡ଼ିଯାଏ ପାଠ୍ୟ ପୁସ୍ତକର କବିତାଟିଏ–

ବଜାରେ ବଜା ବାଇଦ ବଜା
ଚଉଦିଗ ଆଜି ସଜାରେ ସଜା ।
କେତେ ନୂଆ ଆଶା ଆନନ୍ଦ ଆଣି
ଅଗଷ୍ଟ ପନ୍ଦର ଆସିଛି ପୁଣି ।
ଏହି ଦିନ ଆମେ ସ୍ୱାଧୀନ ହେଲୁ
ବିଦେଶୀ ହାତରୁ ଶାସନ ନେଲୁ ।
ଆମେ ଚଳାଉଛୁ ଦେଶ ଆମରି
ଆମରି ନାଆରେ ଆମେ ନାଉରି ।
ଏଇ ପତାକାକୁ କର ସଲାମ
ଉଡ଼ାଅ ଏହାକୁ ଦେଶ ତମାମ ।

ଟିକିଏ ଭାବିଲେ– ସତରେ ସ୍ୱାଧୀନତାର ସ୍ୱପ୍ନ ଦେଖୁଥିବା ମହାମନୀଷୀମାନେ କେତେ ମହାନ୍ ! ନିଜର ଅଦମ୍ୟ ସାହସ, ଧୈର୍ଯ୍ୟ, କର୍ମକୁଶଳତା, ଏକାଗ୍ରତା, ପାରିଲାପଣିଆରେ ହଜେଇଦେଇ 'ଅସୀଠାରୁ ମସୀ ବଡ଼'ର ପରିଚୟ ଦେଇପାରିଥିଲେ । ସାଂସାରିକ ମୋହମାୟାକୁ ଏଡ଼ାଇ ପ୍ରିୟ ମାତୃକାର ସମ୍ମାନକୁ ଉଚ୍ଚରେ ରଖିବାକୁ ସତତ ପ୍ରୟାସ ଜାରି ରଖିଥିଲେ । ଶାଣିତ କାବ୍ୟକବିତାରେ ବ୍ରିଟିଶବାହିନୀକୁ ପରାସ୍ତ କରି ସ୍ୱାଧୀନତାର ସ୍ୱାଦ ଚଖାଇଥିଲେ ।

ତେଣୁ କହିବାକୁ ଗଲେ, ସ୍ୱାଧୀନତାର ବୀଜମନ୍ତ୍ରରେ ନିଜକୁ ନିମଜ୍ଜିତ କରି ଅନେକ ଓଡ଼ିଆ କବି ସୁନ୍ଦରତମ କବିତା ଲେଖିଛନ୍ତି ଯାହାକି ଚିରକାଳ ବଂଚିରହିଛି ସାହିତ୍ୟ ପୃଥିବୀରେ ।

ଆଜି ଅଗଷ୍ଟ ପନ୍ଦର ଆସିଛି । ପୁରପଲ୍ଲୀଠୁ ଆରମ୍ଭ କରି ସହର– ସବୁଠି ଚାରିଆଡ଼େ ସ୍ୱାଧୀନତାର ତ୍ରିରଙ୍ଗା ପତାକା ଉଡୁଛି ଫରଫର ହୋଇ । ପ୍ରତ୍ୟେକ ସ୍ୱାଧୀନ ମଣିଷ ଖୁସିରେ ବିଭୋର । ପୂର୍ବସୂରୀଙ୍କ ମହନୀୟତାକୁ ସ୍ମରଣ କରି ଜୟଜୟକାର କରୁଛି ।

ସେହି ଜାତୀୟ ପତାକାକୁ ଥରୁଟେ ଚାହିଁ ସ୍ୱାଧୀନତା କଥା ଭାବିଲା ବେଳକୁ କବିତାଟିଏ ଆପେ ଆପେ ଲେଖି ହୋଇଯାଏ –

'ହେ ପ୍ରିୟ ମୋର ତ୍ରିରଙ୍ଗା ପତାକା
ଆଜି ପୁଣ୍ୟ ଅଗଷ୍ଟ ପନ୍ଦରେ
ପବନରେ ଉଡୁଥାଅ ଫରଫର ହୋଇ

ତୁମ ପାଦେ ଜଣାଉଛି ନିର୍ଲିପ୍ତରେ କୋଟି ନମସ୍କାର
ଏକତାର ଗୀତ ଗାଇଗାଇ ..।
ହେ ପ୍ରିୟ ସ୍ୱାଧୀନ ପ୍ରତିଭାଧର
ଲେଖନୀରେ ବିପୁଳ କାବ୍ୟପ୍ରତିଭା
ମାଟିରୁ ଆକାଶ ଯାଏଁ ହୋଇଅଛି ବ୍ୟାପ୍ତି
ଶାଣିତ ଶବ୍ଦର ଝଙ୍କାର
ମୋ ସରଳ ମନ–ପ୍ରାଣେ ଆଣିଅଛି ଦୀପ୍ତି ।'

ଏଲ୍.ଆଇ.ଜି–୧୫, ନୟାପଲ୍ଲୀ ବ୍ରୀଟ୍ କଲୋନୀ
ଭୁବନେଶ୍ୱର– ୭୫୧୦୧୨

# ତୁମରି ସତ୍ତାର କ୍ଷୁଦ୍ର କଣିକା ମୁଁ

ବିଦେଶୀ ଭଞ୍ଜ

ପ୍ରସାରିତ ହାତ ବିନୀତ ମୁଦ୍ରାରେ
ତୁମ ରୂପକୁ ହିଁ ଖୋଜେ
ଭକ୍ତି ସୁରର ଆଲେଖ୍ୟ ତୁମେ ହିଁ
ନାମର ଅମୃତବାଣୀ
କରୁଣାର ସତେ ଅସରା କାହାଣୀ
ମୁକ୍ତିର ଆବାହନୀ
ଜୀବରୁ ଶିବକୁ ଅଭିମନ୍ତ୍ରିତେ
ରୂପାନ୍ତର କରିଥାଅ
ଜ୍ଞାନ ସାଗରରେ ବୁଡ଼ାଇ ସେଥିରେ
ନୂଆ ରୂପ ଖଞ୍ଜିଦିଅ
ନିତ୍ୟ ନୂତନ ଛନ୍ଦେ ଛନ୍ଦେ ତୁମେ
ଅନୁଭବେ ଅନୁପମ
ତୁମରି ଆଶ୍ରାରେ ସମର୍ପିତା ମୁହିଁ
ତୁମ ଶ୍ରଦ୍ଧା ହିଁ ମୋ ପ୍ରେମ
ଅନେକ ଜନ୍ମର ସାକ୍ଷୀ ତୁମେ ସିନା
କରୁଣାର ମହାମନ୍ତ୍ର
ଜନ୍ମ ଜନ୍ମ ଧରି ତପସ୍ୟାର ସିଦ୍ଧି
ଆନନ୍ଦର ବୀଜମନ୍ତ୍ର
ତୁମେ ହିଁ ତପସ୍ୟା ଅସୁମାରି ଆଶା
ତୁମଠାରେ ହୁଏ ପୂର୍ଣ୍ଣ
ଆଶିଷ ତୁମର ଅମୃତ ବର୍ଷାଏ
ପଦ୍ମପାଦେ ହୁଏ ଲୀନ
କାହିଁ କେତେ ରୂପେ ତୁମକୁ ହେଜିଛି
ତୁମ ଅଦର୍ଶନେ ଭୀତ
ତୁମେ ସଂଜୀବନୀ ନିର୍ବାଣ ପଥରେ
ପ୍ରପନ୍ନର ମହାତୀର୍ଥ
ଏ ଜଗତ ମିଥ୍ୟା – ଏ ଜୀବନ ମିଥ୍ୟା
ତୁମେ ଅଗତିର ଗତି
ଦୁର୍ବଳ ପ୍ରାଣର ସଂକଳ୍ପ ଓ ଶ୍ରଦ୍ଧା
ତୁମେ ସେହି ଆଦିଶକ୍ତି
ଅନ୍ଧ ପରାୟେ ବାଟ ଖୋଜୁଥାଏ
ତୁମେ ଭକତିର ଭେଳା
ବାତୁଳ ପରାଣେ ପାରିକର ପ୍ରଭୁ
ଭବ ପାରାବାର ମେଳା
ସରଳତା ପାଇଁ ଠକିଯାଇ ମୁହିଁ
ଭାସୁଛି ଭବଧି ଜଳେ
କୁଟାଖିଅ ପରି ମୋ ସ୍ଥିତି କରୁଣ
ଅସ୍ଥିର କାଳର ବଳେ
ଆଶ୍ରୟ ଲୋଡ଼ଇ ଆଶ୍ରିତ ବ୍ୟାକୁଳେ
ପଦ୍ମ ପାଦେ ଦିଅ ସ୍ଥାନ
ଏ ଜନମ ମୋର ସଫଳତା ପାଉ
ଭୁଲି ମାନ ଅଭିମାନ ।

ନୀଳାଦ୍ରି ବିହାର
ଡୁମୁଡୁମା, ଭୁବନେଶ୍ୱର

# ରାଜା ସାର୍ ରାଜେନ୍ଦ୍ର ନାରାୟଣ ଭଞ୍ଜଦେବ

ଡକ୍ଟର କୃତ୍ତିବାସ ନାୟକ

ଉତ୍କଳର ଗଜପତି ଅନଙ୍ଗଭୀମ ଦେବଙ୍କ ରାଜତ୍ୱ କାଳରେ କନିକା ରାଜ୍ୟ ସୃଷ୍ଟି ହୋଇଥିଲା। ଏକ ଘଡ଼ିସନ୍ଧି ବେଳେ ଆଳି ରାଜକୁମାର ବଂଶୀଧର ଦେବ ପୋଷ୍ୟପୁତ୍ର ହୋଇ ୧୮୯୬ ମସିହାରେ କନିକାର ନାବାଳକ ରାଜା ଭାବେ ଅଭିଷିକ୍ତ ହୋଇଥିଲେ। ସେ ୧୮୮୧ ମାର୍ଚ୍ଚ ମାସ ୨୪ ତାରିଖରେ ଆଳି ରାଜବଂଶରେ ଜନ୍ମ ଗ୍ରହଣ କରିଥିଲେ। ଆଳି ରାଜ୍ୟର ଦେବବଂଶ ଓ କନିକା ରାଜ୍ୟର ଭଞ୍ଜବଂଶର ମିଳିତ ବଂଶ ପରିଚୟ ରଖାଯିବାରୁ ତାଙ୍କର ନୂତନ ନାମ ହେଲା- ରାଜେନ୍ଦ୍ର ନାରାୟଣ ଭଞ୍ଜଦେବ। ୧୯୦୨ ମସିହାରେ ସେ ବିଧିବଦ୍ଧ ଭାବରେ କନିକାର ରାଜ୍ୟଭାର ବହନ କରିଥିଲେ।

ସେତେବେଳକୁ କନିକା ରାଜ୍ୟର ଆର୍ଥିକ ଅବସ୍ଥା ଅତ୍ୟନ୍ତ ଖରାପ ଥିଲା। ତରୁଣରାଜା ରାଜେନ୍ଦ୍ର ନାରାୟଣ ରାଜ୍ୟର ଖରାପ ଅବସ୍ଥାକୁ ଦେଖି ଏଥିପାଇଁ ନୂତନ ଶାସନ ଖସଡ଼ା ପ୍ରସ୍ତୁତ କଲେ। ଏହି କାମରେ ରାଜାଙ୍କର ପୂର୍ବତନ ଗୃହଶିକ୍ଷକ ତଥା ମ୍ୟାନେଜର ବାବୁ-ଜୟରାମ ଦାସ ତାଙ୍କୁ ସହାୟତା କରିଥିଲେ।

ନୟାଗଡ଼ର ରାଜା ଲଡୁକେଶ୍ୱର ମାନଧାତାଙ୍କର କନ୍ୟା ରାଜକୁମାରୀ ରାଜରାଜେଶ୍ୱରୀ ଦେବୀଙ୍କୁ ସେ ୧୮୯୯ ମସିହାରେ ବିବାହ କରିଥିଲେ। କନିକା ରାଜବଂଶର ସଦସ୍ୟମାନେ ସର୍ବଦା କନିକା ରାଜ୍ୟର ମହତ୍ୱ ବୃଦ୍ଧିରେ ଲାଗିରହିଥିଲେ।

ଅସଜଡ଼ା କନିକା ରାଜ୍ୟକୁ ସଜାଡ଼ିବା ଉଦ୍ଦେଶ୍ୟରେ ରାଜା ରାଜେନ୍ଦ୍ର କଟକ କୋଠିରେ ରହିବାକୁ ନିଷ୍ପତ୍ତି ନେଇଥିଲେ। କନିକା ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ସାଧନରେ ମନୋନିବେଶ କରିଥିଲେ। କନିକାର ସ୍ୱାଭିମାନ ରକ୍ଷାକରି ତା'ର ମର୍ଯ୍ୟାଦାକୁ ବୃଦ୍ଧି କରିବା ଲକ୍ଷ୍ୟରେ କାର୍ଯ୍ୟରେ ଲାଗିପଡ଼ିଥିଲେ। ରାସ୍ତା ଘାଟ ବନ୍ଧ ନିର୍ମାଣ, ବିଦ୍ୟାଳୟ ଚିକିତ୍ସାଳୟ ସ୍ଥାପନ, କୂପ-ପୁଷ୍କରିଣୀ ଖନନ, ଜଙ୍ଗଲ ସଂସ୍କାର, ବୃକ୍ଷରୋପଣ, ଚାଷଜମିକୁ ଜଳସେଚନ ବ୍ୟବସ୍ଥା ଏବଂ ଦେବଦେବୀ ପୀଠର ଉନ୍ନତି ସାଧନ ଭଳି ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟମାନ ଆରମ୍ଭ କଲେ। କୃଷି ଓ କୃଷକ ରାଜ୍ୟର ସଂପତ୍ତି ହୋଇଥିବାରୁ ସେ ଚାଷର ଉନ୍ନତି ସକାଶେ ଲୁଣାବନ୍ଧ, ଘେରିବନ୍ଧ ଓ ଆଡ଼ିବନ୍ଧମାନ ନିର୍ମାଣ କଲେ। ଫଳରେ ସମୁଦ୍ର କୂଳେକୂଳେ ବାଲିକୁଣ୍ଡାଠାରୁ ଧାମରା ପର୍ଯ୍ୟନ୍ତ ଏବଂ ଗହୀରମଥାଠାରୁ ବରୁଣେଇ ପର୍ଯ୍ୟନ୍ତ ବିସ୍ତୃତ ଲୁଣାବନ୍ଧ ନିର୍ମିତ ହୋଇପାରିଥିଲା।

ବନ୍ୟା, ବାତ୍ୟା, ମରୁଡ଼ି ଓ ସାମୁଦ୍ରିକ ଜୁଆରରୁ ନିଜ ରାଜ୍ୟ ତଥା ପ୍ରଜାମାନଙ୍କୁ ସୁରକ୍ଷା ଦେବା ଉଦ୍ଦେଶ୍ୟରେ ସେ କନିକା ଉପକୂଳରେ ବନୀପାହି ଓ ଲୁଣାଜଙ୍ଗଲ ସୃଷ୍ଟି କରିଥିଲେ। ଭିତରକନିକାକୁ ଯିବା ଆସିବା କରିବା ପାଇଁ ଜଳପଥକୁ ସେ ସୁଗମ କରିଥିଲେ। କନିକା ରାଜ୍ୟରେ କୁମ୍ଭୀର ହତ୍ୟା ଓ ଅବାଧ ଗଛକଟାକୁ ସେ ନିଷେଧ କରିଥିଲେ। ବନ୍ୟାଜଳ ନିଷ୍କାସନ ପାଇଁ ନାଳମାନ ଖୋଳାଇଥିଲେ।

କନିକାରେ ମଧୁର ଜଳଭଣ୍ଡାର ସୃଷ୍ଟି ପାଇଁ ଅନେକ ବୃହତ୍ ପୁଷ୍କରିଣୀ ଖନନ କରାଇଥିଲେ। ଆଠ ଏକରରୁ ଚବିଶ ଏକର ପର୍ଯ୍ୟନ୍ତ ଗୋଟାଏ ଗୋଟାଏ ପୁଷ୍କରିଣୀର ଆୟତନ ଥିଲା। ଜଳକଷ୍ଟ ଦୂର କରିବାରେ ଏଗୁଡ଼ିକ ସହାୟକ ହେଉଥିଲେ। ରାଜା ରାଜେନ୍ଦ୍ରଙ୍କ ଆଦେଶରେ କନିକା ରାଜ୍ୟ ଜଙ୍ଗଲ ମାହାଲ ନିୟମାବଳୀ-୧୯୩୫ ପ୍ରବର୍ତ୍ତିତ ହୋଇଥିଲା।

ତାଙ୍କ ରାଜତ୍ୱ କାଳରେ କନିକାରେ ପ୍ରାୟ ୨୦୦ ମାଇଲ ରାସ୍ତା ଓ ନଦୀବନ୍ଧ ନିର୍ମାଣ କରାଯାଇଥିଲା । ୧୦୦ଟି ବୃହତ୍ ପୋଖରୀ ଖନନ, ତିନୋଟି ଦାତବ୍ୟ ଚିକିତ୍ସାଳୟ, ପାଞ୍ଚଟି ସଂସ୍କୃତ ଟୋଲ, ଗୋଟିଏ ଉଚ୍ଚ ଇଂରାଜୀ ବିଦ୍ୟାଳୟ ସହିତ ଅନେକଗୁଡ଼ିଏ ପ୍ରାଥମିକ ବିଦ୍ୟାଳୟ ପ୍ରତିଷ୍ଠା ହୋଇଥିଲା ।

ବୃଦ୍ଧବୃଦ୍ଧା ଓ ଛାତ୍ରଛାତ୍ରୀମାନଙ୍କୁ ସାହାଯ୍ୟ ସହଯୋଗ କରିବା ଉଦ୍ଦେଶ୍ୟରେ ସେ କନିକା ଟ୍ରଷ୍ଟ ଗଠନ କରି ଗରିବ, ଅସହାୟ ଲୋକ ତଥା ମହିଳାମାନଙ୍କୁ ଏହି ଟ୍ରଷ୍ଟରୁ ମାଗଣାରେ ଲୁଗାପଟା ଦେଉଥିଲେ । ରାଜ୍ୟର ବିଭିନ୍ନ ସ୍ଥାନରେ ଶସ୍ୟ ଭଣ୍ଡାର ଖୋଲି ତା' ମାଧ୍ୟମରେ ପ୍ରଜାମାନଙ୍କୁ ଅଳ୍ପମୂଲ୍ୟରେ ସେ ଋଣ ଧାନ ଆକାରରେ ଦେବାର ବ୍ୟବସ୍ଥା କରିଥିଲେ । ନିପୁଣ ତଥା ଦକ୍ଷ କର୍ମଚାରୀମାନେ ରାଜାଙ୍କୁ ସହଯୋଗ କରୁଥିଲେ । ସେମାନଙ୍କ ପାଇଁ ସେ ସ୍ୱତନ୍ତ୍ର ବାସଗୃହ ନିର୍ମାଣ କରିଦେଇଥିଲେ । ବିଭିନ୍ନ ସ୍ଥାନରେ ଡାକବଙ୍ଗଳାମାନ ନିର୍ମାଣ କରି ବାହାରୁ ଆସୁଥିବା ଅତିଥିମାନଙ୍କୁ ସେଇଠି ଆତିଥ୍ୟ ପ୍ରଦାନ କରୁଥିଲେ ।

ସର୍ବଗୁଣସମ୍ପନ୍ନ ରାଜା ରାଜେନ୍ଦ୍ର ଜଣେ ସାହସୀ ଶିକାରି ଥିଲେ । ମଣିଷ ପ୍ରତି ବିପଦ ସୃଷ୍ଟିକାରୀ ଜୀବମାନଙ୍କୁ ସେ ଶିକାର କରୁଥିଲେ । ସେ ବିଲିୟାର୍ଡ଼, ଟେନିସ ଓ ବ୍ୟାଡ଼ମିଣ୍ଟନ ଖେଳରେ ପୋଖତ ଖେଳାଳି ଥିଲେ । ଅନେକ ଥର ବିଲାତ ଯାଇ ବିଦେଶୀ କାଇଦା ତଥା ନୂଆଢ଼ଙ୍ଗର ଶାସନପ୍ରଣାଳୀ ଶିଖିଥିଲେ । ସେଠାରେ ବାରିଷ୍ଟରୀ ଶିକ୍ଷା ଗ୍ରହଣ କରି ନିଜକୁ ଜଣେ ଦକ୍ଷ ବ୍ୟକ୍ତିଭାବରେ ଗଢ଼ି ପାରିଥିଲେ । ଜଣେ ଉଚ୍ଚଶିକ୍ଷିତ ଯୁବରାଜ ବିଶେଷ ପ୍ରତିଭାର ଅଧିକାରୀ ହୋଇଥିବାରୁ ତାଙ୍କୁ ଭାରତର ବିଶିଷ୍ଟ ଲୋକମାନେ ଉଚ୍ଚ ଆସନ ଦେଉଥିଲେ । ତେଣୁ ଉତ୍କଳଗୌରବ ମଧୁସୂଦନ ଦାସ ତାଙ୍କ ଉପରେ ଭରସା ରଖିଥିଲେ । ରାଜା ରାଜେନ୍ଦ୍ରଙ୍କଦ୍ୱାରା ଓଡ଼ିଆ ଜାତି ବିଶେଷ ଉପକୃତ ହୋଇପାରିବ ବୋଲି ତାଙ୍କର ବିଶ୍ୱାସ ହୋଇଥିଲା । ତେଣୁ ସେ ଆଜୀବନ ତାଙ୍କର ମୁଖ୍ୟ ପରାମର୍ଶଦାତା ଓ ସଂଚାଳକ ହୋଇ ରହିଥିଲେ ।

ପରିବେଶ ପ୍ରେମୀ ରାଜା ରାଜକନିକାରେ ରାଜୋଦ୍ୟାନରେ ଔଷଧୀୟ ବୃକ୍ଷରୋପଣ କରି ଦର୍ଶନୀୟ କରିଥିଲେ । ଭାରତର ବିଭିନ୍ନ ଅଞ୍ଚଳରୁ ବିଭିନ୍ନ ପ୍ରକାର ଫୁଲ ଓ ଫଳଚାରା ଆଣି ସେ ରାଜକନିକାରେ ରୋପଣ କରିଥିଲେ । କନିକାର ଅର୍ଥନୀତିକୁ ଉନ୍ନତ କରିବା ଉଦ୍ଦେଶ୍ୟରେ ସେ ଲକ୍ଷାଧିକ ନଡ଼ିଆ ଚାରା ବର୍ମାରୁ ଆଣି ରୋପଣ କରିଥିଲେ । ରାସ୍ତାର ଦୁଇକଡ଼ରେ ଥିବା ସେହି ହଜାର ହଜାର ନଡ଼ିଆ ଗଛ ଏବେ ବି ପର୍ଯ୍ୟଟକଙ୍କୁ ଆମୋଦିତ କରେ । ସେ ନିଜେ ମଧ୍ୟ ଗୋଟିଏ ଆଦର୍ଶ କୃଷିକ୍ଷେତ୍ର ପ୍ରସ୍ତୁତ କରିଥିଲେ ।

କନିକା ରାଜ୍ୟର ପ୍ରାଶାସନିକ ସଂସ୍କାର କରି ରାଜା ରାଜେନ୍ଦ୍ର ଅଭୂତପୂର୍ବ ସଫଳତା ହାସଲ କରିଥିଲେ । ୧୯୦୨ରୁ ୧୯୨୨ ମସିହା ମଧ୍ୟରେ ସେ ଶାସନ କ୍ଷେତ୍ରରେ ଅନେକ ପରିବର୍ତ୍ତନ ଆଣି ପାରିଥିଲେ । ତାଙ୍କର କାର୍ଯ୍ୟପ୍ରଣାଳୀ ଓ ପ୍ରତିଭାରେ ମୁଗ୍ଧହୋଇ ବାଗ୍ମୀ ବିଶ୍ୱନାଥ କର ଲେଖିଥିଲେ– 'ବଦାନ୍ୟପ୍ରବର ମାନବ ହିତୈଷୀ କନିକା ରାଜା ଜଣେ ଖୋଲା ହୃଦୟର ମଣିଷ ଥିଲେ । ୧୯୧୩ ମସିହାର ଦୁର୍ଭିକ୍ଷ ସମୟରେ ତାଙ୍କର ଭୂମିକା ପ୍ରଶଂସନୀୟ ଥିଲା । ପ୍ରାକୃତିକ ଦୁର୍ବିପାକ ସମୟରେ ଦୁଃସ୍ଥ ଦୁର୍ଗତମାନଙ୍କୁ ସାହାଯ୍ୟ ଦେବା ପାଇଁ ତାଙ୍କ ଭଣ୍ଡାର ସଦା ଉନ୍ମୁକ୍ତ ଥିଲା ।'

ପ୍ରଶାସନିକ ସଂସ୍କାର ମାଧ୍ୟମରେ ପ୍ରତି ଗ୍ରାମରେ ଜଣେ ଲେଖାଏଁ ମୁଖିଆ ରହିଥିଲେ । କେତୋଟି ଗ୍ରାମକୁ ନେଇ ଗୋଟିଏ ତହସିଲ ଗଠିତ ହୋଇଥିଲା । ତହସିଲଦାର ଖଜଣା ଆଦାୟ ଦାୟିତ୍ୱରେ ଥିଲେ । ଅମିନ ମୋହରିର ତାଙ୍କୁ କାର୍ଯ୍ୟରେ ସହଯୋଗ କରୁଥିଲେ । ବରକନ୍ଦାଜ ତାଙ୍କର ଡାକ ନେବା ଆଣିବା କରୁଥିଲା । କେତୋଟି ତହସିଲକୁ ନେଇ ଗୋଟାଏ ସର୍କଲ ଗଠିତ ହୋଇଥିଲା । ସର୍କଲ ପରିଦର୍ଶକ ତା'ର ଦାୟିତ୍ୱରେ ଥିଲେ । ରାଜ୍ୟର ଉନ୍ନୟନମୂଳକ କାର୍ଯ୍ୟ ତଦାରଖ କରିବା ପାଇଁ ଜଣେ ଉନ୍ନୟନ ଅଧିକାରୀ ନିଯୁକ୍ତ ହୋଇଥିଲେ । ସ୍ୱତନ୍ତ୍ରଭାବରେ ରାଜସ୍ୱ, ଉନ୍ନୟନ, ଜଳସେଚନ, ପୂର୍ତ୍ତ, ଜଙ୍ଗଲ ଓ ମତ୍ସ୍ୟ ବିଭାଗ କନିକା ରାଜ୍ୟରେ କାର୍ଯ୍ୟ କରୁଥିଲା । ଶାନ୍ତି ଶୃଙ୍ଖଳା ରକ୍ଷାପାଇଁ ଥାନା ଓ ଫାଣ୍ଡି ରାଜା ଖୋଲିଥିଲେ । ଜମିଜମାର ସର୍ଭେ ଓ ବନ୍ଦୋବସ୍ତ କାର୍ଯ୍ୟ କରାଇଥିଲେ । ଜଙ୍ଗଲ ଜମିକୁ ଆବାଦ କରି ଚାଷୀମାନଙ୍କୁ ଦିଆଯାଇଥିଲା । ଏହି ନୀତିକୁ ଓଡ଼ିଶା ସରକାର ସ୍ୱାଧୀନତା ପରେ ସମଗ୍ର ରାଜ୍ୟରେ କାର୍ଯ୍ୟକାରୀ କରିଥିଲେ ।

କନିକାରେ ଥିବା ଦେବଦେବୀ ପୀଠ ଓ ମନ୍ଦିରର ସୁପରିଚାଳନା ପାଇଁ ରାଜା ଦେବୋତ୍ତର ବିଭାଗ ପ୍ରତିଷ୍ଠା

କରିଥିଲେ । ରାଜ୍ୟର ସମସ୍ତ ଆୟବ୍ୟୟ ହିସାବ ରାଜା ନିଜେ ତଦାରଖ କରୁଥିଲେ । ଆଧୁନିକ ପ୍ରଣାଳୀରେ ବଜେଟ ପ୍ରସ୍ତୁତ କରି ରାଜ୍ୟର ଉନ୍ନୟନମୂଳକ କାର୍ଯ୍ୟପାଇଁ ଅର୍ଥ ବ୍ୟବସ୍ଥା କରୁଥିଲେ । ପୂର୍ବରୁ ପ୍ରଚଳିତ ବେବର୍ତ୍ତା ପଦକୁ ସେ ଉଠାଇଦେଇ ମ୍ୟାନେଜରଙ୍କ ଦ୍ୱାରା ଉନ୍ନୟନ କାର୍ଯ୍ୟ ତଦାରଖ କରାଇଥିଲେ । ରାଜସ୍ୱ ବିଭାଗର ମୁଖ୍ୟ ଭାବରେ ଦେବାନ ରହିଥିଲେ । ତେଣୁ ରାଜା ସୁରୁଖୁରୁରେ ରାଜ୍ୟ ପରିଚାଳନା କରି ପାରୁଥିଲେ । ତାଙ୍କର ଶାସନ ଶୈଳୀ ଓ ସଂସ୍କାରମୂଳକ କାର୍ଯ୍ୟ ଅତ୍ୟନ୍ତ ଉଚ୍ଚକୋଟୀର ଥିଲା ।

କନିକା ରାଜ୍ୟର ସାହିତ୍ୟ, ସଂଗୀତ ଓ କଳାର ବିକାଶ ତଥା ପ୍ରସାର ଦିଗରେ ରାଜା ରାଜେନ୍ଦ୍ର ଅତ୍ୟନ୍ତ ଆଗ୍ରହୀ ଥିଲେ । ତାଙ୍କଦ୍ୱାରା ପ୍ରତିଷ୍ଠିତ କନିକା ରାସ ପାର୍ଟି ସମଗ୍ର ଓଡ଼ିଶାରେ ସୁନାମ ଅର୍ଜନ କରିଥିଲା । ରାଜାଙ୍କ ପ୍ରୋତ୍ସାହନ ପାଇଁ ଭକ୍ତକବି ଉଜିରବେଗ ଓ କବିରତ୍ନ ଦାମୋଦର ମିଶ୍ର ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ଋଦ୍ଧିମନ୍ତ କରିଛନ୍ତି ।

ଇଂରେଜ ସରକାର ଅମଳରେ ମଧ୍ୟ କନିକାରାଜା ନିଜର ବୁଦ୍ଧି, ଜ୍ଞାନ ଓ ବ୍ୟକ୍ତିତ୍ୱ ବଳରେ ଜଣେ ପ୍ରଭାବଶାଳୀ ଥିଲେ । ତାଙ୍କର ଖ୍ୟାତି ଓ ପ୍ରତିଷ୍ଠା ବଂଗ ସରକାର, ବିହାର ଓ ଓଡ଼ିଶା ସରକାରରେ ରହିଥିଲା । ସମୟ ଏମିତି ଥିଲା– କନିକା ରାଜାଙ୍କ ଇଙ୍ଗିତରେ ଓଡ଼ିଶା ରାଜ୍ୟ ଶାସନ ଚାଲୁଥିଲା । ସେ ଜଣେ ଉଚ୍ଚଶିକ୍ଷିତ, ବହୁଦର୍ଶୀ, ଅଭିଜ୍ଞ , ମର୍ଯ୍ୟାଦାବନ୍ତ ରାଜନେତା ଥିବାରୁ ତାଙ୍କୁ ଭାରତର ରାଜନ୍ୟବର୍ଗ ସମ୍ମାନ ଜଣାଇଥିଲେ । ବିଚକ୍ଷଣ ବୁଦ୍ଧି ବଳରେ ସେ ବିହାର–ଓଡ଼ିଶା ସରକାର ଓ ଭାରତ ସରକାରରେ ବିଭିନ୍ନ ଉଚ୍ଚ ପଦ ଓ ପଦବୀରେ ରହି ନିଜର ପାରଦର୍ଶିତା ପ୍ରଦର୍ଶନ କରିଥିଲେ ।

ଇଂରେଜ ଶାସନ କାଳରେ ଓଡ଼ିଶାର ସ୍ଥିତି ଅତ୍ୟନ୍ତ ଦୁର୍ବଳ ଥିଲା । ଓଡ଼ିଆ ଭାଷାଭାଷୀମାନେ ବିଭିନ୍ନ ରାଜ୍ୟରେ ଦୟନୀୟ ଅବସ୍ଥାରେ ଖେଳେଇହୋଇ ରହିଥିଲେ । ଓଡ଼ିଶା ଡିଭିଜନ ବଂଗଶାସନ ଅଧୀନରେ ଥିଲା । କ୍ଷମତାରେ ଥିବା ବଙ୍ଗାଳିମାନେ ସମଗ୍ର ଓଡ଼ିଶାକୁ ହାତମୁଠାରେ ରଖି ସକଳ ପ୍ରକାର ସୁଖ ସୁବିଧା ନେଇ ଯାଉଥିଲେ । ଅନ୍ୟାୟରେ ଅତ୍ୟାଚାର କରି ସେମାନେ ଅଶିକ୍ଷିତ ଓଡ଼ିଆମାନଙ୍କୁ କେବଳ ଶୋଷଣ କରିବାରେ ଲାଗି ରହିଥିଲେ । ମଧୁବାବୁଙ୍କର ଡାହାଣ ହାତ ଭାବରେ ସେ କାମକରି ଉତ୍କଳ ସମ୍ମିଳନୀର କର୍ଣ୍ଣଧାର ହୋଇଥିଲେ । ୧୯୦୨ ମସିହାରେ ମଧୁବାବୁ କଂଗ୍ରେସ ସହ ସବୁ ସଂପର୍କ ତୁଟେଇ ଦେଇ ରାଜା ରାଜେନ୍ଦ୍ରଙ୍କ ସହାୟତାରେ ସ୍ୱତନ୍ତ୍ର ଓଡ଼ିଶା ରାଜ୍ୟ ଗଠନ କରିବାର ସ୍ୱପ୍ନ ଦେଖୁଥିଲେ । ଏଭଳି ଏକ ବୃହତ୍ କାର୍ଯ୍ୟର ସଫଳତା ପାଇଁ ଜଣେ ଦକ୍ଷ, ଶିକ୍ଷିତ ତଥା ସାହସୀ ନେତାଙ୍କର ଆବଶ୍ୟକତାକୁ ରାଜା ରାଜେନ୍ଦ୍ର ପୂରଣ କରିପାରିଥିଲେ । ଏହି କାର୍ଯ୍ୟରେ ଯେତେ ଅର୍ଥ ଦରକାର ହେଉଥିଲା, ତା'ର ମୂଳଉତ୍ସ ଭାବେ କନିକା ରାଜା ରାଜେନ୍ଦ୍ର ହିଁ ରହିଥିଲେ ।

ମଧୁବାବୁଙ୍କ ଉତ୍କଳ ଟାନେରୀ ଶିଳ୍ପକୁ ସମ୍ଭାଳି ରଖିବାକୁ ରାଜା ରାଜେନ୍ଦ୍ର ଯଥା ସମ୍ଭବ ଚେଷ୍ଟା କରିଥିଲେ । ଓଡ଼ିଶାର ପ୍ରାଣକେନ୍ଦ୍ର କଟକ ସହରକୁ ସରସ ସୁନ୍ଦରକରି ଗଢି ତୋଳିବାରେ ତାଙ୍କର ଅବଦାନକୁ ଭୁଲିହେବ ନାହିଁ । ୧୯୦୩ ମସିହାରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ପାଇଁ ଗଠିତ ଆବାହକ କମିଟିର ସେ ସଭାପତି ଭାବେ, ପୁଣି ୧୯୦୬ ମସିହାରେ ଅନୁଷ୍ଠିତ ଚତୁର୍ଥ ଅଧିବେଶନର ସେ ସଭାପତି ହୋଇ ନିଜ କର୍ତ୍ତବ୍ୟକୁ ସୁଚାରୁରୂପେ ସଂପାଦନ କରିଥିଲେ । ୧୯୦୭ ମସିହାରେ ସେ ମଧୁବାବୁଙ୍କ ସହିତ ଇଂଲଣ୍ଡ ଓ ଇଉରୋପ ଯାତ୍ରା କରିଥିଲେ । ସେଠାରେ ହାଉସ ଅଫ୍ କମନ୍ସ ସଭାର ସଭ୍ୟମାନଙ୍କୁ ସେ ଓଡ଼ିଆ ଜାତିର ଶୋଚନୀୟ ଅବସ୍ଥା କଥା ବୁଝାଇ ଦେଇପାରିଥିଲେ । ରେଭେନ୍ସା ସାହେବ ଓ ଭାରତ ସଚିବ ଲର୍ଡ଼ ମର୍ଲେଙ୍କ ସହିତ ସାକ୍ଷାତ କରି ଦେଶମିଶ୍ରଣ ବିଷୟରେ ଆଲୋଚନା କରିଥିଲେ । ସେହି ସମୟରେ କନିକା ରାଜା ଉତ୍କଳ ସମ୍ମିଳନୀର ସଭାପତି ଥିଲେ । ନିଜେ ମଧୁବାବୁ ଥିଲେ ସଂପାଦକ । ଦୀର୍ଘ ତିନିମାସ କାଳ ସେମାନେ ବିଲାତରେ ରହି ଉଏଲବୀ କମିଶନ ଆଗରେ ଭାଷା ଭିତ୍ତିରେ ଏକ ସ୍ୱତନ୍ତ୍ର ଓଡ଼ିଶା ରାଜ୍ୟ ଗଠନ ସପକ୍ଷରେ ସାକ୍ଷ୍ୟ ପ୍ରଦାନ କରିଥିଲେ । ଲଣ୍ଡନରୁ ପ୍ରକାଶିତ ସମ୍ବାଦପତ୍ରରେ ଏହି ସମସ୍ତ ବିବରଣୀ ସ୍ଥାନ ପାଇଥିଲା ।

୧୯୧୦ ମସିହାରେ ସେ ଦ୍ୱିତୀୟ ଥର ଇଂଲଣ୍ଡ ଯାତ୍ରାକରି ଲିଙ୍କନ୍ସ ଇନ୍ କଲେଜରେ ବାରିଷ୍ଟରୀ ଶିକ୍ଷାଲାଭ କରିଥିଲେ । କନିକା ରାଜା ଥିଲେ–ଜ୍ଞାନ ପିପାସୁ । ଓକିଲାତି ବ୍ୟବସାୟ ତାଙ୍କର ଉଦ୍ଦେଶ୍ୟ ନଥିଲା । ସେ ବିଲାତରୁ ବାରିଷ୍ଟରୀ

ପାସ୍‌କରି ଅନ୍ୟମାନଙ୍କ ପାଇଁ ଦିଗ୍‌ଦର୍ଶକ ସାଜିଥିଲେ। ଏହି ଶିକ୍ଷା ଗ୍ରହଣ କରିବାରେ ସେ ଥିଲେ ପ୍ରଥମ ଓଡ଼ିଆ। ସେହି ସମୟ ମଧ୍ୟରେ ଲଣ୍ଡନରେ ଅନୁଷ୍ଠିତ ସମ୍ରାଟଙ୍କ ରାଜମୁକୁଟ ଉତ୍ସବରେ ତାଙ୍କୁ ସମ୍ମାନ ସୂଚକ 'ରାଜା' ଉପାଧିରେ ଭୂଷିତ କରାଯାଇଥିଲା। ନିଜର ଜ୍ଞାନ ଗରିମା, ଶକ୍ତି, ସାହସ, ବିଦ୍ୟା ବୁଦ୍ଧି, ଦକ୍ଷତା, ଅଭିଜ୍ଞତା ଓ ଦୂରଦୃଷ୍ଟି ବଳରେ ରାଜା ରାଜେନ୍ଦ୍ର ବଂଗ କାଉନ୍‌ସିଲର ସଦସ୍ୟ ଭାବେ ୧୯୧୦ ମସିହାରେ କାର୍ଯ୍ୟଭାର ଗ୍ରହଣ କଲେ। ଉତ୍କଳ ସମ୍ମିଳନୀରେ ଗ୍ରହଣ କରାଯାଉଥିବା ପ୍ରସ୍ତାବଗୁଡ଼ିକୁ କାର୍ଯ୍ୟକାରୀ କରିବା ଦିଗରେ ସକଳ ପ୍ରକାର ଚେଷ୍ଟା କରିଥିଲେ।

୧୯୧୧ ମସିହାରେ ପଞ୍ଚମ ଜର୍ଜଙ୍କ ଦିଲ୍ଲୀ ଦରବାର ବସାଇଥିଲେ। ସେହି ଅବସରରେ ବଂଗ ପ୍ରେସିଡ଼େନ୍ସିରୁ ବିହାରକୁ ଅଲଗା କରିଦିଆଯାଇଥିଲା। ୧୯୧୨ ମସିହାରେ ଓଡ଼ିଶା ଡିଭିଜନକୁ ବିହାର ରାଜ୍ୟ ସହିତ ରଖାଗଲା। ତେଣୁ ରାଜା ରାଜେନ୍ଦ୍ର ବିହାର–ଓଡ଼ିଶା ବିଧାନ ପରିଷଦର ସଭ୍ୟ ରହିଲେ। କେବଳ କନିକାବାସୀ ନୁହନ୍ତି, ବରଂ ସେ ସମଗ୍ର ଓଡିଆ ଜାତିର ବିକାଶ ପାଇଁ ଚିନ୍ତିତ ଥିଲେ। ଓଡ଼ିଆମାନଙ୍କର ଦୁଃଖ ଦୁର୍ଦ୍ଦଶା ସହିତ ସେ ନିବିଡ଼ ଭାବରେ ପରିଚିତ ଥିଲେ। ସେ ନିଜେ ଅନୁଭବ କରିଥିଲେ–ଓଡ଼ିଆ ଭାଷାଭାଷୀମାନଙ୍କୁ ଗୋଟିଏ ରାଜ୍ୟରେ ନ ରଖିଲେ, ସେମାନଙ୍କର ଉନ୍ନତି ହେବା ସମ୍ଭବ ନୁହେଁ। ତେଣୁ ସେ ମଧୁବାବୁଙ୍କ ସହିତ ସହମତ ହୋଇ ସ୍ୱତନ୍ତ୍ର ଓଡ଼ିଶା ରାଜ୍ୟ ଗଠନ ହେବାଯାଏଁ ଲାଗି ରହିଥିଲେ।

୧୯୧୨ ଜୁଲାଇ ମାସରେ ତାଙ୍କ ସଭାପତିତ୍ୱରେ କଟକଠାରେ ଏକ ବିଶେଷ ବୈଠକ ଅନୁଷ୍ଠିତ ହୋଇଥିଲା। ସେଥିରେ ନିଷ୍ପତ୍ତି ନିଆଯାଇଥିଲା, ଓଡ଼ିଆମାନଙ୍କର ସ୍ୱାର୍ଥର ସୁରକ୍ଷା ନିମନ୍ତେ ଭାଇସ୍‌ରାୟ ଓ ଗଭର୍ଣ୍ଣରଙ୍କୁ ସ୍ମାରକପତ୍ର ପ୍ରଦାନ କରାଯିବ। ବିହାର–ଓଡ଼ିଶା ସରକାରରେ ଓଡ଼ିଶା ପାଇଁ ପୃଥକ ପ୍ରତିନିଧିତ୍ୱ ବ୍ୟବସ୍ଥା କରିବାକୁ ଦାବୀ କରାଯିବ। ଏହାର ଆବଶ୍ୟକତା ସଂପର୍କରେ ସରକାରଙ୍କୁ ଅବଗତ କରାଇ ଦିଆଯିବ।

କଟକରେ ଥିବା କନିକା ରାଜବାଟୀ ଉତ୍କଳ ସମ୍ମିଳନୀର ମୁଖ୍ୟ କାର୍ଯ୍ୟାଳୟ ଭାବେ କାର୍ଯ୍ୟ କରୁଥିଲା। କନିକା ରାଜାଙ୍କ ବ୍ୟକ୍ତିତ୍ୱ ଏବଂ ପ୍ରତିଭାକୁ ଲକ୍ଷ୍ୟକରି ଭାରତର ବିଶିଷ୍ଟ ନେତୃମଣ୍ଡଳୀ ତାଙ୍କୁ ପ୍ରତ୍ୟେକ କଥାରେ ଗୁରୁତ୍ୱ ଦେଉଥିଲେ। କନିକା ରାଜା ଉତ୍କଳ ସମ୍ମିଳନୀର ବିଶିଷ୍ଟ ପୁରୋଧା ଓ ବଳିଷ୍ଠ ନେତା ଥିଲେ। ତାଙ୍କ ନେତୃତ୍ୱକୁ ସମଗ୍ର ଓଡ଼ିଶାର ରାଜା, ମହାରାଜା, ଜମିଦାର, ନେତା, ଲେଖକ, ସାମ୍ବାଦିକମାନେ ସ୍ୱୀକାର କରିନେଉଥିଲେ। ତେଣୁ ସେ ସ୍ୱଳ୍ପକାଳ ମଧ୍ୟରେ ବିଭିନ୍ନ ଉଚ୍ଚ ପଦପଦବୀରେ ଆସୀନ ହୋଇ ପାରିଥିଲେ। ବିହାର–ଓଡ଼ିଶା ରାଜ୍ୟର ସେ ପ୍ରଥମ କାର୍ଯ୍ୟନିର୍ବାହୀ ପରିଷଦର ପ୍ରଥମ ଓଡ଼ିଆ ସଭ୍ୟ ହୋଇପାରିଥିଲେ। ଭାରତ ସରକାରଙ୍କ ତରଫରୁ ସମ୍ମାନଜନକ ସାର୍ ଉପାଧି, ନାଇଟ୍ ଉପାଧି, ରାଜାବାହାଦୂର, ଓ.ବି.ଆଇ ଓ କେ.ସି.ଆଇ.ଇ ଉପାଧି ମଧ୍ୟ ପ୍ରାପ୍ତ ହୋଇଥିଲେ। ସେତେବେଳେ ଅନ୍ୟ ଯେଉଁମାନେ ଉଚ୍ଚ ସମ୍ମାନରେ ସମ୍ମାନିତ ହୋଇଥିଲେ, ସେମାନଙ୍କ ମଧ୍ୟରେ ଥିଲେ–ମଧୁସୂଦନ ଦାସ, ସି.ଆଇ.ଇ, ବାମଣ୍ଡାର ରାଜା ସାର୍ ବାସୁଦେବ ସୁଢ଼ଳ ଦେବ, କେ.ସି.ଆଇ.ଇ, ମୟୂରଭଂଜର ରାଜା ଶ୍ରୀରାମଚନ୍ଦ୍ର ଭଂଜ, କେ.ସି.ଆଇ.ଇ, ପାରିକୁଦର ରାଜା ଚନ୍ଦ୍ରଶେଖର ଦେବ, ସି.ଆଇ.ଇ, କଳାହାଣ୍ଡିର ରାଜା ବ୍ରଜମୋହନ ଦେବ, ଓ.ବି ଆଇ। ନାଇଟ୍ ଉପାଧି ଲାଭ କରିବାରେ ରାଜା ରାଜେନ୍ଦ୍ର ହେଉଛନ୍ତି– ପ୍ରଥମ ରାଜା। କେବଳ ସେତିକି ନୁହେଁ ସେ ଓଡ଼ିଶାର ରାଜା ଓ ଜମିଦାର ସଂଘର ସଭାପତି ମଧ୍ୟ ଥିଲେ। ଇଂରାଜୀ ଭାଷାରେ ତାଙ୍କର ଦକ୍ଷତା ଥିବାରୁ ସେ ସମସ୍ତ କାର୍ଯ୍ୟକୁ ସୁଚାରୁରୂପେ ସଂପନ୍ନ କରିପାରୁଥିଲେ। ତାଙ୍କର କାର୍ଯ୍ୟଦକ୍ଷତା ଓ ଜ୍ଞାନ ଗରିମାକୁ ଲକ୍ଷ୍ୟକରି ତାଙ୍କୁ ଭାରତୀୟ ବ୍ୟବସ୍ଥାପକ ସଭାର ସଦସ୍ୟ ଭାବେ ନିଯୁକ୍ତି ଦିଆଯାଇଥିଲା। ପାଟଣା ବିଶ୍ୱବିଦ୍ୟାଳୟ କମିଟି ସଦସ୍ୟ ଏବଂ ଫେଲୋ, ଲଣ୍ଡନସ୍ଥିତ ରୟାଲ ଏସିଆଟିକ୍ ସୋସାଇଟର ସଦସ୍ୟ ଏବଂ ଫେଲୋ, ବିହାର–ଓଡ଼ିଶା ରାଜ୍ୟର ଅର୍ଥମନ୍ତ୍ରୀ, ସ୍ୱଳ୍ପକାଳ ପାଇଁ ସେ ଲାଟସାହେବ ଦାୟିତ୍ୱ ବହନ କରିଥିଲେ। ୧୯୧୬ ମସିହାରୁ ୧୯୨୨ ମସିହା ପର୍ଯ୍ୟନ୍ତ ସେ ଇମ୍ପେରିୟାଲ କାଉନ୍‌ସିଲ ବା ଭାରତୀୟ ସଂସଦର ସଦସ୍ୟ ଥିଲେ। ସେଥିରେ ସେ ବହୁ ମୂଲ୍ୟବାନ ପ୍ରସ୍ତାବ ଦେଇ ସଂସଦର ଗରିମା ବୃଦ୍ଧି କରିଥିଲେ। ଜଣେ ନିପୁଣ ବିତର୍କକାରୀ ଭାବେ ସେ ନିଜସ୍ୱ ପରିଚୟ ସୃଷ୍ଟି କରିପାରିଥିଲେ। ଏହାବ୍ୟତୀତ ସେ ଅନେକଗୁଡ଼ିଏ ପଦ ପଦବୀ ଦାୟିତ୍ୱ ମଧ୍ୟ ତୁଲାଇଥିଲେ।

୧୯୧୪ ମସିହାରେ ପୁରୀ ଗଜପତି ବୀରକିଶୋର ଦେବ ରୋଗଶଯ୍ୟାରେ ପଡ଼ିଥିଲେ। ତାଙ୍କର ପାଟରାଣୀ ସୂର୍ଯ୍ୟମଣି ପାଟ୍ଟମହାଦେବୀ ଅସହାୟ ଅବସ୍ଥାରେ ମଧୁବାବୁଙ୍କଠାରୁ ଆଇନଗତ ସାହାଯ୍ୟ ମାଗିଲେ। ସେତେବେଳକୁ ଶ୍ରୀମନ୍ଦିର ଦାୟିତ୍ୱ ଇଂରେଜ ସରକାର ନିଜ ହାତକୁ ନେଇଯାଇଥିଲେ। ମନ୍ଦିରର ନୀତି ଚଳାଇବାକୁ ମହାରାଣୀ ଅକ୍ଷମ ହୋଇପଡ଼ିଥିଲେ। ୧୯୧୪ ଅଗଷ୍ଟ ୧୯ତାରିଖ ଦିନ ମହାରାଣୀ କନିକା ରାଜାଙ୍କୁ ପତ୍ରଲେଖି ନିଜର ଦୁଃଖ ଜଣାଇଲେ। କନିକା ରାଜା ରାଜେନ୍ଦ୍ର ମହାରାଣୀଙ୍କ ଅଭାବ ଅସୁବିଧା କଥା ବୁଝି ଶ୍ରୀମନ୍ଦିରର ରୀତି–ନୀତିକୁ ସୁରକ୍ଷା ଦେବାପାଇଁ ଆଗେଇ ଆସି ସେବା–ପୂଜାର ସୁବ୍ୟବସ୍ଥା କରିଥିଲେ। କନିକା ରାଜପରିବାର ତରଫରୁ ଭୋଗପାଇଁ ଜମିଖଞ୍ଜା ବ୍ୟବସ୍ଥା କରିଦେଲେ। ସେହିଦିନଠାରୁ କନିକା ରାଜାଙ୍କ ଇଚ୍ଛାକୁ ସମ୍ମାନ ଜଣାଇ କାନିକା ପ୍ରସାଦର ବ୍ୟବସ୍ଥା ଶ୍ରୀମନ୍ଦିରରେ ପ୍ରଚଳିତ ହୋଇଆସୁଛି। ମଧୁବାବୁ ଓ ରାଜା ରାଜେନ୍ଦ୍ରଙ୍କ ମିଳିତ ଚେଷ୍ଟାରେ ପୁରୀ ଶ୍ରୀମନ୍ଦିର ତଥା ଗଜପତିଙ୍କର ଦୁଃଖ ଦୂର ହୋଇପାରିଥିଲା।

୧୯୧୭ ମସିହାରେ ମଧୁବାବୁଙ୍କ ସଂପାଦନାରେ ଉତ୍କଳ ସମ୍ମିଳନୀର ମୁଖପତ୍ର 'ଦି ଓଡ଼ିଆ' ନାମରେ ଇଂରାଜୀ ସାପ୍ତାହିକୀ ପତ୍ରିକା ପ୍ରକାଶ ପାଇଲା। ସେଥିପାଇଁ କନିକା ରାଜା ହିଁ ଅର୍ଥ ଯୋଗାଇ ଦେଉଥିଲେ। ବିଖ୍ୟାତ ଓଡ଼ିଆ ଅଭିଧାନ ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ପ୍ରଥମ ଓ ଷଷ୍ଠ ଖଣ୍ଡର ପ୍ରକାଶନ ଭାର ସେ ବହନ କରିଥିଲେ। ୧୯୨୨ ମସିହାରେ ସେ ରେଭେନ୍ସା କଲେଜର କନିକା ଲାଇବ୍ରେରୀ ପ୍ରତିଷ୍ଠା କରିଥିଲେ। ଏଥିପାଇଁ ସେ ଏକକାଳୀନ ପଚାଶ ହଜାର ଟଙ୍କା ପ୍ରଦାନ କରିଥିଲେ। ଏଥିରେ ପୃଥିବୀର ବହୁ ମୂଲ୍ୟବାନ ଦୁଷ୍ପ୍ରାପ୍ୟ ପୁସ୍ତକ ସ୍ଥାନିତ ହୋଇଥିଲା।

ପାଟଣା ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କମିଟିର ଜଣେ ସମ୍ମାନୀୟ ସଦସ୍ୟଭାବରେ ଥାଇ ରାଜା ରାଜେନ୍ଦ୍ର ପରେ ସିନେଟ ସଦସ୍ୟ ଭାବେ କାର୍ଯ୍ୟ କରିଥିଲେ। ତାଙ୍କ ଚେଷ୍ଟାରେ ରେଭେନ୍ସା କଲେଜ ନାମରେ ଓଡ଼ିଶାରେ ପାଟଣା ବିଶ୍ୱବିଦ୍ୟାଳୟର ଗୋଟିଏ ଶାଖା ଖୋଲିଥିଲା।

ଓଡ଼ିଆ ଜାତିର ଶ୍ରେଷ୍ଠ ନାୟକ ରାଜେନ୍ଦ୍ର ନାରାୟଣଙ୍କର ବ୍ୟକ୍ତିତ୍ୱ ଏତେ ତେଜିୟାନ ଥିଲା ଯେ, ତାଙ୍କୁ ଓଡ଼ିଶାର ଭାଗ୍ୟ ନିର୍ଦ୍ଧାରକ ଭାବେ ସମସ୍ତେ ମାନି ନେଉଥିଲେ। ଭାରତ ଇତିହାସରେ ସେ ଜଣେ ଆକର୍ଷଣୀୟ ବ୍ୟକ୍ତିତ୍ୱ ଥିଲେ। ଅର୍ଥବଳ ବା କ୍ଷମତାବଳର ଅଧିକାରୀ ହୋଇଥିଲେ ବି ମାତୃଭୂମି ପ୍ରତି ତାଙ୍କର ବିଶେଷ ଅନୁରାଗ ଥିଲା। ଓଡ଼ିଶା ପ୍ରଜାସ୍ୱତ୍ୱ ବିଲ ପାସ୍ କରାଇ ସେ ଓଡ଼ିଶାର ପ୍ରଜା, ରୟତ ଓ ଭୂମି ମାଲିକମାନଙ୍କର ପାରଂପରିକ ଅଧିକାର ରକ୍ଷାକରି ପାରିଥିଲେ। ନଚେତ ବଙ୍ଗାଳି ଜମିଦାରମାନେ ଚକ୍ରାନ୍ତ କରି ଓଡ଼ିଶାର ପ୍ରଜାମାନଙ୍କୁ ଡଳିତଳାନ୍ତ କରିଦେଇଥାନ୍ତେ। ମଧୁବାବୁଙ୍କ ପରାମର୍ଶରେ ସେ ଏହି କାର୍ଯ୍ୟଟି କରି ସଫଳତା ହାସଲ କରିଥିବାରୁ ଓଡ଼ିଶା ରାଜ୍ୟ ମହାବିପଦରୁ ରକ୍ଷା ପାଇଗଲା।

କନିକା ରାଜା ରାଜେନ୍ଦ୍ରଙ୍କ ସହିତ ପଣ୍ଡିତ ଜବାହରଲାଲ ନେହେରୁ, ମହମ୍ମଦ ଅଲ୍ଲୀ ଜିନ୍ନା, ମଦନ ମୋହନ ମାଲବ୍ୟ, ସୁରେନ୍ଦ୍ରନାଥ ବାନାର୍ଜୀ, ସି.ରାଘବାଚାରୀ, ଗୋପାଳକୃଷ୍ଣ ଗୋଖଲେ ପ୍ରଭୃତି ନେତାମାନଙ୍କ ସହିତ ନିବିଡ଼ ସଂପର୍କ ଥିଲା। ସମ୍ବିଧାନ ବିଶ୍ଳେଷଣ ଆଇନ ପ୍ରଣୟନ କ୍ଷେତ୍ରରେ ତାଙ୍କର ପ୍ରଗାଢ ଜ୍ଞାନ ଓ ଦୀର୍ଘ ପ୍ରଶାସନିକ ଅଭିଜ୍ଞତା ଥିଲା।

ଘୋଡ଼ାଗାଡ଼ିଠାରୁ ଆରମ୍ଭ କରି ସେ ଉଡ଼ାଜାହାଜରେ ବୁଲିବା ସଉକ ରଖିଥିଲେ। ତାଙ୍କ ସମୟରେ କନିକାର ସମସ୍ତ ଗୁରୁତ୍ୱପୂର୍ଣ୍ଣ ସ୍ଥାନମାନଙ୍କରେ ଟେଲିଫୋନ୍ ବ୍ୟବସ୍ଥା ଥିଲା। କନିକାରୁ ଲଣ୍ଡନ ପର୍ଯ୍ୟନ୍ତ ତାଙ୍କର ଖ୍ୟାତି ଓ ଖାତିରି ରହିଥିଲା। ତାଙ୍କର ସଦ୍‌ଗୁଣକୁ ଲକ୍ଷ୍ୟକରି ମଧୁବାବୁ ନିଜେ ସାରଥୀ ହୋଇ ଉତ୍କଳ ମୁକ୍ତି ଆନ୍ଦୋଳନ ରୂପକ ମହାଭାରତ ଯୁଦ୍ଧରେ କନିକା ରାଜାଙ୍କୁ ଅର୍ଜୁନ ରୂପେ ସଜାଇ ଦେଇଥିଲେ। ନିଜର ପ୍ରତିଷ୍ଠା ଅପେକ୍ଷା ରାଜା ନିଜରାଜ୍ୟର ପ୍ରତିଷ୍ଠାକୁ ଅଧିକ ଗୁରୁତ୍ୱ ଦେଉଥିବାରୁ କନିକା ନାମରେ ଅନେକ ଅନୁଷ୍ଠାନ ପ୍ରତିଷ୍ଠା କରିଛନ୍ତି। ସେ କନିକା ରାଜସିଂହାସନ ଉପରେ ଲେଖିଦେଇ ଥିଲେ–ଏହା କନିକାର ପ୍ରଜାମାନଙ୍କର ଦାନ। କେବଳ ଉଦାର ହୃଦୟର ରାଜା ହିଁ ଏଭଳି ସ୍ୱୀକାରୋକ୍ତି ଦେଇପାରନ୍ତି। ତାଙ୍କର ତ୍ୟାଗ ଓ ଅବଦାନକୁ ସ୍ମରଣ କରାଇବା ଉଦ୍ଦେଶ୍ୟରେ କଟକ ସହରର କେନ୍ଦ୍ର ସ୍ଥଳରେ କନିକା କୋଠି ଥିବା ସ୍ଥାନର ନାମ କନିକା ଛକ ନାମରେ ନାମିତ କରାଯାଇଛି।

କନିକାର ପୁରାତନ ରାଜଧାନୀ ରିଘାଗଡ଼ ଏକ ନଦନଦୀ ବେଷ୍ଟିତ ଅଞ୍ଚଳରେ ଥିବାରୁ ରାଜା ପଦ୍ମନାଭ ଭଞ୍ଜ ରାଜକନିକାରେ

ନୂଆ ରାଜଧାନୀର ମୂଳଦୁଆ ପକାଇଥିଲେ । ରାଜା ରାଜେନ୍ଦ୍ର ଏହି ନୂଆ ରାଜଧାନୀକୁ ଏକ ସୁନ୍ଦର ସହର ଭାବେ ଗଢ଼ି ତୋଳିବାରେ ଲାଗି ପଡ଼ିଥିଲେ । ଫଳରେ ସେଠାରେ ଡାକଘର, ଚିକିତ୍ସାଳୟ, ବିଦ୍ୟାଳୟ, ଡାକବଙ୍ଗଳା, କଚେରୀ, ଟେଲିଫୋନ ସୁବିଧା, ବୃହତ୍ ଚନ୍ଦନ ପୁଷ୍କରିଣୀ, ଉଦ୍ୟାନ ଓ କର୍ମଚାରୀଙ୍କ ପାଇଁ ବାସଗୃହ ନିର୍ମାଣ କରିଥିଲେ । ରାଜକନିକାର ଆଧୁନିକ ରାଜବାଟୀକୁ ୧୯୦୯ ମସିହାରେ ରାଜା ରାଜେନ୍ଦ୍ର ନିର୍ମାଣ କରାଇଥିଲେ । କାରୁକାର୍ଯ୍ୟପୂର୍ଣ୍ଣ ମନୋରମ ରାଜପ୍ରାସାଦ ଲଣ୍ଡନ ନଗରୀର ବ୍ରିଟିଶ୍ ରାଜପ୍ରାସାଦ ଛାୟାରେ ନିର୍ମିତ ହୋଇଛି । ଅପୂର୍ବ ତଥା ଚମତ୍କାର ଶୈଳୀରେ ନିର୍ମିତ ଏହି ରାଜପ୍ରାସାଦଟି ପର୍ଯ୍ୟଟକ ଓ ଦର୍ଶକମାନଙ୍କୁ ଆମୋଦିତ କରିଥାଏ । ଏହା ରାଜକନିକାର ଗର୍ବ ଓ ଗୌରବର ପ୍ରତୀକ ଭାବେ ଆଜି ବି ଦଣ୍ଡାୟମାନ । ବିଭିନ୍ନ ସମୟରେ ବହୁ ବିଶିଷ୍ଟ ଅତିଥିମାନେ ରାଜକନିକା ରାଜପ୍ରାସାଦରେ ରହି ଆତିଥ୍ୟ ଲାଭ କରିଛନ୍ତି । କବିବର ରାଧାନାଥ ରାୟଙ୍କର ପୁତ୍ର କବି ଶଶିଭୂଷଣ ରାୟ ୧୯୧୨ ମସିହାରେ କନିକା ପରିଦର୍ଶନରେ ଆସିଥିଲେ । ପବିତ୍ର ସୁନିଆଁ ଦିନ ରାଜା ରାଜେନ୍ଦ୍ର କଟକରୁ ଷ୍ଟିମର ଯୋଗେ ତାଙ୍କୁ ସାଥୀରେ ଧରି କନିକାରେ ପହଞ୍ଚିଥିଲେ । କନିକାର ଶୋଭା ସଂପଦକୁ ଦେଖି ସେ ମୁଗ୍ଧ ହୋଇଯାଇଥିଲେ । କନିକା ଦର୍ଶନ ପୁସ୍ତକରେ ସେ ତାଙ୍କର ସୁଖଦଃ ଅନୁଭୂତିକୁ ଲିପିବଦ୍ଧ କରିଛନ୍ତି ।

ମାତ୍ର ବାଇଶ ବର୍ଷ ବୟସରୁ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ କନିକାରାଜା ରାଜେନ୍ଦ୍ର ଉତ୍କଳ ରାଜ୍ୟ ଗଠନ ଉଦ୍ଦେଶ୍ୟରେ ନିଜର ସମସ୍ତ ବଳ ଓ ବୟସକୁ ବିନିଯୋଗ କରିଦେଇଥିଲେ । ମଧୁବାବୁଙ୍କର କଳ୍ପନାକୁ ବାସ୍ତବ ରୂପଦେବା ଉଦ୍ଦେଶ୍ୟରେ ସେ ଜୀବନର ବିଭିନ୍ନ ସମୟରେ ବିଭିନ୍ନ ସ୍ଥାନରେ ଅନେକ ବାଧାବିଘ୍ନର ସମ୍ମୁଖୀନ ହୋଇଛନ୍ତି । ଅନେକ ମିଥ୍ୟା କୁତ୍ସାରଟନା ଶୁଣିଛନ୍ତି । ତାଙ୍କ ବିରୁଦ୍ଧରେ ରାଜନୈତିକ ଚକ୍ରାନ୍ତ ବି ହୋଇଛି । କିନ୍ତୁ ସେ ମହତ ଉଦ୍ଦେଶ୍ୟରେ କାର୍ଯ୍ୟ କରୁଥିବାରୁ ସେସବୁକୁ ଖାତିରି ନ କରି ଆଗେଇ ଚାଲିଥିଲେ । ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ଯେଉଁମାନେ କାର୍ଯ୍ୟ କରନ୍ତି, ସେମାନଙ୍କର ଅନେକ ଶତ୍ରୁ ସୃଷ୍ଟି ହୋଇଯିବା ସ୍ୱାଭାବିକ । ସେତେବେଳର କଂଗ୍ରେସ ନେତାମାନେ ତାଙ୍କର ବିରୋଧୀ ହୋଇଥିବାରୁ କନିକା ରାଜା ଅସଂଖ୍ୟ ଭଲକାମ କରି ମଧ୍ୟ ବିଖ୍ୟାତ ହୋଇପାରିନାହାନ୍ତି । ସେହି କାରଣରୁ ସର୍ବମାନ୍ୟ ନେତା ମଧୁବାବୁ ମଧ୍ୟ ଜାତୀୟସ୍ତରର ନେତା ହୋଇପାରିଲେ ନାହିଁ । ଦୀର୍ଘ ଛୟାଳିଶ ବର୍ଷ କନିକା ରାଜ୍ୟର ରାଜ୍ୟଭାର ବହନ କରି ସେ ୧୯୪୮ ମସିହା ଡିସେମ୍ବର ମାସ ୧୪ତାରିଖ ଦିନ ସଂସାରରୁ ଚିରବିଦାୟ ନେଲେ ।

ରେଭେନ୍ସା କଲେଜର ବିଖ୍ୟାତ କନିକା ଲାଇବ୍ରେରୀ, ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲର କନିକା କଟେଜ, କଟକ ଜେଲର କନିକା କୋଠି, କଟକ ଚଣ୍ଡୀ ମନ୍ଦିର, ଶୈଳବାଳା ମହାବିଦ୍ୟାଳୟ, ରେଭେନ୍ସା କଲେଜିଏଟ ସ୍କୁଲ, ରେଭେନ୍ସା ବାଳିକା ବିଦ୍ୟାଳୟ, ସତ୍ୟବାଦୀ ବନ ବିଦ୍ୟାଳୟ, ଭଦ୍ରକ ମହାବିଦ୍ୟାଳୟ, ଆରଡ଼ିର ଆଖଣ୍ଡଳମଣି ମନ୍ଦିର, ମଧୁବାବୁଙ୍କ ଉତ୍କଳ ଟ୍ୟାନେରୀ, ଉତ୍କଳ ସମ୍ମିଳନୀର ଆୟୋଜନ, ଦି ଓଡ଼ିଆ ପ୍ରକାଶନ, ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ପ୍ରକାଶନ, ପୁରୀ ଶ୍ରୀମନ୍ଦିର ଚାହାଣି ମଣ୍ଡପ ନିର୍ମାଣ, ଶ୍ରୀମନ୍ଦିରରେ କାନିକା ଭୋଗ ବ୍ୟବସ୍ଥା, ଶ୍ରୀମନ୍ଦିର ପରିଚାଳନା ପାଇଁ ଭୂମି ଖଞ୍ଜା, ମରୁଡ଼ି ଓ ଦୁର୍ଭିକ୍ଷ ସମୟରେ ଅନ୍ୟ ରାଜ୍ୟକୁ ସହାୟତା ଭଳି ଲୋକହିତକର କାର୍ଯ୍ୟରେ ସେ ଅଜସ୍ର ଅର୍ଥ ବ୍ୟୟକରି ଅମର ହୋଇରହିଛନ୍ତି ।

କନିକା ରାଜା ରାଜେନ୍ଦ୍ର ନାରାୟଣ କେବଳ ଓଡ଼ିଶା ରାଜନୀତି ବା ଭାରତୀୟ ରାଜନୀତି ସହିତ ସଂପୃକ୍ତ ନଥିଲେ, ବରଂ ସେ ବିଶ୍ୱ ରାଜନୀତିରେ ନିଜକୁ ସାମିଲକରି ଜଣେ ପ୍ରଚଣ୍ଡ ସ୍ୱାଭିମାନୀ ଓଡ଼ିଆ ଭାବରେ ନିଜକୁ ପରିଚିତ କରାଇ ପାରିଥିଲେ । ପ୍ରଥମ ବିଶ୍ୱଯୁଦ୍ଧରେ ସହଯୋଗ କଲେ, ଭାରତକୁ ସ୍ୱାଧୀନତା ଦେବାକୁ ଇଂରେଜ ସରକାର ପ୍ରତିଶ୍ରୁତି ଦେଇଥିଲେ । ଭାରତୀୟ ରାଜା ମହାରାଜାମାନଙ୍କ ପାଖରେ ସୈନ୍ୟ ସାମନ୍ତ ଥିବାରୁ ସରକାର ତାଙ୍କର ସୈନ୍ୟ ଓ ଅର୍ଥ ସାହାଯ୍ୟ ମାଗିଥିଲେ । କନିକା ରାଜା ଏହି ସୁଯୋଗକୁ ହାତଛଡ଼ା ନକରି ଜଣେ ପଦାଧିକାରୀ ଭାବେ ଯଥା ସମ୍ଭବ ସାହାଯ୍ୟ ଓ ସହଯୋଗ କରିଥିଲେ । ଓଡ଼ିଶାର ଅନ୍ୟ ରାଜାମାନଙ୍କୁ ସାହାଯ୍ୟ କରିବାକୁ ମଧ୍ୟ ନିବେଦନ କରିଥିଲେ । ଫଳରେ ଆଳି, ଦର୍ପଣୀ, ଡମପଡ଼ା, ସୁକିନ୍ଦା, ମଧୁପୁର ଓ ପାରଳାର ରାଜାମାନଙ୍କ ସମେତ ଆହୁରି ଅନେକ ଦେଶପ୍ରେମୀ ବଦାନ୍ୟ ନେତୃସ୍ଥାନୀୟ ବ୍ୟକ୍ତି ଯୁଦ୍ଧପାଣ୍ଠିକୁ ଆର୍ଥିକ ସାହାଯ୍ୟ କରିଥିଲେ ।

ପ୍ରଥମ ବିଶ୍ୱଯୁଦ୍ଧରେ ଅଂଶଗ୍ରହଣକରି ସୈନ୍ୟମାନେ ଉତ୍ସାହିତହୋଇ କନିକାର ଲୋକେ ମେସୋପଟାମିଆ, ଫ୍ରାନ୍ସ ପ୍ରଭୃତି ଦେଶକୁ ଯାଇ ଲାଭବାନ ହୋଇଥିଲେ। ବିଶ୍ୱ ରାଜନୀତିରେ କନିକା ରାଜାଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିବାରୁ ତାଙ୍କୁ କେ.ସି.ଆଇ.ଇ ଉପାଧି ପ୍ରଦାନ କରାଯାଇଥିଲା।

ଭାରତବର୍ଷର ରାଜନ୍ୟବର୍ଗଙ୍କ ମଉଡ଼ମଣି ଏବଂ ଜଣେ ମର୍ଯ୍ୟାଦାବନ୍ତ, ଉଚ୍ଚଶିକ୍ଷିତ, ଦାନଶୀଳ, ଆଇନ ବିଶାରଦ, ସୁଦକ୍ଷ ବ୍ୟବସ୍ଥାପକ, ଦକ୍ଷ ସାଂସଦ, ସ୍ୱାଭିମାନୀ ଦେଶପ୍ରେମୀ, ବହୁଦର୍ଶୀ ସର୍ବକନିଷ୍ଠ ରାଜନେତା ଭାବେ ସେ ସ୍ୱତନ୍ତ୍ର ସମ୍ମାନର ଅଧିକାରୀ ଥିଲେ। ଶାସନ କ୍ଷେତ୍ରରେ ଅତ୍ୟାଚାରୀ, ଠକ, ବଦମାସ ଓ ପ୍ରଜା ଶୋଷଣକାରୀଙ୍କୁ ସେ କଠିନ ଦଣ୍ଡରେ ଦଣ୍ଡିତ କରି ସ୍ୱଚ୍ଛତା ରକ୍ଷା କରୁଥିଲେ। ସେ ଓଡ଼ିଶାର ଐତିହାସିକ, ରାଜନୈତିକ ଓ ସାଂସ୍କୃତିକ ଧାରାକୁ ବଜାୟ ରଖି ଜାତିର ମର୍ଯ୍ୟାଦାକୁ ବୃଦ୍ଧି କରିଥିଲେ। ତାଙ୍କର ବିଚକ୍ଷଣ ପ୍ରତିଭା, ବୁଦ୍ଧିମତ୍ତା, ତର୍କନୈପୁଣ୍ୟ ଓ ପାରଦର୍ଶିତା ଥିଲା-ଅପୂର୍ବ ଏବଂ ଅନନ୍ୟ। ସ୍ୱତନ୍ତ୍ର ଓଡ଼ିଶା ଗଠନ ଦିଗରେ ଯେତେବେଳେ ଯେଉଁ ବାଧା ଉପୁଜିଛି, ତାକୁ ସେ ନିଜର ଉପସ୍ଥିତ ବୁଦ୍ଧି ବଳରେ ହଟେଇଦେବାରେ ସଫଳ ହୋଇପାରୁଥିଲେ। ତେଣୁ ତାଙ୍କୁ ଉତ୍କଳର ଅନ୍ୟତମ ନିର୍ମାତା ଭାବେ ଗ୍ରହଣ କରାଯାଏ।

**ସଂକ୍ଷେପରେ ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେବ**

ଜନ୍ମ- ଗଜପତି ଦେବ ରାଜବଂଶରେ ୧୮୮୧ ମସିହା ମାର୍ଚ୍ଚ

**ସହାୟକ ଗ୍ରନ୍ଥସୂଚୀ**


୧. କନିକା (୧୯୦୬) - ଦୟାନିଧି ମିଶ୍ର
୨. କନିକା ଦର୍ଶନ(୧୯୫୧) - ଶଶିଭୂଷଣ ରାୟ
୩. କନିକା ରାଜାଭିନନ୍ଦନ(୧୯୧୯) - ମୁକୁର ପ୍ରେସ
୪. ଯୁଗେଯୁଗେ କନିକା(୨୦୧୫)- ଶାନ୍ତନୁ କୁମାର ମହାନ୍ତି
୫.ଉତ୍କଳ ପ୍ରସଙ୍ଗ ସେପ୍ଟେମ୍ବର-୨୦୧୫)- ସୂଚନା ଓଲୋକ ସଂପର୍କ ବିଭାଗ, ଓଡ଼ିଶା
୬. LAND HOLDER'S JOURNAL,VOL-II,1934 ED. J.K.Choudhury,



ଭିଆଇଏମ୍-୫୫
ଶୈଳଶ୍ରୀ ବିହାର, ଭୁବନେଶ୍ୱର-୭୫୧୦୨୧


# ଅନନ୍ତ ସୃଷ୍ଟି

**ବାଇଧର ବାରିକ**

ସହଜ ପୃଥିବୀ ସୁନ୍ଦର ଆକାଶ ସୁନ୍ଦର ହ୍ରଦ ସାଗର
ରଚିଅଛ ପ୍ରଭୁ ରସାଣିତ କରି ରଖିଛ ସୁଧା ତହିଁର ।
ଲଗାଇଛ ତହିଁ ଲକ୍ଷ୍ୟ ଜୀବନର ଲକ୍ଷ ମମତା ବନ୍ଧନ
ଭସାଇଛ ପରା ଭବାର୍ଣ୍ଣବେ ତୁମେ ଭରା ଉଶ୍ୱାସ ସ୍ୟନ୍ଦନ ।
ଦୂର ରତ୍ନାକରେ ଦୂର ଚକ୍ରବାଳେ ଦୁଇ ଆକାଶ ପୃଥିବୀ
ମିଳାଇଛ ତହିଁ ମମତା କି ରଖି ମାନବ କି ପାରେ ଭାବି ?
ଅନୀଳ ସୁନୀଳ ଆକାଶ ମଞ୍ଜୁଳ ଖଚିତ କୋଟି ତାରକା
ଶ୍ୟାମଗିରି ପୁଣି ସୁଷମା ଜଡିତ ଶୁଭ୍ର ବାଦଲ ପତାକା
ଗିରି ନିର୍ଝରଣୀ କଳ ନିନାଦିନୀ ମଧୁ ବି କଳ ନିନାଦ
ଜ୍ୟୋସ୍ନା ସ୍ନାତ ପୁଣି ରାକା ରଜନୀରେ ଭରିଛ ପୁଷ୍ପେ ସୁଗନ୍ଧ
ଶିରୀଶିରୀ ମନ୍ଦ ମରୁତ ତହିଁକି ଜଗାଇ ଅଛ ନିରତ
ବ୍ରହ୍ମକୀଟେ ମୁଞ୍ଜୁଥାଏ ଅବିରତେ କ୍ଷଣେ ତା' ନାହିଁ ବିରତ
ବାଲୁକା ବିତାନ ସଜାଇ ରଖିଛ ଦୃଷ୍ଟି ନପାଏ ଯହିଁକି
ନବ ଦୁର୍ବାଦଳେ ସଜାଇଛ କାହିଁ ମାନବ ଶିଶୁ ପାଇଁ କି
ହେ ପ୍ରଭୁ ତବ ବିଚିତ୍ର ସର୍ଜନା ମରତରେ ଅଛ ଭରି
ଅନନ୍ତ ସୃଷ୍ଟିକି ଦୃଷ୍ଟି ଥାଏ କା'ର ଶକତି ନାହିଁ କାହାରି ।

ହଳଦିଆ ଘଣ୍ଟେଶ୍ୱର, ଭଦ୍ରକ

# ପଞ୍ଚାୟତିରାଜ ଓ ପାନୀୟ ଜଳ ବିଭାଗର ସଫଳତା (୨୦୧୭–୧୮)

ରାଜ୍ୟରେ ଗ୍ରାମାଞ୍ଚଳର ବିକାଶ ନିମନ୍ତେ ପଞ୍ଚାୟତିରାଜ ଓ ପାନୀୟ ଜଳ ବିଭାଗ ଦ୍ୱାରା ବିଭିନ୍ନ ଯୋଜନା ଓ କାର୍ଯ୍ୟକ୍ରମଗୁଡ଼ିକ କାର୍ଯ୍ୟକାରୀ କରାଯାଉଛି । ସେଗୁଡ଼ିକ ହେଲା–

- ଦାରିଦ୍ର୍ୟ ଦୂରୀକରଣ ଓ କର୍ମନିଯୁକ୍ତି କାର୍ଯ୍ୟକ୍ରମ
- ମୌଳିକ ସେବା କାର୍ଯ୍ୟକ୍ରମ
- ଭିତ୍ତିଭୂମି ଉନ୍ନୟନ କାର୍ଯ୍ୟକ୍ରମ
- ଦକ୍ଷତା ବୃଦ୍ଧି କାର୍ଯ୍ୟକ୍ରମ
- ଇ–ପ୍ରଶାସନ
- ପାନୀୟ ଜଳ ଓ ପରିମଳ

**ଦାରିଦ୍ର୍ୟ ଦୂରୀକରଣ ଓ କର୍ମନିଯୁକ୍ତି କାର୍ଯ୍ୟକ୍ରମ**

**ମହାତ୍ମା ଗାନ୍ଧୀ ଜାତୀୟ ଗ୍ରାମୀଣ ନିଶ୍ଚିତ କର୍ମନିଯୁକ୍ତି ଯୋଜନା**

ମହାତ୍ମା ଗାନ୍ଧୀ ଜାତୀୟ ଗ୍ରାମୀଣ ନିଶ୍ଚିତ କର୍ମନିଯୁକ୍ତି ଆଇନ–୨୦୦୫ ଅନୁସାରେ, ଗ୍ରାମାଞ୍ଚଳରେ ବାସ କରୁଥିବା ଏବଂ ସ୍ୱେଚ୍ଛାକୃତ ଭାବେ ଅଣକୁଶଳୀ କାର୍ଯ୍ୟ କରିବାକୁ ଚାହୁଁଥିବା ସମସ୍ତ ପରିବାରକୁ ଗୋଟିଏ ଆର୍ଥିକ ବର୍ଷରେ ୧୦୦ ଦିନର ନିଶ୍ଚିତ କାର୍ଯ୍ୟ ଯୋଗାଇ ଦିଆଯାଉଅଛି । ଏହି ଆଇନ୍ ପ୍ରଣୟନ ଦ୍ୱାରା ସରକାର ଗ୍ରାମୀଣ ପରିବାରକୁ ସାମାଜିକ ସୁରକ୍ଷା ପ୍ରଦାନ ସହିତ ରୋଜଗାର ଦାବି ପାଇଁ କ୍ଷମତା ପ୍ରଦାନ କରିଅଛନ୍ତି । ଏହା ଲୋକମାନଙ୍କୁ କାମ କରିବାର ଅଧିକାର ପ୍ରଦାନ ସହିତ ଦେଶର ଅର୍ଥନୈତିକ ଅଭିବୃଦ୍ଧି ଏବଂ ଦାରିଦ୍ର୍ୟ ହ୍ରାସ କରିବାରେ ସହାୟକ ହୋଇଅଛି ।

- ୨୦୧୭–୧୮ ଆର୍ଥିକ ବର୍ଷ ନିମନ୍ତେ ୨୭୨୮.୩୭ କୋଟି ଟଙ୍କାର ଶ୍ରମ ବଜେଟ୍‌କୁ ଅନୁମୋଦନ କରାଯାଇଛି । ମୋଟ୍ ଉପଲବ୍ଧ ଥିବା ୨୫୩୩.୨୨ କୋଟି ଟଙ୍କା ମଧ୍ୟରୁ ୨୫୧୩.୭୨ କୋଟି ଟଙ୍କା ବିନିଯୋଗ ହୋଇଛି । ସେହିଭଳି ମାନବ

ଦିବସ ସୃଷ୍ଟି ପାଇଁ ଧାର୍ଯ୍ୟ ଲକ୍ଷ୍ୟ ଥିବା ୯୦୦ ଲକ୍ଷ ମଧ୍ୟରୁ ୯୨୨.୪୦ ଲକ୍ଷ (୧୦୨%) ମାନବ ଦିବସ ସୃଷ୍ଟି କରାଯାଇପାରିଛି ।

- ମହିଳା ଓ ଶିଶୁ ବିକାଶ ବିଭାଗ ସହିତ ଏକାଭିମୁଖୀକରଣ ଦ୍ୱାରା ପ୍ରତ୍ୟେକ ଅଙ୍ଗନବାଡି କେନ୍ଦ୍ର ନିର୍ମାଣ ନିମନ୍ତେ ୭ ଲକ୍ଷ ଟଙ୍କାର ଖର୍ଚ୍ଚ ଅଟକଳ କରାଯାଇ ଅଙ୍ଗନବାଡି କେନ୍ଦ୍ର ନିର୍ମାଣ କାର୍ଯ୍ୟ ହାତକୁ ନିଆଯାଇଛି । ଏଥିମଧ୍ୟରୁ ୫ ଲକ୍ଷ ଟଙ୍କା ମହାତ୍ମା ଗାନ୍ଧୀ ରାଷ୍ଟ୍ରୀୟ ଗ୍ରାମୀଣ ନିଶ୍ଚିତ କର୍ମନିଯୁକ୍ତି ଯୋଜନା ମାଧ୍ୟମରେ ଯୋଗାଇ ଦିଆଯାଇଥିବା ବେଳେ ମହିଳା ଓ ଶିଶୁ ବିକାଶ ବିଭାଗ ତରଫରୁ ୨ ଲକ୍ଷ ଟଙ୍କା ଯୋଗାଇ ଦିଆଯାଇଛି । ୨୦୧୩–୧୪ ମସିହାଠାରୁ ମହିଳା ଓ ଶିଶୁ ବିକାଶ ବିଭାଗ ସହିତ ଏକାଭିମୁଖୀକରଣ କରାଯାଇ ୫୪୨୫ଟି ଅଙ୍ଗନବାଡି କେନ୍ଦ୍ର ନିର୍ମାଣ ହୋଇଛି, ଯାହାକି ସମଗ୍ର ଦେଶରେ ସର୍ବାଧିକ ।
- ବ୍ୟକ୍ତିଗତ ପରିବାରଗୁଡିକର ଜୀବିକା ସମୃଦ୍ଧି ପାଇଁ ୮୦ ପ୍ରତିଶତ କାମ ପ୍ରଦାନ କରାଯାଇଛି । ଯାହା ଦେଶରେ ସର୍ବାଧିକ ।
- ଗ୍ରାମୀଣ ବାସଗୃହ ଯୋଜନାରେ ୭,୩୫,୧୫୨ ଜଣ ହିତାଧିକାରୀଙ୍କୁ ମଜୁରି ସହାୟତା ବାବଦରେ ୬୮୯.୧୯ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ମୋଟ୍ ୧୦, ୩୩, ୭୧୩ ସମ୍ପୂର୍ଣ୍ଣ ହୋଇଥିବା ପ୍ରକଳ୍ପ ମଧ୍ୟରୁ ୯,୬୫,୪୩୩ଟି ପ୍ରକଳ୍ପକୁ ଜିଓଟ୍ୟାଗିଂ କରାଯାଇଛି ।
- ଜବ୍‌କାର୍ଡ ଯାଞ୍ଚ, ମହାତ୍ମା ଗାନ୍ଧୀ ନରେଗା ସହିତ ଆଧାର ସିଡିଂ, ସମ୍ପତ୍ତିଗୁଡିକର ଜିଓଟ୍ୟାଗିଂ ଇତ୍ୟାଦି କ୍ଷେତ୍ରରେ ରାଜ୍ୟ ଜାତୀୟ ହାରଠାରୁ ଉର୍ଦ୍ଧ୍ୱରେ ରହିଛି ।
- ୨୦୧୭–୧୮ ବର୍ଷରେ ୩.୪୨ ଲକ୍ଷ ପ୍ରକଳ୍ପ ଏହି ଯୋଜନାରେ ସମ୍ପୂର୍ଣ୍ଣ କରାଯାଇଛି । ଯାହାକି ସର୍ବକାଳୀନ ସର୍ବାଧିକ ।
- କୃଷି ତଥା କୃଷି ସମ୍ବନ୍ଧୀୟ କାର୍ଯ୍ୟରେ ୬୦ ପ୍ରତିଶତ ଖର୍ଚ୍ଚର ଲକ୍ଷ୍ୟ ସ୍ଥିର କରାଯାଇଥିବା ବେଳେ ୭୩.୭୨ ପ୍ରତିଶତ ଖର୍ଚ୍ଚ ହାସଲ କରାଯାଇଛି ।
- ପ୍ରାକୃତିକ ସମ୍ବଳ ପରିଚାଳନା ସମ୍ବନ୍ଧୀୟ କାର୍ଯ୍ୟରେ ୬୦ ପ୍ରତିଶତ ଖର୍ଚ୍ଚର ଲକ୍ଷ୍ୟ ସ୍ଥିର କରାଯାଇଥିବା ବେଳେ ୪୨.୫୫ ପ୍ରତିଶତ ଖର୍ଚ୍ଚ ହାସଲ କରାଯାଇଛି ।
- ୩୯୪୮୨.୬୧ ହେକ୍ଟର ଜମିରେ ବୃକ୍ଷରୋପଣ ଏବଂ ୪୪୧୮.୦୦ (ଆରକେଏମ) ରାସ୍ତାପାର୍ଶ୍ୱରେ ବୃକ୍ଷରୋପଣ କରାଯାଇଛି ।
- ୭୪୨୭ଟି କୃଷି ପୋଖରୀ ଏବଂ ୨୩୩୮ଟି ଡଗ୍‌ୱେଲ୍ (ସେଚ କୂପ) ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଛି ।

## ଜାତୀୟ ଗ୍ରାମୀଣ ଜୀବିକା ମିଶନ

### (ଦୀନ ଦୟାଲ ଅନ୍ତ୍ୟୋଦୟ ଯୋଜନା– ଜାତୀୟ ଗ୍ରାମୀଣ ଜୀବିକା ମିଶନ)

ଆମ ରାଜ୍ୟରେ ପଞ୍ଚାୟତିରାଜ ଓ ପାନୀୟ ଜଳ ବିଭାଗ ଅଧୀନରେ ଥିବା ଓଡ଼ିଶା ଜୀବିକା ମିଶନ ଦ୍ୱାରା କାର୍ଯ୍ୟକାରୀ ହେଉଥିବା ଏହି ଯୋଜନା ଦୀର୍ଘସ୍ଥାୟୀ ଗୋଷ୍ଠୀଭିତ୍ତିକ ଅନୁଷ୍ଠାନ ମାଧ୍ୟମରେ ଗ୍ରାମୀଣ ଗରିବଙ୍କର ସାମାଜିକ–ଅର୍ଥନୈତିକ ଅଭିବୃଦ୍ଧିରେ ସହାୟକ ହୋଇପାରିଛି । ଓଡ଼ିଶାରେ ଜାତୀୟ ଗ୍ରାମୀଣ ଜୀବିକା ମିଶନର ପ୍ରଭାବୀ କାର୍ଯ୍ୟାନ୍ୱୟନ ନିମନ୍ତେ ଓଡ଼ିଶା ଗ୍ରାମୀଣ ଜୀବିକା ମିଶନ, ଇଣ୍ଟେନସିଭ୍ ବ୍ଲକ୍ ଓ ନନ୍–ଇଣ୍ଟେନସିଭ ବ୍ଲକ୍ ଆଭିମୁଖ୍ୟକୁ ଗ୍ରହଣ କରିଛି । ବର୍ତ୍ତମାନ ସୁଦ୍ଧା ଓଡ଼ିଶା ଜୀବିକା ମିଶନ ଏହି ଇଣ୍ଟେନସିଭ ଓ ନନ୍–ଇଣ୍ଟେନସିଭ ଆଭିମୁଖ୍ୟ ମାଧ୍ୟମରେ ରାଜ୍ୟରୁ ୩.୨୦ ଲକ୍ଷ ସ୍ୱୟଂ ସହାୟକ ଗୋଷ୍ଠୀକୁ ସାମିଲ କରି ୩୫ ଲକ୍ଷ ପରିବାର ସହିତ କାର୍ଯ୍ୟ କରୁଅଛି ।

- ରାଜ୍ୟରେ ୩.୨୦ ଲକ୍ଷ ସ୍ୱୟଂ ସହାୟକ ଗୋଷ୍ଠୀ କାର୍ଯ୍ୟ କରୁଛନ୍ତି ।
- ୧୫୦ଟି ଇଣ୍ଟେନ୍‌ସିଭ୍ ବ୍ଲକ୍‌ରେ ୧.୯୨ ଲକ୍ଷ ସହାୟକ ଗୋଷ୍ଠୀ ସାମିଲ ହୋଇଛନ୍ତି ।
- ମୋଟ୍ ଉପଲବ୍ଧ ପାଣ୍ଠି ୩୨୧.୮୧ କୋଟି ଟଙ୍କା ମଧ୍ୟରୁ ୩୦୯.୯୮ କୋଟି ଟଙ୍କା (୯୬%) ଏହି ଯୋଜନାରେ ବିନିଯୋଗ ହୋଇଛି ।
- ୮୦୦୦୦ଟି ଧାର୍ଯ୍ୟ ଲକ୍ଷ୍ୟ ମଧ୍ୟରୁ ୧୦୧୩୯୨ଟି (୧୨୭%) ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ରଣ ଯୋଗାଇ ଦିଆଯାଇଛି । ୧୫୬୦୩ (୮୪%) ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ଆବର୍ତ୍ତନ ପାଣ୍ଠିର ସହାୟତା ପ୍ରଦାନ କରାଯାଇଛି ।
- ଡିଡିୟୁ–ଜିକେୱାଇ ଯୋଜନା ଅନ୍ତର୍ଗତ ୨୦୧୭–୧୮ ଆର୍ଥିକ ବର୍ଷରେ ୩୫୦୦୦ ଧାର୍ଯ୍ୟ ଲକ୍ଷ୍ୟରୁ ଆରଏସ୍‌ଇଟିଆଇ ମାଧ୍ୟମରେ ୩୨୭୩୫ (୯୪%) ଗ୍ରାମୀଣ ଯୁବକ ଓ ଯୁବତୀମାନଙ୍କୁ ପ୍ରଶିକ୍ଷଣ ଦିଆଯାଇଛି ।

### ଗ୍ରାମୀଣ ଆବାସ ଯୋଜନା

- ୨୦୧୪–୧୫ ବର୍ଷଠାରୁ ୧୪,୦୧୨ କୋଟି ଟଙ୍କା ବ୍ୟୟ ହୋଇ ୧୭.୧୦ ଲକ୍ଷ ଗୃହ ନିର୍ମାଣ କାର୍ଯ୍ୟ ଶେଷ ହୋଇଛି ।
- ୨୦୧୮ ସେପ୍ଟେମ୍ବର ସୁଦ୍ଧା ୨ ନିୟୁତ ଗୃହ ନିର୍ମାଣ କରିବା ପାଇଁ ପଦକ୍ଷେପ ନିଆଯାଉଛି ।
- ଯେଉଁ ହିତାଧିକାରୀ ୪ ମାସ ମଧ୍ୟରେ ଗୃହ ନିର୍ମାଣ କାର୍ଯ୍ୟ ଶେଷ କରିବେ ତାଙ୍କୁ ୨୦,୦୦୦ ଏବଂ ୬ ମାସ ମଧ୍ୟରେ ସମ୍ପୂର୍ଣ୍ଣ ହେଲେ ୧୦,୦୦୦ ଟଙ୍କାର ପ୍ରୋତ୍ସାହନ ରାଶି ରାଜ୍ୟ ପାଣ୍ଠିରୁ ଦିଆଯାଉଅଛି । ବର୍ତ୍ତମାନ ସୁଦ୍ଧା ୧.୮୭ ଲକ୍ଷ ହିତାଧିକାରୀ ୨୭୬ କୋଟି ଟଙ୍କାର ପ୍ରୋତ୍ସାହନ ପାଇଛନ୍ତି ।

■ ଗୃହ ନିର୍ମାଣର ଗୁଣାତ୍ମକମାନ ବୃଦ୍ଧି ପାଇଁ ଆର୍.ସି.ସି. ଛାତ କିମ୍ବା ସେହିଭଳି ଶକ୍ତିଶାଳୀ ଛାତ ସାମଗ୍ରୀର ବ୍ୟବହାରକୁ ବାଧ୍ୟତାମୂଳକ କରାଯାଇଛି । କର୍ପସ ପାଣ୍ଠି ବିନିଯୋଗ କରି ଏସ୍.ଏଚ୍.ଜି./ଜି.ପି.ଏଲ୍.ଏଫ୍‌ମାନେ ଛାତ ପକାଇବା ସାମଗ୍ରୀ କ୍ରୟ କରିବା ପାଇଁ ଉତ୍ସାହିତ କରାଯାଉଅଛି, ଯାହା ହିତାଧିକାରୀମାନଙ୍କୁ ଭଡାରେ ଦିଆଯିବ ।

■ କୁଶଳୀ ରାଜମିସ୍ତ୍ରୀର ଅଭାବକୁ ଦୂର କରିବା ପାଇଁ ୩୩,୪୮୫ ଅର୍ଦ୍ଧକୁଶଳୀ ଶ୍ରମିକମାନଙ୍କୁ ରାଜମିସ୍ତ୍ରୀ ପ୍ରଶିକ୍ଷଣ ଦିଆଯାଇଛି ।

■ ଗୃହ ପାଇବା ପାଇଁ ବାଦ୍ ପଡିଥିବା ଯୋଗ୍ୟ ହିତାଧିକାରୀଙ୍କୁ ତାଲିକାରେ ଅନ୍ତର୍ଭୁକ୍ତ କରିବା ପାଇଁ ସର୍ବସାଧାରଣଙ୍କଠାରୁ ଦରଖାସ୍ତ ଆହ୍ୱାନ କରାଯାଇଥିଲା । ୩୯.୦୩ ଲକ୍ଷ ଦରଖାସ୍ତ ଗ୍ରହଣ ହୋଇଛି, ଯାହାର ଯାଞ୍ଚ ପ୍ରକ୍ରିୟା ଏବଂ କ୍ଷେତ୍ର ଅନୁସନ୍ଧାନ କାର୍ଯ୍ୟ ଜାରିରହିଛି । ଏହା ଜୁଲାଇ ସୁଦ୍ଧା ଶେଷ ହେବାର ସମ୍ଭାବନା ରହିଛି ।

■ ଗ୍ରାମୀଣ ବାସଗୃହ ଯୋଜନାର ହିତାଧିକାରୀଙ୍କୁ ୨୦୧୮–୧୯ ବର୍ଷରେ ଓଡ଼ିଶା ଜୀବିକା ମିଶନ୍ ଓ ମହାତ୍ମା ଗାନ୍ଧୀ ନରେଗା ଯୋଜନାରୁ ଜୀବିକା ବୃଦ୍ଧି ସମ୍ବନ୍ଧୀୟ ସମ୍ପତ୍ତି ଯୋଗାଇ ଦେବା ପାଇଁ ପଦକ୍ଷେପ ନିଆଯାଉଅଛି ।

■ ରାଜ୍ୟର ଭୌଗୋଳିକ ସ୍ଥିତିକୁ ସୁହାଇଲାଭଳି ଉପଯୁକ୍ତ ୧୧ ପ୍ରକାର ଗୃହ ନିର୍ମାଣ ଶୈଳୀ ସି.ଏସ୍.ଆଇ.ଆର୍.–ସି.ବି.ଆର୍.ଆଇ ରୁର୍‌କି ସହ ପରାମର୍ଶ କରି ରାଜ୍ୟ ସରକାର ପ୍ରସ୍ତୁତ କରିଛନ୍ତି । ଯାହାଦ୍ୱାରା କମ୍ ସମୟରେ ସ୍ଥାନୀୟ ସାମଗ୍ରୀ ବ୍ୟବହାର କରି ଦୀର୍ଘସ୍ଥାୟୀ ଗୃହ ନିର୍ମାଣ କରାଯାଇପାରିବ ।

■ ସି.ଏସ୍.ଆଇ.ଆର୍.– ସି.ବି.ଆର୍.ଆଇ. ରୁର୍‌କି ସହାୟତାରେ ଏସ୍.ଆଇ.ଆର୍.ଡି, ଭୁବନେଶ୍ୱରଠାରେ ଏକ ଟେକ୍ନୋଲୋଜି ପାର୍କ ନିର୍ମାଣାଧୀନ ରହିଛି । ଯେଉଁଠି ଗୃହ ନିର୍ମାଣ ଶୈଳୀ ଓ ବିଭିନ୍ନ ଯୋଜନାର ଏକାଭିମୁଖୀକରଣ ସମ୍ବନ୍ଧରେ ପ୍ରଶିକ୍ଷଣ ଦିଆଯିବ ।

■ ଏହି ଯୋଜନାର କାର୍ଯ୍ୟକାରିତାରେ ଦୁର୍ନୀତି ଓ ଅନୈତିକ କାର୍ଯ୍ୟକୁ ବରଦାସ୍ତ କରାଯାଉନାହିଁ । ଅନୈତିକ କାର୍ଯ୍ୟରେ ଲିପ୍ତ ୮୧୬ ଜଣ କର୍ମଚାରୀ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଆରମ୍ଭ କରାଯାଇଅଛି ।

### ଅର୍ଥ କମିଶନ ଅନୁଦାନ

■ ଚତୁର୍ଦ୍ଦଶ କେନ୍ଦ୍ରୀୟ ଅର୍ଥ କମିଶନଙ୍କ ସୁପାରିଶ ଅନୁସାରେ ୨୦୧୫–୨୦ ମଧ୍ୟରେ ୮୮୫୦.୩୪ କୋଟି ଟଙ୍କାର ଅନୁଦାନ ବ୍ୟବସ୍ଥା କରାଯାଇଛି ।

■ ଚତୁର୍ଥ ରାଜ୍ୟ ଅର୍ଥ କମିଶନଙ୍କ ସୁପାରିଶ ଆଧାରରେ ୭୩୭୯.୩୦ କୋଟି ଟଙ୍କାର ଅନୁଦାନ ବ୍ୟବସ୍ଥା କରାଯାଇଛି ।

■ ଉଭୟ କମିଶନ ସ୍ଥାନୀୟ ସ୍ୱାୟତ୍ତ ସଂସ୍ଥାମାନଙ୍କ ମୌଳିକ ସେବା ପ୍ରଦାନ ପାଇଁ ଯୋଜନା ପ୍ରସ୍ତୁତ ଓ କାର୍ଯ୍ୟକାରିତା ପାଇଁ ଗୁରୁତ୍ୱ ଦେଇଛନ୍ତି ।

- ମୌଳିକ ସେବା ପ୍ରଦାନରେ ଉନ୍ନତି ଆଣିବା ପାଇଁ ବିଭିନ୍ନ ପ୍ରକଳ୍ପଗୁଡିକ କାର୍ଯ୍ୟକାରୀ କରାଯାଉଛି । ସେଗୁଡିକ ହେଲା– ପିଇବା ପାଣି ଯୋଗାଣ, ପରିମଳ, ରାସ୍ତା ଆଲୋକୀକରଣ, ସେପ୍‌ଟେଜ୍ ମ୍ୟାନେଜ୍‌ମେଣ୍ଟ, ବର୍ଜ୍ୟବସ୍ତୁ ପରିଚାଳନା, ଗୋଷ୍ଠୀ ସମ୍ପତ୍ତିର ରକ୍ଷଣାବେକ୍ଷଣ, କଲ୍ୟାଣ ମଣ୍ଡପ, ଶ୍ମଶାନ ଗୃହ, ଗାଧୁଆ ତୁଠ ଲୁଗା ବଦଳାଇବା କୋଠରି ଇତ୍ୟାଦି ।

**ଗୋପବନ୍ଧୁ ଗ୍ରାମୀଣ ଯୋଜନା**

ଏହି ଯୋଜନା ରାଜ୍ୟ ସରକାରଙ୍କ ନିଜସ୍ୱ ପାଣ୍ଠିରୁ ସମଗ୍ର ରାଜ୍ୟରେ କାର୍ଯ୍ୟକାରୀ ହେଉଅଛି । ସମ୍ପୃକ୍ତ ଜିଲ୍ଲାର ଗ୍ରାମାଞ୍ଚଳରେ ଅତିରିକ୍ତ ଉନ୍ନୟନ ଅର୍ଥ ଯୋଗାଇ ବିଜୁଳି, ବିଦ୍ୟୁତ ସଂଯୋଗୀକରଣ, ସଡକ, ରାସ୍ତା ଭିତ୍ତିଭୂମି ଓ ଜଳ ସେଚନ ଓ ଜଳ ଯୋଗାଣର ସୁବନ୍ଦୋବସ୍ତ କରିବା ଏହି ଯୋଜନାର ମୂଳ ଲକ୍ଷ୍ୟ ଅଟେ ।

- ମୋଟ୍ ଉପଲବ୍ଧ ଥିବା ୭୦୦.୮୯ କୋଟି ଟଙ୍କା ମଧ୍ୟରୁ ୪୫୧.୦୨ (୬୪%) କୋଟି ଟଙ୍କା ବିନିଯୋଗ ହୋଇଛି ।
- ମୋଟ୍ ଧାର୍ଯ୍ୟ ଲକ୍ଷ୍ୟ ଥିବା ୩୦୭୬୧ଟି ପ୍ରକଳ୍ପ ମଧ୍ୟରୁ ୨୦୪୫୯ (୬୭%)ଟି ପ୍ରକଳ୍ପ ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଛି ।

**ପାନୀୟ ଜଳ ଯୋଗାଣ**

- ରାଜ୍ୟରେ ଥିବା ୬୮୦୧ ଗ୍ରା.ପ. ମଧ୍ୟରୁ ୧୨୨୪ ଗ୍ରା.ପ.ରେ ଦୁଇରୁ ଅଧିକ ପାଇପ ଦ୍ୱାରା ଜଳ ଯୋଗାଣ ପ୍ରକଳ୍ପ କାର୍ଯ୍ୟକାରୀ ହେଉଛି । ୧୬୨୫ ଗ୍ରା.ପରେ ଦୁଇଟି ଲେଖାଏଁ ପାଇପ ଦ୍ୱାରା ଜଳଯୋଗାଣ ବ୍ୟବସ୍ଥା ରହିଛି ଏବଂ ୩୧୯୦ ଗ୍ରା.ପ.ରେ ଗୋଟିଏ ଲେଖାଏଁ ପାଇପ ଦ୍ୱାରା ଜଳ ଯୋଗାଣ ବ୍ୟବସ୍ଥା ଅଛି । ୭୬୦ ଗ୍ରା.ପ.ରେ ପାଇପ ଦ୍ୱାରା ଜଳଯୋଗାଣ ବ୍ୟବସ୍ଥା ହୋଇନାହିଁ ।
- ୨୦୧୮–୧୯ ବର୍ଷରେ ପ୍ରତ୍ୟେକ ଗ୍ରା.ପ.ରେ ଯେପରି ଅନ୍ତତଃ ଦୁଇଗୋଟି ଗ୍ରାମ ପାଇଁ ପାଇପ୍ ଦ୍ୱାରା ଜଳଯୋଗାଣ ପ୍ରକଳ୍ପ କାର୍ଯ୍ୟ କରିବ ସେ ଦିଗରେ ରାଜ୍ୟ ସରକାର ପ୍ରକଳ୍ପ ଅନୁମୋଦନ କରିଛନ୍ତି ।
- ୨୦୧୪ରୁ ୨୦୧୮ ମଧ୍ୟରେ ନଳକୂପ କିମ୍ବା ପାଇପ ଦ୍ୱାରା ଜଳଯୋଗାଣ ନିମନ୍ତେ ୩୪୦୭୩ଟି ବସତି, ଯାହା ଆଂଶିକ ଭାବରେ ଅନ୍ତର୍ଭୁକ୍ତ ହୋଇଥିଲା ଇତିମଧ୍ୟରେ ସମ୍ପୂର୍ଣ୍ଣ କରାଯାଇଅଛି । ବଳକା ଥିବା ୧୪୬୯୩ଟି ଆଂଶିକ ଭାବରେ ଅନ୍ତର୍ଭୁକ୍ତ ହୋଇଥିବା ବସତିଗୁଡିକୁ ୨୦୧୮ ମୌସୁମୀ ପୂର୍ବରୁ ସମ୍ପୂର୍ଣ୍ଣ କରିବାର ବ୍ୟବସ୍ଥା ହୋଇଛି ।
- ୩୧.୦୩.୨୦୧୮ ସୁଦ୍ଧା ରାଜ୍ୟର ୧,୫୭୭୩ଟି ଗ୍ରାମ ମଧ୍ୟରୁ ୪୧,୫୧୪ଟି ଗ୍ରାମରେ (୨୬%) ବର୍ତ୍ତମାନ ପାଇପ ଦ୍ୱାରା ଜଳଯାଗାଣ ବ୍ୟବସ୍ଥା କାର୍ଯ୍ୟ କରୁଛି, ଯାହା ୩୧.୦୩.୨୦୧୪ ବର୍ଷରେ ୩୨୩୮୭ ଗ୍ରାମକୁ (୨୦%) ପାଇପ ଦ୍ୱାରା ଜଳ ଯୋଗାଣ ହୋଇପାରିଥିଲା । ଜଳଯୋଗାଣ କ୍ଷେତ୍ରରେ ୨୦୧୮–୧୯ ବର୍ଷରେ ୨୯%କୁ ବୃଦ୍ଧି ପାଇବ ବୋଲି ଧାର୍ଯ୍ୟ କରାଯାଇଛି ।

- ୨୦.୪ ଲକ୍ଷ ଜନସଂଖ୍ୟାଙ୍କ ନିମନ୍ତେ ୧୫ଟି ଜିଲ୍ଲାରେ ୨୪୩୬.୯୪ କୋଟି ଟଙ୍କାର ବ୍ୟୟବରାଦ ହୋଇ ୨୪ ଗୋଟି ବୃହତ୍ ପାଇପ ଦ୍ୱାରା ଜଳଯୋଗାଣ ପ୍ରକଳ୍ପ ମଞ୍ଜୁର ହୋଇଛି ।
- ପୁନଶ୍ଚ ୯.୮୦ ଲକ୍ଷ ଜନସଂଖ୍ୟାଙ୍କ ନିମନ୍ତେ ୧୪୦୮.୮୮ କୋଟି ଟଙ୍କା ବିନିଯୋଗ ହୋଇ ୯ଗୋଟି ବୃହତ୍ ପାଇପ ଦ୍ୱାରା ଜଳଯୋଗାଣ ପ୍ରକଳ୍ପ କାର୍ଯ୍ୟକାରୀ ନିମନ୍ତେ ପ୍ରକ୍ରିୟା ଜାରି ରହିଛି ।

**ସ୍ୱଚ୍ଛ ଭାରତ ମିଶନ (ଗ୍ରାମୀଣ)**

ଗ୍ରାମାଞ୍ଚଳରେ ପରିମଳ ବ୍ୟବସ୍ଥାର ଉନ୍ନତି, ଅର୍ଥନୈତିକ ଅଭିବୃଦ୍ଧି ତଥା ଜୀବନର ଗୁଣାତ୍ମକ ମାନର ବୃଦ୍ଧି ଆଣିବା ନିମନ୍ତେ ସ୍ୱଚ୍ଛ ଭାରତ ମିଶନ (ଗ୍ରାମୀଣ) କାର୍ଯ୍ୟକାରୀ ହେଉଛି ।

- ଏହି ଯୋଜନାରେ ଉପଲବ୍ଧ ମୋଟ୍ ୧୧୧୧.୭୫ କୋଟି ଟଙ୍କା ମଧ୍ୟରୁ ୬୪୩.୪୪ (୫୮%) କୋଟି ଟଙ୍କା ବିନିଯୋଗ ହୋଇଛି । ବ୍ୟକ୍ତିଗତ ପରିବାରଙ୍କ ଶୌଚାଳୟ ନିର୍ମାଣ ନିମନ୍ତେ ପ୍ରସ୍ତାବିତ ୧୧୦୯୫୧୦ ମଧ୍ୟରୁ ମୋଟ୍ ୭୭୧୯୦୧ (୭୦%) ଶୌଚାଳୟ ନିର୍ମାଣ ସମ୍ପୂର୍ଣ୍ଣ ହୋଇଛି ।



# ସ୍ୱାଧୀନତା ସଂଗ୍ରାମରେ ଭାରତୀୟ ଜନସେବକ ଠକ୍କର ବାପାଙ୍କ ଅବଦାନ

**ଜୟଶଙ୍କର ନାୟକ**

ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଜନସେବକ ଠକ୍କର ବାପାଙ୍କ ଭୂମିକା ଅବିସ୍ମରଣୀୟ । ସେମାନେ ନିଜର ସୁଖ, ସ୍ୱାଚ୍ଛନ୍ଦ୍ୟ, ଘର ଦ୍ୱାର ତ୍ୟାଗ କରି ଦେଶ ମାତୃକାର ସେବାରେ ନିଜକୁ ତିଳ ତିଳ କରି ଉତ୍ସର୍ଗ କରିଯାଇଛନ୍ତି । ଆମ ପାଇଁ ସ୍ୱାଧୀନତା ଏକ ଦାନ ସ୍ୱରୂପ ନଥିଲା । ସ୍ୱାଧୀନତା ପ୍ରାପ୍ତି ନିମନ୍ତେ ଆମ ଦେଶବାସୀଙ୍କୁ କଠୋର ସଂଗ୍ରାମ ଓ ଅସୀମ ତ୍ୟାଗ ସ୍ୱୀକାର କରିବାକୁ ପଡ଼ିଛି । ସ୍ୱାଧୀନତା ସଂଗ୍ରାମରେ ଯେଉଁମାନେ ଆତ୍ମୋତ୍ସର୍ଗ କରିଛନ୍ତି, ସେମାନେ ଆମର ଚିରନମସ୍ୟ । ସେମାନଙ୍କୁ ସ୍ମରଣ କରି ରଖିବା ପାଇଁ ଆଜି ଦିନଟି ଆମକୁ ସୁଯୋଗ ଦେଇଥାଏ । ବିଶେଷ କରି ମହାତ୍ମା ଗାନ୍ଧୀ, ପଣ୍ଡିତ ଜବାହରଲାଲ ନେହେରୁ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ମୌଲାନା ଆଜାଦ୍, ସରୋଜିନୀ ନାଇଡୁ, ଗୋପବନ୍ଧୁ ଦାସ, ସୁଭାଷ ଚନ୍ଦ୍ର ବୋଷ, ଓ ସ୍ୱାଧୀନତା ଆନ୍ଦୋଳନର ଅନ୍ୟ ବହୁ ନେତା, ଯେଉଁମାନେ ତ୍ୟାଗ ତଥା ଆତ୍ମୋତ୍ସର୍ଗ କରି ପ୍ରାଣ ବଳି ଦେଇ ଶହୀଦ ହୋଇଛନ୍ତି । ଭାରତବାସୀ ଆଜି ତାଙ୍କ ନିକଟରେ ଚିରକୃତଜ୍ଞ । ଆଜି ତାଙ୍କରି ଯୋଗୁଁ ଭାରତ ଅନ୍ୟ ବିଦେଶ ରାଷ୍ଟ୍ରଭଳି ତା'ର ବିଜୟୀ ପତାକା ଫର ଫର ହୋଇ ଉଡ଼ାଇ ପାରିଛି । ଏହା ବହୁଦିନ ଧରି ବ୍ରିଟିଶ ଶାସନାଧୀନ ହୋଇ ରହିବା ପରେ ଆମ ଦେଶ ଏହି ଦିବସରେ ବିଦେଶୀ କବଳରୁ ମୁକ୍ତିଲାଭ କରି ଏକ ସ୍ୱାଧୀନ ଓ ସାର୍ବଭୌମ ଗଣତାନ୍ତ୍ରିକ ରାଷ୍ଟ୍ରରେ ପରିଣତ ହୋଇଛି ।

ବିଦେଶୀ ଶାସନର ଦାରୁଣ ନିର୍ଯ୍ୟାତନା ଏ ଦେଶର ଅଧିବାସୀଙ୍କ ଅନ୍ତରରେ ପ୍ରଜ୍ୱଳିତ କଲା ସ୍ୱାଭିମାନ ଭାବ, ଏ ଦେଶର ପ୍ରତ୍ୟେକ ନାଗରିକଙ୍କ ଅନ୍ତରରେ ସୃଷ୍ଟି ହେଲା ଦେଶ ମାତୃକାର ଦୁର୍ବାର ଲାଳସା । ଜୀବନ ବିନିମୟରେ ଦେଶ ମାତୃକା ପାଇଁ ମୁକ୍ତି ପାଇଁ ସେମାନେ ହେଲେ ଦୃଢ଼ପରିକର । ଜୀବନ ବିନିମୟରେ ଦେଶର ମୁକ୍ତି ପାଇଁ ଏ ଦେଶର ଜନତା ହେଲେ ଐକ୍ୟବଦ୍ଧ । ଇଂରେଜ ଶାସନର ଗୁଳିଗୁଳା ବନ୍ଧୁକ ମୁକ୍ତିକାମୀ ଜନତାଙ୍କୁ ଲକ୍ଷ୍ୟଚ୍ୟୁତ କରି ପାରିଲା ନାହିଁ । ସ୍କୁଲ, କଲେଜ, ପରିତ୍ୟାଗ କରି ଛାତ୍ର ସମାଜ ଏହି ଆନ୍ଦୋଳନରେ ଯୋଗଦେଲେ । ପୁରପଲ୍ଲୀର କୃଷକ ସମାଜ ମଧ୍ୟ ଗଭୀର ମନୋବଳ ନେଇ ମୁକ୍ତିକାମୀ ଯୁଦ୍ଧରେ ଶହୀଦ ହେବାକୁ ବାହାରି ଆସିଲେ । ଖୁଦିରାମ, ଲକ୍ଷ୍ମଣ ନାଏକ, ଭଗତ ସିଂ, ଉଦ୍ଧାମ ସିଂ ହସି ହସି ଝୁଲି ପଡ଼ିଛନ୍ତି ବ୍ରିଟିଶ ଶାସନର ଫାଶି ଖୁଣ୍ଟରେ । ଝଣ୍ଡା ଉଞ୍ଚା ରହେ ହମାରା ଧ୍ୱନି ଦେଉ ଦେଉ ପଞ୍ଚସ୍ତରୀ ବର୍ଷର ବୃଦ୍ଧା ମାତାଙ୍ଗିନୀ ହାଜାରା ଲୋଟି ପଡ଼ିଛନ୍ତି ମାତୃଭୂମି କୋଳରେ । ବୀରାଙ୍ଗନା ଝାନସୀ ରାଣୀ ଲକ୍ଷ୍ମୀବାଈ ସମର କ୍ଷେତ୍ରରେ ଯୁଦ୍ଧ କରୁ କରୁ ଶତ୍ରୁ ପକ୍ଷର ଅସ୍ତ୍ରାଘାତରେ ହୋଇଛନ୍ତି ଧରାଶାୟୀ । ବାର ବର୍ଷର ବାଳକ ବାଜି ରାଉତ ଛାତି ପାତି ଦେଇଛନ୍ତି ବ୍ରିଟିଶ ଶକ୍ତିର ଗୁଳିରେ । ଅନୈକ୍ୟ ମଧ୍ୟରେ ଐକ୍ୟ, ବୈଶାଦୃଶା ମଧ୍ୟରେ ସାଦୃଶ୍ୟ ଏହି ବୈଷମ୍ୟ ଭିତରେ ସାମ୍ୟ ସୃଷ୍ଟି କରିବା ହିଁ ଭାରତୀୟ ସଂସ୍କୃତିର ମୂଳମନ୍ତ୍ର ଅଟେ । ବ୍ରିଟିଶ ଶାସନର ଅଧୀନରେ ରହି ଗୋଲାମୀ କରି ଜୀବନ ଅତିବାହିତ କରିବାକୁ ସେମାନେ କୁଣ୍ଠାବୋଧ ପ୍ରକାଶ କଲେ । ମହାମାନବ ମାହାତ୍ମା ଗାନ୍ଧୀ ଭାରତୀୟ ମୁକ୍ତି ଆନ୍ଦୋଳନର ଭଗୀରଥ । ସେ ହେଲେ ଭାରତର ଅଗଣିତ ଜନତାର ମୁକୁଟହୀନ ସମ୍ରାଟ । ପରାଧୀନ ଭାରତବର୍ଷକୁ ବ୍ରିଟିଶ ଶାସନ ଦାଉରୁ ଉଦ୍ଧାର

କରିବାକୁ ସେ ହେଲେ ବଦ୍ଧପରିକର । ଏହି ଆନ୍ଦୋଳନକୁ ରୂପରେଖ ଦେଲେ ମହାମାନବ ମାହାତ୍ମା ଗାନ୍ଧୀ ।

ଭାରତବର୍ଷର ସ୍ୱାଧୀନତା ସଂଗ୍ରାମ ଇତିହାସରେ ଠକ୍କରବାପାଙ୍କ ଭୂମିକା ଏକ ଉଲ୍ଲେଖନୀୟ ଘଟଣା । ଓଡ଼ିଶାର ବନ୍ଧୁଭାବେ ସୁପରିଚିତ ଜନସେବକ ତଥା ବିଶିଷ୍ଟ ସଂଗ୍ରାମୀ ଠକ୍କର ବାପା ଗୁଜରାଟର ଭାବନଗରଠାରେ ୧୮୬୯ ମସିହା ନଭେମ୍ବର ୨୯ ତାରିଖରେ ଏକ ଅମୃତ ଲଗ୍ନରେ ଜଣେ ସଚ୍ଚା ଦେଶଭକ୍ତ ଅମୃତ ଲାଲ ଜନ୍ମଗ୍ରହଣ କରିଥିଲେ । ଜଣେ ଆଦର୍ଶ ଦେଶଭକ୍ତର ସମସ୍ତ ଲକ୍ଷଣ ତାଙ୍କ ବାଲ୍ୟଜୀବନରୁ ବାରିହୋଇ ଯାଉଥିଲା । ଗ୍ରାମରୁ ବାଲ୍ୟ ଶିକ୍ଷା ସମାପ୍ତ କରି ପୁନା ଇଞ୍ଜିନିୟରିଂ କଲେଜରୁ କୃତିତ୍ୱର ସହ ସମ୍ମାନର ସହିତ ସେ ଇ.ସି.ଇ ଉପାଧି ପ୍ରାପ୍ତ ହେଲେ । ପିତାଙ୍କ ପ୍ରେରଣାରେ ସେ ଦକ୍ଷିଣ ଆଫ୍ରିକା ଗମନ କରି ସେଠାରେ ଜଣେ ସୁଦକ୍ଷ ରେଲୱେ ଇଞ୍ଜିନିୟର ଭାବେ ପରିଚୟ ପାଇଲେ । ମାତ୍ର ସ୍ୱଦେଶକୁ ଫେରି ଦେଶପାଇଁ କିଛି କରି ଦେଖାଇବାକୁ ଚେଷ୍ଟିତ ଥିବା ଏହି ଯୁବକଙ୍କୁ ଶେଷରେ ଭାରତର ବାଣିଜ୍ୟ ସହର ଭାବେ ଜଣାଶୁଣା ବମ୍ବେନଗରୀ ମୁନିସପାଲ କର୍ପୋରେସନରେ ସିଭିଲ ଇଞ୍ଜିନିୟର ପଦବୀ ମିଳିଗଲା । ସ୍ୱାଧୀନ ଚିନ୍ତନରେ ଜନସେବା ପାଇଁ ସଂକଳ୍ପ ନେଇଥିବା ଏହି ଯୁବ ଇଞ୍ଜିନିୟର ଅଧିକ ସମୟ ସରକାରୀ ଚାକିରିରେ ଆବଦ୍ଧ ହୋଇପାରିଲେ ନାହିଁ । ଉଚ୍ଚମନା ଅମୃତ ଲାଲ ଠକ୍କର ଉଚ୍ଚ ଚାକିରି ଛାଡ଼ି ପରମ ଦେଶଭକ୍ତ ଗୋପାଲ କୃଷ୍ଣ ଗୋଖେଲଙ୍କ ପ୍ରତିଷ୍ଠିତ ସେବା ସଂସ୍ଥା ସର୍ଭେଂଟ ଅଫ୍ ଇଣ୍ଡିଆ ସୋସାଇଟିର ସେବକ ଭାବେ ସାମିଲ ହୋଇଗଲେ । ଏହାପରେ ସେ ଆଉ ପଛକୁ ନ ଚାହିଁ ଦେଶର ଅଗଣିତ ଅବହେଳିତ ଜନତାର ସେବାରେ ନିଜକୁ ହଜାଇ ଦେଲେ। ଦେଶ ମାତୃକାର ସେବାପାଇଁ ଏହାପରେ ସେ ଆଗ ପଛକୁ ନ ଚାହିଁ ଦେଶର ଅଗଣିତ ଅବହେଳିତ ଜନତାର ସେବାରେ ନିଜକୁ ହଜାଇ ଦେଲେ ।

ମହାମାନବ ମହାତ୍ମାଗାନ୍ଧୀ ଦକ୍ଷିଣ ଆଫ୍ରିକାରୁ ସ୍ୱଦେଶ ଫେରି ସ୍ୱାଧୀନ ଭାରତର ସ୍ୱପ୍ନ ଦେଖୁଥିବା ସମୟରେ ପ୍ରଥମେ ତାଙ୍କ ଆଖି ଆଗରେ ପଡ଼ିଲେ ସମାଜସେବା ଓ ଦେଶସେବା ପାଇଁ ବ୍ୟାକୁଳ ଥିବା ଯୁବକ ଅମୃତଲାଲ । ତାଙ୍କ ନିଷ୍ଠା ଓ ଦକ୍ଷତା ଗାନ୍ଧିଜୀଙ୍କୁ ବିଶେଷ ଭାବେ ପ୍ରଭାବିତ କରିଥିଲା । ଗାନ୍ଧିଜୀ ଉତ୍କଳମଣି ଗୋପବନ୍ଧୁଙ୍କ ନିକଟତର ହୋଇ ଓଡ଼ିଶାର ବନ୍ୟା, ବାତ୍ୟା, ମରୁଡ଼ି ଓ ଦୁର୍ଭିକ୍ଷ ଜର୍ଜରିତ ଜନତାର ଦୁଃଖ ଶ୍ରବଣ କରି ଅମୃତଲାଲ ଠକ୍କରଙ୍କୁ ଓଡ଼ିଶା ପଠାଇବାକୁ ଗାନ୍ଧିଜୀ ଉଚିତ୍ ମନେକଲେ । ଗାନ୍ଧିଜୀଙ୍କ ଅନୁରୋଧକୁ ଆଦେଶମାନି ସେ ଓଡ଼ିଶା ଆସି ସତ୍ୟବାଦୀ ବନ ବିଦ୍ୟାଳୟରେ ଉତ୍କଳମଣି ଓ ତାଙ୍କ ସେବା ସହଯୋଗୀମାନଙ୍କୁ ସାକ୍ଷାତ କଲେ । ସେଠାରେ ଏକ ମାଷ୍ଟର ପ୍ଲାନ ପ୍ରସ୍ତୁତ କରାଯାଇ ଅବହେଳିତ ଓଡ଼ିଶାର ଉତ୍ଥାନ ପାଇଁ ଜନସମ୍ପର୍କ ଓ ଜନସେବା କାର୍ଯ୍ୟ ଆରମ୍ଭ ହେଲା । ଏହାର ମୁଖ୍ୟ ଦାୟିତ୍ୱ ଅମୃତ ଲାଲ ଠକ୍କରଙ୍କୁ ଦାୟିତ୍ୱ ଅର୍ପଣ କରାଗଲା । ଅମୃତ ଲାଲ ମଧ୍ୟ ଏପରି ଏକ କଠିନ ପରୀକ୍ଷା ପାଇଁ ନିଜକୁ ସେ ପ୍ରସ୍ତୁତ କରି ନେଲେ । ଆବଶ୍ୟକ ସ୍ଥଳରେ ଅନେକ ଅପହଞ୍ଚ ସ୍ଥାନରେ ପହଞ୍ଚାଗଲା ସମର୍ପିତ ସେବକଙ୍କ ସେବା କାର୍ଯ୍ୟ ଅଗ୍ରସର କରିବାକୁ। ଓଡ଼ିଶାର ଉପକୂଳରେ ଏକ ମହାବାତ୍ୟା ଦେଖାଦେଇ ଅନେକ ଧନଜୀବନ ନଷ୍ଟ କଲା । ଗୋପବନ୍ଧୁଙ୍କ ଆହ୍ୱାନରେ ବୈଠକ ବସି ଗଢ଼ାହେଲା ଓଡ଼ିଶା ରିଲିଫ ପରିଚାଳନା କମିଟି ଓ ପରିଚାଳନାର ଦାୟିତ୍ୱ ଅର୍ପଣ କରାଗଲା ଅମୃତ ଲାଲ ଠକ୍କରଙ୍କୁ। ଇଂରେଜ ସରକାର ମଧ୍ୟ ରିଲିଫ ପରିଚାଳନା ପାଇଁ ଠକ୍କରଜୀଙ୍କ ପରାମର୍ଶ ଲୋଡ଼ିଲେ। ଚିରଦୁଃଖିନୀ ଓଡ଼ିଶାରେ ପ୍ରଳୟଙ୍କରୀ ବନ୍ୟା ଦେଖାଦେଇ ଆର୍ଥିକ ମେରୁଦଣ୍ଡ ଭାଙ୍ଗିଦେଲା । ଧନ ଜୀବନ ସହିତ ଚାଷୀଙ୍କ ଫସଲର ବିଲୟ ଘଟିଲା । ଖାଦ୍ୟ ବିନା ଓଡ଼ିଶାରେ ହାହାକାର ଚାରିଆଡ଼େ ଦେଖାଦେଲା । ମାତ୍ର ଅମୃତଲାଲ ଠକ୍କରଜୀ ଧୈର୍ଯ୍ୟର ସହ କାର୍ଯ୍ୟ ପରିଚାଳନା କରି ଅବସ୍ଥା ସମ୍ଭାଳି ନେଲେ । ସମଗ୍ର ଦେଶରୁ ରିଲିଫ ଆସି ଦୁଃସ୍ଥ ଜନତାର ପାଖରେ ପହଞ୍ଚିଗଲା । କର୍ମ ସଂସ୍ଥାନ ମଧ୍ୟ ଯୋଗାଇ ଦେବାର ବ୍ୟବସ୍ଥା ସେବାଶ୍ରମ ମାଧ୍ୟମରେ କରାଗଲା । ଏଭଳି ଅଭୂତ ପୂର୍ବ ଆପଦ ପରିଚାଳନା ଓ ଜନସେବାର ଦକ୍ଷତା ଦେଖି ନିଜେ ଗାନ୍ଧିଜୀ ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ଅମୃତ ଲାଲ ଠକ୍କରଙ୍କୁ ବାପା ବୋଲି ସମ୍ବୋଧନ କରି ଉଚ୍ଚ ପ୍ରଶଂସା କଲେ । ସେହିଦିନଠାରୁ ଅମୃତଲାଲ ଠକ୍କର ହୋଇଗଲେ ଠକ୍କର ବାପା ନାମରେ ପରିଚିତ । ଇଂରେଜ ସରକାର ମଧ୍ୟ ଠକ୍କରଜୀଙ୍କ ଜନସେବାକୁ ସ୍ୱୀକୃତି ପ୍ରଦାନ କରି ସରକାରୀ ସେବା କ୍ଷେତ୍ରରେ ତାଙ୍କ

ସହଯୋଗ କାମନା କଲେ । ଚିର ଅବହେଳିତ ଓଡ଼ିଶାବାସୀ ବହୁଦିନ ପରେ ଜଣେ ସୁଦକ୍ଷ ବନ୍ଧୁଙ୍କୁ ପାଇଗଲେ । ବ୍ରହ୍ମଦାରୁପ୍ରାପ୍ତ କ୍ଷେତ୍ରର ପରିଚୟ ପାଇଥିବା ପବିତ୍ର ପ୍ରାଚୀତଟରେ ତାଙ୍କର ଅନେକ ସେବା କେନ୍ଦ୍ର ଥିଲା । ଏ ସମସ୍ତ କେନ୍ଦ୍ର ପରିଚାଳନା ଦାୟିତ୍ୱ ପ୍ରାଚୀତଟ ତୁଳସୀପୁର ଗ୍ରାମର ସତ୍ୟାଗ୍ରହୀ ଇନ୍ଦୁମତି ଦେବୀ ପରିଚାଳନା କରୁଥିଲେ । ଉଭୟ ଗାନ୍ଧୀଙ୍କ ବେରବୋଇ ସମାବେଶରେ ସେବାଦାନ କରି ବାପୁଙ୍କଠାରୁ ପ୍ରଶଂସା ପାଇଥିଲେ ।

ଓଡ଼ିଶାବାସୀଙ୍କ ପାଇଁ କର୍ମ ସଂସ୍ଥାନ କାର୍ଯ୍ୟ ମଧ୍ୟ ଠକ୍କରବାପା ଆରମ୍ଭ କରିଦେଲେ । ଗ୍ରାମେ ଗ୍ରାମେ ସ୍ୱଦେଶୀ ବସ୍ତ୍ର ପ୍ରସ୍ତୁତି ପାଇଁ କପା ଚାଷ, କପା ସୂତା ଉତ୍ପାଦନ, ଖଦଡ଼ ପ୍ରସ୍ତୁତି ତାଙ୍କରି ପ୍ରଚେଷ୍ଟାରୁ ସମ୍ଭବ ହୋଇଥିଲା । ଭାରତର ଖଦୀ ପ୍ରସ୍ତୁତି କ୍ଷେତ୍ରରେ ଓଡ଼ିଶାର ନାମ ଯୋଡ଼ି ହୋଇଗଲା ତାଙ୍କ ହାତଗଢ଼ା ସେବାଗ୍ରାମ ସେବା କୁଟୀରଗୁଡ଼ିକ । ଆପଦକାଳୀନ ସେବା ପ୍ରଦାନ ସହ କପାଚାଷ, ଖଦଡ଼ ପ୍ରସ୍ତୁତି, ମହୁ ଚାଷ, କତା ଶିକ୍ଷ, ମୌଳିକ ଶିକ୍ଷାଦାନ କାର୍ଯ୍ୟସହ ସାମିଲ ହୋଇଗଲେ । ସେବାକେନ୍ଦ୍ରଗୁଡ଼ିକ ଧୀରେ ଧୀରେ କୁଟୀର ଶିଳ୍ପ କେନ୍ଦ୍ରର ସ୍ୱରୂପ ନେଇ ଗ୍ରାମସ୍ୱରୋଜଗାରର ପନ୍ଥା ଯୋଗାଇଦେଲା । ଗାନ୍ଧିଜୀଙ୍କ କୁଟି ଖାଅ, କାଟି ପିନ୍ଧ ଆହ୍ୱାନକୁ ପ୍ରଥମେ ଓଡ଼ିଶା ଭଳି ଅବହେଳିତ ରାଜ୍ୟରୁ ପୂର୍ଣ୍ଣ ସହଯୋଗ ମିଳିବା ପଛରେ ଠକ୍କରବାପାଙ୍କ ଅବଦାନ ବହୁତ ଥିଲା । ଭାରତବର୍ଷର ହରିଜନ ସେବକ ସଙ୍ଘର ପ୍ରଥମ ଜାତୀୟ ସମ୍ପାଦକ ଥିଲେ ଠକ୍କର ବାପା । ଦେଶରେ ତଥା ଓଡ଼ିଶାରେ ଥିବା ଅଗଣିତ ଅବହେଳିତ ବନବାସୀମାନଙ୍କ କଲ୍ୟାଣ ପାଇଁ ଭାରତର ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦଙ୍କୁ ପ୍ରଭାବିତ କରି ସେ ଗଢ଼ିଥିଲେ ଆଦିମ ଜାତି ସେବକ ସଂଘ ଓ ରାଷ୍ଟ୍ରପତିଙ୍କ ଅନୁରୋଧକ୍ରମେ ଏହି ଅନୁଷ୍ଠାନରେ ପ୍ରଥମ ସାଧାରଣ ସମ୍ପାଦକ ଦାୟିତ୍ୱ ଦକ୍ଷତାର ସହ ତୁଲାଇଥିଲେ । ଆଜିର ଦିନରେ ମଧ୍ୟ ଜନଜାତିମାନଙ୍କ ଉତ୍ଥାନ କଥା ପଡ଼ିଲେ ପ୍ରଥମ ମନରେ ଆସିଥାଏ ସେହି ଠକ୍କର ବାପାଙ୍କ ଅବିସ୍ମରଣୀୟ ଘଟଣା । ଠକ୍କର ବାପାଙ୍କ ପ୍ରୋତ୍ସାହନରେ ଓଡ଼ିଶାରେ ଖଦୀ ପ୍ରସ୍ତୁତି ପାଇଁ ଏକ ପ୍ରକାର ଭିତ୍ତିଭୂମି ହିଁ ପଡ଼ିଥିଲା । ଗୋରା ଫଉଜଙ୍କ ବିରୋଧରେ ସଂଗ୍ରାମ ପାଇଁ ସେ ବିଭିନ୍ନ ସେବାଶ୍ରମ ଓ କୁଟୀର ଗଢ଼ି ସଂଗ୍ରାମୀମାନଙ୍କୁ ନିରାପଦ ଆଶ୍ରୟ ଦେଇପାରୁଥିଲେ । ଗାନ୍ଧିଜୀଙ୍କ କୁଟି ଖାଅ ଓ କାଟି ପିନ୍ଧ ଆହ୍ୱାନକୁ ପ୍ରଥମେ ଓଡ଼ିଶା ଭଳି ରାଜ୍ୟରୁ ପୂର୍ଣ୍ଣ ସମର୍ଥନ ମିଳିବା ପଛରେ ଥିଲା ଠକ୍କର ବାପାଙ୍କ ବିଶେଷ ଅବଦାନ ।

ଠକ୍କର ବାପା ଏକାଧାରରେ ଥିଲେ ଜଣେ ସୁଦକ୍ଷ ଇଞ୍ଜିନିୟର, ସଚ୍ଚା ଦେଶଭକ୍ତ, ଅବହେଳିତ ଦୁଃଖୀ ଜନତାର ଦରଦୀ ବନ୍ଧୁ, ସମର୍ପିତ ସମାଜ ସେବକ, ନିର୍ଭୀକ ସଙ୍ଗଠକ ଓ ସର୍ବୋପରି ଜଣେ ମାନବଧର୍ମୀ ଦରଦୀ ହୃଦୟର ବ୍ୟକ୍ତିତ୍ୱ । ମହାତ୍ମା ଗାନ୍ଧୀଙ୍କ ସମସାମୟିକ ନୀତିନିଷ୍ଠ ସୁଦକ୍ଷ ସତ୍ୟାଗ୍ରହୀଭାବେ ମଧ୍ୟ ତାଙ୍କର ଖ୍ୟାତି ରହିଛି । ସେ ଥିଲେ ଅବହେଳିତ, ଅଣଦେଖା ଦୁଃସ୍ଥ ମଣିଷର ଆଶାର କେନ୍ଦ୍ରବିନ୍ଦୁ । ତାଙ୍କ ସମର୍ପିତ ଜନସେବାକୁ କେବଳ ଓଡ଼ିଶା ନୁହେଁ ସମଗ୍ର ଦେଶ କେବେବି ଭୁଲି ପାରିବ ନାହିଁ । ଏହି ମହାନ ସଫଳ ଭାରତୀୟ ଜନସେବକ ଠକ୍କର ବାପା ୧୯୫୧ ମସିହା ଜାନୁଆରୀ ୨୦ ତାରିଖ ଦିନ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ତାଙ୍କ ସ୍ମୃତିରେ ତାଙ୍କ ଅନୁଗାମୀମାନେ ତାଙ୍କ ଦ୍ୱାରା ଗଠିତ ଜନସେବା କେନ୍ଦ୍ର ପରିଚାଳନା କରି କିଛି ଦିନ ତାଙ୍କ ସ୍ମୃତିକୁ ଉଦ୍‌ଜୀବିତ କରିପାରିଲେ ପରିଶେଷରେ ଦେଶଭକ୍ତ ନାଗରିକମାନେ ଦେଶକୁ ଗାନ୍ଧିଜୀଙ୍କ ସ୍ୱପ୍ନର ରାମରାଜ୍ୟ ଦେଇ ପାରିବେ ଓ ସ୍ୱଚ୍ଛ ଭାରତ ସ୍ୱପ୍ନକୁ ମଧ୍ୟ ସାକାର କରିପାରିବେ, ଏଥିରେ କୌଣସି ସନ୍ଦେହ ନାହିଁ ।

---

ଗ୍ରାମ /ପୋ.ଅ – ଖିଚିଂ, ଜିଲ୍ଲା – ମୟୂରଭଞ୍ଜ
ପିନ୍– ୭୫୭୦୩୯

# ସାରଳା ମହାଭାରତରେ ନବଗୁଞ୍ଜର ରୂପ ଏକ ନୂତନ କଳ୍ପନା

ଅନାମ ଚନ୍ଦ୍ର ସା

ସାରଳା ମହାଭାରତ ଓଡ଼ିଆ ସାହିତ୍ୟର ଆଦି ଗ୍ରନ୍ଥ । ସାରଳା ଦାସ ମହାଭାରତର କଥାବସ୍ତୁକୁ ଉତ୍କଳୀୟ ପରିବେଶରେ ସମନ୍ୱିତ କରି ଏକ ମୌଳିକ ଗ୍ରନ୍ଥ ରଚନା କରିଛନ୍ତି । ଏହା ହେଉଛି ଓଡ଼ିଆ ଜାତିର ନିଜସ୍ୱ ମହାଭାରତ । ଏଥିରେ ଯେଉଁ ଅତୁଳନୀୟ ଗଳ୍ପ, ଉପାଖ୍ୟାନ ରହିଛି, ତାହା ଯେତିକି ଚିତ୍ତାକର୍ଷକ ତତୋଧିକ ଶିକ୍ଷାପ୍ରଦ । ଏହି ଗଳ୍ପ, ଉପାଖ୍ୟାନ ବିଭବ ହିଁ ସାରଳା ମହାଭାରତର ବିଶେଷତ୍ୱ । ଏହି ମହାନ୍ ଗ୍ରନ୍ଥ ଅଧ୍ୟୟନରୁ ପଞ୍ଚଦଶ ଶତାବ୍ଦୀର ଓଡ଼ିଆ ଭାଷା ସାହିତ୍ୟ ସମ୍ବନ୍ଧରେ ଜ୍ଞାନପ୍ରାପ୍ତି ହେବା ସହିତ ତତ୍କାଳୀନ ଓଡ଼ିଶାର ରାଜନୈତିକ ଅବସ୍ଥା, ସାମାଜିକ ଜୀବନ, ସାଂସ୍କୃତିକ ଚେତନା, ଧାର୍ମିକ ଭାବନା ଆଦିର ସବିଶେଷ ବିବରଣୀ ମିଳିଥାଏ । ସଂସ୍କୃତ ମହାଭାରତରେ ନଥିବା ବହୁ ଉପାଖ୍ୟାନ ବା ଆଖ୍ୟାୟିକା ସାରଳା ମହାଭାରତରେ ଦେଖିବାକୁ ମିଳିଥାଏ । ପ୍ରତି ଆଖ୍ୟାୟିକା ମଧ୍ୟରେ କିଛି ନା କିଛି ଦର୍ଶନ ବା ତତ୍ତ୍ୱ ରହିଥିବା ଜଣାଯାଏ । ଏହି ମହାଭାରତରେ ଥିବା ଆଖ୍ୟାୟିକାମାନଙ୍କ ମଧ୍ୟରେ ଶ୍ରୀକୃଷ୍ଣଙ୍କ 'ନବଗୁଞ୍ଜର ରୂପ' ଉପାଖ୍ୟାନ ସାରଳାଙ୍କର ଏକ ନୂତନ କଳ୍ପନା ଓ ନିଜସ୍ୱ ସୃଷ୍ଟି । ମୂଳ ମହାଭାରତରେ ଏହି ପ୍ରସଙ୍ଗ ନାହିଁ । ସର୍ବପ୍ରଥମେ ନବଗୁଞ୍ଜର ନାମୋଲ୍ଲେଖ ଉତ୍କଳ ବ୍ୟାସ ସାରଳା ଦାସ ତାଙ୍କ ମହାଭାରତରେ କରିଛନ୍ତି ।

ସାରଳା ଦାସ ଥିଲେ ଓଡ଼ିଆ ଭାଷା ସାହିତ୍ୟର ଶ୍ରେଷ୍ଠ ରୂପକାର । ତାଙ୍କ ମହାଭାରତ ଏ ଜାତିର କଳା କୋଣାର୍କ । ଏ ଜାତିର ସଂସ୍କୃତି ଏଥିରେ ଉତ୍କୀର୍ଣ୍ଣ ହୋଇଅଛି । ସାରଳାଙ୍କ ମହାଭାରତରେ ବର୍ଣ୍ଣିତ ନବଗୁଞ୍ଜର ନଅଗୋଟି ପ୍ରାଣୀଙ୍କ ଶରୀରାଂଶର ଏକ ବିଚିତ୍ର ସମାବେଶ । ପୁରାଣ ସାହିତ୍ୟରେ କେତେକ ଦେବତାଙ୍କ ରୂପର ବିଚିତ୍ର ବର୍ଣ୍ଣନା ଥିଲେ ମଧ୍ୟ ଆମ ଉପାସିତ ଗଣେଶ, ନୃସିଂହ, ବରାହ ଓ ଗରୁଡ଼ଙ୍କ ଶରୀର ପଶୁ ଓ ମନୁଷ୍ୟ ଶରୀରାଂଶକୁ ନେଇ ଗଠିତ । ପୁରାଣରେ ବର୍ଣ୍ଣିତ ସମସ୍ତ ବିଚିତ୍ର ପ୍ରାଣୀମାନଙ୍କ ମଧ୍ୟରେ ନବଗୁଞ୍ଜର ଏକ ଅଦ୍ଭୁତ, ଅଶ୍ରୁତ ଓ ନୂତନ ପ୍ରାଣୀ । ଏହି ବିଚିତ୍ର ରୂପଧାରୀ ପ୍ରାଣୀର ଶରୀର କୁକୁଟର ମସ୍ତକ, ମୟୂରର କଣ୍ଠ, ବୃଷଭର ଚୂଳ, ସିଂହର କଟୀ, ସର୍ପର ପୁଚ୍ଛକୁ ନେଇ ଗଠିତ । ପୁଣି ଏହାର ତିନିଗୋଟି ପାଦ ମଧ୍ୟରୁ ଗୋଟିଏ ପାଦ ହସ୍ତୀର, ଅନ୍ୟ ଦୁଇ ପାଦ ଅଶ୍ୱ ଓ ବ୍ୟାଘ୍ରର । ତା' ସହିତ ମନୁଷ୍ୟର ଏକମାତ୍ର ହସ୍ତ ଏବଂ ଉକ୍ତ ହସ୍ତରେ ଏକ ପଦ୍ମ ଶୋଭିତ । ସବୁ ସ୍ଥାନରେ ଚିତ୍ରିତ ନବଗୁଞ୍ଜରଙ୍କର ରୂପ ଏକାଭଳି ନୁହେଁ । ସ୍ଥଳବିଶେଷରେ କେଉଁଠି କେଉଁଠି ଚିତ୍ରିତ ନବଗୁଞ୍ଜରର ହସ୍ତରେ ପଦ୍ମ ବଦଳରେ ଚକ୍ର ଧରିଥିବା ଦେଖାଯାଏ । ଉପରୋକ୍ତ ପ୍ରାଣୀମାନଙ୍କ ଶରୀରାଂଶକୁ ସୁନ୍ଦର ଭାବରେ ସଜାଇ ସାରଳା ଦାସ ନବଗୁଞ୍ଜର ଆଖ୍ୟାୟିକା ସୃଷ୍ଟି କରିଛନ୍ତି । ନବଗୁଞ୍ଜରକୁ ପ୍ରାଚୀନ ଓଡ଼ିଶାର ଲୋକକଳା, ଲୋକକଥାଠାରୁ ଆରମ୍ଭ କରି ବହୁ ସାମାଜିକ ଉପାଦାନର ବାହକ ଭାବେ ଗ୍ରହଣ କରାଯାଇପାରେ । ନଅଗୋଟି ପ୍ରାଣୀଙ୍କ ଶରୀରକୁ ନେଇ ନବଗୁଞ୍ଜର ଚିତ୍ର ଅଙ୍କିତ ହେଉଥିଲେ ମଧ୍ୟ ଶ୍ରୀଜଗନ୍ନାଥ ମନ୍ଦିରର ନାଟ୍ୟମଣ୍ଡପ ଭିତରେ ଥିବା ଷୋହଳଗୋଟି ଖମ୍ବ ମଧ୍ୟରୁ ଚତୁର୍ଥ ଧାଡ଼ିର ଏକ ନମ୍ବର ଖମ୍ବର ପୂର୍ବ ପାର୍ଶ୍ୱରେ ଚିତ୍ରିତ ଥିବା ନବଗୁଞ୍ଜରର ରୂପ ଭିନ୍ନ । ଏହି ଖମ୍ବରେ ନାରୀ ମସ୍ତକ ଥିବା ଏକ ନବଗୁଞ୍ଜର ଚିତ୍ର ଦେଖିବାକୁ ମିଳିଥାଏ, ଯାହା ଅନ୍ୟତ୍ର ଦେଖିବାକୁ ମିଳିନଥାଏ । ପାରଂପରିକ ନବଗୁଞ୍ଜର ଚିତ୍ରଠାରୁ ଏ ଚିତ୍ରଟି କାହିଁକି ଭିନ୍ନ ତା'ର କାରଣ ଗବେଷଣା ସାପେକ୍ଷ ।

ନବଗୁଞ୍ଜର ସମ୍ବନ୍ଧରେ ଆଲୋଚନା କରିବାକୁ ହେଲେ ତତ୍‌କାଳୀନ ଓଡ଼ିଶାର ଧାର୍ମିକ ଅବସ୍ଥା ଉପରେ ଦୃଷ୍ଟି ଦେବାକୁ ପଡ଼ିଥାଏ । ସାରଳାଙ୍କ ସମୟ ହେଉଛି ପଞ୍ଚଦଶ ଶତାବ୍ଦୀ । ଏ ଶତାବ୍ଦୀର ଶେଷ ଭାଗକୁ ହିନ୍ଦୁ ଧର୍ମ ହିଁ ଥିଲା ଓଡ଼ିଶାର ମୁଖ୍ୟ ଧର୍ମ । ଧର୍ମକୁ ପୁରାଣର ଆମ୍ଭ କରି ବିଭିନ୍ନ ନୀତିବାକ୍ୟ ଶୁଣାଇ ଲୋକମାନଙ୍କୁ ଧର୍ମପ୍ରତି ଆକୃଷ୍ଟ କରିବା ପାଇଁ ପୁରାଣକାରମାନେ ଚାହୁଁଥିଲେ । ସେମାନେ ଶିବ, ବ୍ରହ୍ମା, ବିଷ୍ଣୁ ଓ ଦୁର୍ଗାଙ୍କୁ ମୁଖ୍ୟ ଦେବଦେବୀ ଭାବେ ଗ୍ରହଣ କରୁଥିଲେ । ସାରଳା ଦାସ ଏହି ପରମ୍ପରାରେ ପାଳିତ ହୋଇଥିଲେ ମଧ୍ୟ ଶ୍ରୀକୃଷ୍ଣ ବା ବିଷ୍ଣୁ ଥିଲେ ତାଙ୍କ ମହାଭାରତର ମୁଖ୍ୟ ନାୟକ । ସାରଳା ଦାସ ତାଙ୍କ ମହାଭାରତରେ ମନୁଷ୍ୟ, ପ୍ରାଣୀ ଓ ପ୍ରକୃତିର ସମାବେଶରେ ନବଗୁଞ୍ଜର ଭଳି ଅଦ୍ଭୁତ ଜୀବଟିକୁ ସୃଷ୍ଟି କରି ପ୍ରମାଣ କରିଦେଲେ ଯେ ଭଗବାନ ବିଶ୍ୱର ସକଳ ପ୍ରାଣୀଙ୍କ ସୃଷ୍ଟିକର୍ତ୍ତା । ସମସ୍ତ ଜଗତ ତାଙ୍କର ଅଂଶବିଶେଷ । ସେ ହିଁ କେବଳ ବନ୍ଧୁ ରୂପରେ ପ୍ରତିଭାତ୍ ହୋଇପାରନ୍ତି ।

ସାରଳା ମହାଭାରତରେ ବର୍ଣ୍ଣିତ ନବଗୁଞ୍ଜର ଉପାଖ୍ୟାନକୁ ଆଲୋଚନା କଲେ ଜଣାଯାଏ, ପାଞ୍ଚାଳ ଦେଶର ରାଜା ଦ୍ରୁପଦଙ୍କ କନ୍ୟା ସକଳ ସଦ୍‌ଗୁଣ ପରିପୂର୍ଣ୍ଣା ଅନିନ୍ଦ୍ୟ ସୁନ୍ଦରୀ ଦ୍ରୌପଦୀଙ୍କ ସ୍ୱୟମ୍ବର ଉତ୍ସବରେ ଲାଖବିନ୍ଧାରେ ଛଦ୍ମବେଶୀ ଅର୍ଜୁନ ବିଜୟୀ ହେବା ପରେ ମା' କୁନ୍ତୀଙ୍କ ନିର୍ଦ୍ଦେଶରେ ଯୁଧିଷ୍ଠିର, ଭୀମ, ଅର୍ଜୁନ, ନକୁଳ ଓ ସହଦେବ ପାଣ୍ଡବ ପାଞ୍ଚଭାଇ ଦ୍ରୌପଦୀଙ୍କୁ ପତ୍ନୀ ରୂପେ ଗ୍ରହଣ କରିଥିଲେ । ପଞ୍ଚପାଣ୍ଡବ ଦ୍ରୌପଦୀଙ୍କ ସ୍ୱାମୀ ହୋଇଥିବାରୁ ସେମାନଙ୍କ ଭିତରେ ସର୍ତ୍ତ ହୋଇଥିଲା–ଯେକର ଶୃଙ୍ଗାର ଯେବେ ଆରେକ ଦେଖଇ/ଦ୍ୱାଦଶ ବରଷ ସେ ବନ କଇଁ ଯାଇ । ଏ ନିଷ୍ପତ୍ତିକୁ ପାଳନ କରି ସେମାନେ ଦ୍ରୌପଦୀଙ୍କ କକ୍ଷକୁ ଯାଉଥିଲେ । ପୌରାଣିକ କିମ୍ବଦନ୍ତୀ ଅନୁଯାୟୀ ଏକଦା ଯୁଧିଷ୍ଠିର ଦ୍ରୌପଦୀଙ୍କ କକ୍ଷରେ ଆଳାପରତ ଥିଲାବେଳେ ଅଗ୍ନିଦେବ ଛଦ୍ମ ବେଶରେ ମହାତେଜସ୍ୱୀ ବ୍ରାହ୍ମଣ ରୂପ ଧରି ଆସି ଅର୍ଜୁନଙ୍କୁ କହିଥିଲେ, ଏକ ସବିଶେଷ କାରଣ ହେତୁ ଯୁଧିଷ୍ଠିରଙ୍କୁ ସଙ୍ଗେ ସଙ୍ଗେ ଡ଼ାକିଆଣିବାକୁ ହେବ, ନଚେତ୍ ତାଙ୍କ ଅଭିଶାପରେ ସମସ୍ତ ଭାଇ ଧ୍ୱଂସ ହୋଇଯିବେ । ବ୍ରାହ୍ମଣଙ୍କ ଅଭିଶାପରୁ ପରିବାରକୁ ରକ୍ଷା କରିବା ପାଇଁ ଅର୍ଜୁନ ନିଜ ସର୍ତ୍ତ ଭଗ୍ନକରି ଯୁଧିଷ୍ଠିରଙ୍କୁ ଡ଼ାକି ଆଣିବା ପାଇଁ ଦ୍ରୌପଦୀଙ୍କ କକ୍ଷକୁ ପ୍ରବେଶ କରିଥିଲେ । ଅସମୟରେ ଅର୍ଜୁନ ଦ୍ରୌପଦୀଙ୍କ କକ୍ଷରେ ପ୍ରବେଶକରି ଅପରାଧ କରିଥିବାରୁ ସର୍ତ୍ତର ନିୟମ ଅନୁଯାୟୀ ତାଙ୍କୁ ବାରବର୍ଷ ବନବାସ କରିବାକୁ ପଡ଼ିଥିଲା । ଏହି ବାରବର୍ଷ ବନବାସ କାଳରେ ଅର୍ଜୁନ ଏକଦା ମଣିଭଦ୍ରା ପର୍ବତ ନିକଟରେ ଏକାକୀ ଅବସ୍ଥାନ କରୁଥିବାବେଳେ ଶ୍ରୀକୃଷ୍ଣ ଅର୍ଜୁନଙ୍କ ବନବାସ ବାର୍ତ୍ତା ପାଇ ପ୍ରାଣପ୍ରିୟ ସଖା ଅର୍ଜୁନଙ୍କୁ ଦେଖାକରିବା ପାଇଁ ମଣିଭଦ୍ରା ପର୍ବତ ନିକଟକୁ ଯାଇଥିଲେ ।

ସାରଳାଙ୍କ ଚକ୍ଷୁରେ ଅର୍ଜୁନ ଶ୍ରୀକୃଷ୍ଣଙ୍କର ପରମ ଭକ୍ତ ଓ ପ୍ରାଣପ୍ରିୟ ସଖା । ଏହାକୁ ଦର୍ଶାଇବାକୁ ଯାଇ ସେ ମହାଭାରତରେ ବର୍ଣ୍ଣନା କରିଛନ୍ତି । ଯେକଇ ଶରୀର ଆମ୍ଭେ କୃଷ୍ଣ ଫାଲଗୁନି(ମଧ୍ୟପର୍ବ, (୧):୨୧୧) । ପରମ ମିତ୍ର ହିଁ ମିତ୍ରକୁ ଚିହ୍ନିବାରେ ସମର୍ଥ ହୋଇଥାଏ । ସେଥିପାଇଁ ସାରଳା ଦାସ ମହାଭାରତରେ ଭଗବାନ ଶ୍ରୀକୃଷ୍ଣଙ୍କର ନବଗୁଞ୍ଜର ରୂପଟିକୁ ଅର୍ଜୁନଙ୍କୁ ଦେଖାଇ ଏହା ମାଧ୍ୟମରେ କୃଷ୍ଣ ଅର୍ଜୁନଙ୍କ ବନ୍ଧୁତ୍ୱର ଗାଢ଼ତ୍ୱ, ଭକ୍ତ ନିଜ ଅନ୍ତରର ପ୍ରେମଭାବକୁ ଭଗବାନଙ୍କୁ କିପରି ଅର୍ପଣ କରୁଥିଲା, ତା'ର ଉନ୍ମେଷ ଓ ଉତ୍ତରଣ କରିଛନ୍ତି ।

ସାରଳାଙ୍କ ନବଗୁଞ୍ଜର ଉପାଖ୍ୟାନର ବର୍ଣ୍ଣନା ଅନୁଯାୟୀ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଦେଖାକରିବା ପାଇଁ ମଣିଭଦ୍ରା ପର୍ବତ ନିକଟରେ ପହଞ୍ଚିଥିଲେ । କୌରବଙ୍କ ସର୍ତ୍ତ ଥିଲା ବନବାସ କାଳରେ କେହି ପାଣ୍ଡବମାନଙ୍କୁ ଚିହ୍ନିଦେଲେ ପୂର୍ବ ପ୍ରତିଜ୍ଞାନୁଯାୟୀ ସେମାନଙ୍କୁ ଦଣ୍ଡ ମିଳିବ । ସେଥିପାଇଁ ଶ୍ରୀକୃଷ୍ଣ ନବଗୁଞ୍ଜର ରୂପରେ ଅର୍ଜୁନଙ୍କୁ ଦେଖା କରିଥିଲେ । ଅର୍ଜୁନଙ୍କର ଅନତି ଦୂରରେ ଭଗବାନ ଶ୍ରୀକୃଷ୍ଣଙ୍କର ନବଗୁଞ୍ଜର ମୂର୍ତ୍ତି ଶୋଭା ପାଉଥାଏ । ଅର୍ଜୁନ କିନ୍ତୁ ସେ ଆଡ଼କୁ ଲକ୍ଷ୍ୟ କରିନଥାଆନ୍ତି । ବ୍ରହ୍ମଜ୍ଞାନୀ ବ୍ରହ୍ମରେ ଲିପ୍ତ ଥିବାପରି ସ୍ଥିତପ୍ରଜ୍ଞ ଅର୍ଜୁନ ନିଜ କର୍ମରେ ବିଶେଷ ମଗ୍ନ ରହିଥିବାରୁ ଶ୍ରୀକୃଷ୍ଣଙ୍କ ଛଦ୍ମରୂପ ବା କ୍ରିୟା ତାଙ୍କୁ ଆକର୍ଷିତ କରିପାରି ନ ଥିଲା । ତେଣୁ ଶ୍ରୀକୃଷ୍ଣ ଅର୍ଜୁନଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ଚାହିଁଥିଲେ । ପ୍ରାଣପ୍ରିୟ ସଖା ତାଙ୍କୁ ଚିହ୍ନିପାରୁଛନ୍ତି କି ନାହିଁ, ବନ୍ଧୁତ୍ୱର ଗାଢ଼ତ୍ୱକୁ ପରଖିବା ପାଇଁ ତାଙ୍କୁ କଷଣ କରିବା ଅଭିପ୍ରାୟରେ ମାୟାଧର ଶ୍ରୀକୃଷ୍ଣ କୌତୁକରେ ମାୟା ପ୍ରକାଶ କରି ନିଜର ଅଲୌକିକ ଶକ୍ତି ବଳରେ ଗୋଟିଏ ରୂପ ମଧ୍ୟରେ ନଅଗୋଟି ରୂପ ପ୍ରକାଶ କରି ବିଚିତ୍ର ନବଗୁଞ୍ଜର ରୂପ ଧାରଣ କରିଥିଲେ । ବିଚିତ୍ର ମୂରତି ଧଇଲେ ଚକ୍ରଧର/କି ଅବା କହିବା ସେହି ରୂପ ପଟାନ୍ତର । ତାହା ଅର୍ଜୁନଙ୍କୁ ଆକର୍ଷିତ

କରି ନ ପାରିବାରୁ ସେ ଅର୍ଜୁନଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ଯତ୍ନ ସହକାରେ ନୃତ୍ୟକୁ ମାଧ୍ୟମ କଲେ ଓ ଶେଷରେ ଅର୍ଜୁନଙ୍କ ମନଯୋଗ ହରଣ କଲେ। ଅର୍ଜୁନ ଥିଲେ ଶ୍ରୀକୃଷ୍ଣଙ୍କ ପ୍ରାଣର ପଞ୍ଚଭୂତ। ମାୟାବୀ ଶ୍ରୀକୃଷ୍ଣଙ୍କର ଲୀଳାକୁ ବୁଝିବା ତାଙ୍କ ପାଇଁ କଷ୍ଟକର ନଥିଲା। ସମ୍ମୁଖରେ ନୃତ୍ୟ କରୁଥିବା ନଅଗୋଟି ପ୍ରାଣୀଙ୍କ ସମ୍ମିଳିତ ଶରୀରର ଅଶ୍ରୁତ, ଅଦ୍ଭୁତ, ନୂତନ ଜୀବଟିକୁ ଦେଖି ଅର୍ଜୁନ ସାମାନ୍ୟ ବିସ୍ମିତ ନ ହୋଇ ଏହା ଶ୍ରୀକୃଷ୍ଣଙ୍କ ମାୟା ରୂପ ବୋଲି ଠଉରାଇ ନେଇଥିଲେ। ସାଧାରଣତଃ ଯେକୌଣସି ପ୍ରାଣୀର ଗୋଟିଏ ରୂପ ଥାଏ, ଏକକାଳୀନ କୌଣସି ପ୍ରାଣୀ ନଅଗୋଟି ରୂପ ଧାରଣ କରି ନ ପାରେ। ଅର୍ଜୁନ ମନେ ମନେ ଚିନ୍ତା କଲେ, ଏମନ୍ତ ସରୂପ ଜୀବ ମୋର ଦେଖିଲା ତ ନାହିଁ / ମାୟା ସରୂପ ପ୍ରାୟେ ଦିଶୁଅଛି ମୋତେ ଯେହି/ମାୟାରୂପ ଅବା କମଳାର କାନ୍ତ/ମୋତେ କଷଣ କରିବାକୁ ଅବା ଅଇଲେ ପଦ୍ମ ନେତ୍ର। ଏହା ଅର୍ଜୁନଙ୍କ ହୃଦ୍‌ବୋଧ ହେବାରୁ ନବଗୁଞ୍ଜରକୁ ସେ ଶ୍ରୀକୃଷ୍ଣଙ୍କର ଲୀଳା ଅବତାର ଭିନ୍ନ ଅନ୍ୟ କିଛି ନୁହେଁ ଜାଣି, ଶ୍ରୀକୃଷ୍ଣଙ୍କୁ ଚିହ୍ନିପାରି ତାଙ୍କ ବିସ୍ମିତ ରୂପ ଓ କ୍ରିୟାରେ ଆକର୍ଷିତ ହୋଇ ଭକ୍ତି, ସ୍ତୁତି ମାଧ୍ୟମରେ ତାଙ୍କ ଭଗବାନତ୍ୱକୁ ସ୍ୱୀକାର କଲେ। ଶ୍ରୀକୃଷ୍ଣ ଅର୍ଜୁନଙ୍କ ବନ୍ଦନାରେ ସନ୍ତୁଷ୍ଟ ହୋଇ ନିଜ ମାୟା ନବଗୁଞ୍ଜର ରୂପ ଦୂରେଇ ଦେଇ ନବୀନ ସୁନ୍ଦର ବେଶରେ ସ୍ୱରୂପକୁ ଫେରିଆସି ଅର୍ଜୁନଙ୍କୁ ଦର୍ଶନ ଦେଲେ। ଅର୍ଜୁନ ତାଙ୍କର ମାୟା ରୂପ ଦେଖି ମଧ୍ୟ ତାଙ୍କୁ ଚିହ୍ନିପାରିଥିବାରୁ ଭଗବାନ ଅର୍ଜୁନଙ୍କୁ ପ୍ରଶଂସା କଲେ। ଲକ୍ଷ୍ୟ କରିବାର କଥା ସାରଳା ମହାଭାରତରେ ବର୍ଣ୍ଣିତ ଶ୍ରୀକୃଷ୍ଣଙ୍କ ବିଶ୍ୱରୂପ ଓ ନବଗୁଞ୍ଜର ରୂପକୁ ଅର୍ଜୁନ ହିଁ କେବଳ ଦେଖିଥିଲେ। ଦିବ୍ୟଚକ୍ଷୁର ଅଧିକାରୀ ଅର୍ଜୁନ କୁରୁକ୍ଷେତ୍ରରେ ଭଗବାନ ଶ୍ରୀକୃଷ୍ଣଙ୍କ ବିଶ୍ୱରୂପ ଦର୍ଶନ କରି ନିଜ କର୍ତ୍ତବ୍ୟ ସମ୍ପର୍କରେ ସଚେତନ ହୋଇଛନ୍ତି। ମାତ୍ର ଶ୍ରୀକୃଷ୍ଣଙ୍କ ନବଗୁଞ୍ଜର ରୂପ ଦର୍ଶନ ପାଇଁ ଅର୍ଜୁନଙ୍କୁ ଦିବ୍ୟ ଚକ୍ଷୁର ଆବଶ୍ୟକତା ପଡ଼ି ନାହିଁ। ବିଶ୍ୱରୂପ ଦର୍ଶନ ପରି ଏ ରୂପ ଦର୍ଶନ ପାଇଁ ଆତ୍ମଜ୍ଞାନ, ଦିବ୍ୟଚକ୍ଷୁ ପରିବର୍ତ୍ତେ ରହିଛି ପ୍ରେମ ଭକ୍ତିର ସରଳ ଅନୁଚିନ୍ତନ। ବନ୍ଧୁତ୍ୱର ଗାଢ଼ତ୍ୱ ନେଇ ଅର୍ଜୁନ ପ୍ରାଣସଖା ଭଗବାନ ଶ୍ରୀକୃଷ୍ଣଙ୍କୁ ସହଜରେ ଚିହ୍ନି ପାରିଛନ୍ତି। ସୂକ୍ଷ୍ମଭାବରେ ଦେଖିଲେ ମୋହଗ୍ରସ୍ତ ଅର୍ଜୁନଙ୍କ ମୋହ ନାଶ ପାଇଁ ଭଗବାନ ବିଶ୍ୱରୂପ ମଧ୍ୟରେ ତାଙ୍କୁ ସମଗ୍ର ବ୍ରହ୍ମାଣ୍ଡ ଦର୍ଶାଇଥିଲେ। ଏହା ସୌନ୍ଦର୍ଯ୍ୟ, ଶକ୍ତି, ବିସ୍ମୟ ଓ ଭୟର ପ୍ରତୀକ ଥିଲା। ନବଗୁଞ୍ଜର ରୂପ ମଧ୍ୟ ଶ୍ରୀକୃଷ୍ଣଙ୍କ ବିଶ୍ୱରୂପ ପ୍ରଦର୍ଶନର ଏକ କ୍ଷୁଦ୍ର ସଂସ୍କରଣ। କୃଷ୍ଣ-ଅର୍ଜୁନଙ୍କ ବନ୍ଧୁତ୍ୱର ଗାଢ଼ତ୍ୱ ପରୀକ୍ଷା ପାଇଁ ଏ ରୂପର ସୃଷ୍ଟି। ପ୍ରକୃତି, ମାନବ ଓ ଜୀବର ସମାହାରରେ ଗଠିତ ଶ୍ରୀକୃଷ୍ଣଙ୍କ ନବଗୁଞ୍ଜର ରୂପ ମଧ୍ୟ ସୌନ୍ଦର୍ଯ୍ୟ ଓ ଶକ୍ତିର ପ୍ରତୀକ ତଥା ବିସ୍ମୟ ଓ ଭୟ ଉଦ୍ରେକକାରୀ।

ଭଗବାନଙ୍କ ନବଗୁଞ୍ଜର ରୂପ ଅପରୂପ। ନବଗୁଞ୍ଜର ରୂପରେ ରହିଥିବା ପ୍ରତ୍ୟେକ ପ୍ରାଣୀର ଶରୀରାଂଶର ବିଶେଷତ୍ୱକୁ ବିଶ୍ଳେଷଣ କଲେ ବୁଝାପଡ଼େ, ଏସବୁ ବିଶେଷ ଶକ୍ତିର ବାହକ। କୁକ୍କୁଟ ଆମ ପରମ୍ପରାରେ ଶକ୍ତି ଓ ପୌରୁଷର ପ୍ରତୀକ। ମୟୂରର କଣ୍ଠ, ସୌନ୍ଦର୍ଯ୍ୟ ଓ ଶୌର୍ଯ୍ୟର ପ୍ରତୀକ। ବୃଷଭର ଚୂଳ, ପୌରୁଷ ଓ ସୃଜନ ଶକ୍ତିର ପ୍ରକାଶକ। ସିଂହର ଶକ୍ତି ଓ ପରାକ୍ରମ ଅତୁଳନୀୟ। ସର୍ପ ଭୟର ପ୍ରତୀକ ଓ ସୃଜନ ଶକ୍ତିର ଚିହ୍ନ। ବ୍ୟାଘ୍ର ପରମ୍ପରାନୁଯାୟୀ ଶକ୍ତିଙ୍କର ବାହକ। ହସ୍ତୀ ଅମିତ ବିକ୍ରମଶାଳୀ। ଘୋଟକ ତେଜ ଓ ଶକ୍ତିର ପ୍ରତୀକ। ମନୁଷ୍ୟର ହସ୍ତ ମାନବିକ ଗୁଣାବଳୀ ଓ ଶକ୍ତି ସାମର୍ଥ୍ୟକୁ ବହନ କରେ। ଶେଷରେ ଏସବୁ ସହିତ ପଦ୍ମର ବିଶେଷତ୍ୱକୁ ଦେଖିଲେ, ପୁଷ୍ପ ମଧ୍ୟରେ ପଦ୍ମର ବିଶେଷ ମହତ୍ତ୍ୱ ରହିଛି। ଏହା ଦେବତାଙ୍କ ସହିତ୍ ଯୁକ୍ତ ହୋଇ ଆମ ପରଂପରାରେ ପବିତ୍ରତା, ଶୁଭ୍ରତା, ସତେଜତାର ପ୍ରତୀକ ହୋଇ ବିଶେଷଣର ମୁଖ୍ୟ ହୋଇଅଛି। ଭଗବାନଙ୍କ ମୁଖ, ଲୋଚନ ଓ ପାଦ ସହିତ ପଦ୍ମକୁ ଯୁକ୍ତ କରି ଭଗବାନଙ୍କ ମୁଖ, ଲୋଚନ ଓ ପାଦକୁ ପଦ୍ମମୁଖ, ପଦ୍ମଲୋଚନ, ପଦ୍ମପାଦ ରୂପେ ବର୍ଣ୍ଣନା କରାଯାଇଥାଏ। ଦାର୍ଶନିକ ଦୃଷ୍ଟିକୋଣରୁ ପଦ୍ମ ଆତ୍ମଜ୍ଞାନର ଚିହ୍ନ ଓ ବ୍ରହ୍ମକୁ ଲାଭ କରିବାର ସହାୟକ ବୋଲି ବିବେଚନା କରାଯାଇଥାଏ।

ସବୁ ଦୃଷ୍ଟିରୁ ବିଚାର କଲେ ସାରଳା ମହାଭାରତରେ ବର୍ଣ୍ଣିତ ନବଗୁଞ୍ଜର ଉପାଖ୍ୟାନ ଏକ ସାଧାରଣ ଉପାଖ୍ୟାନ ନୁହେଁ, ଏହା ଅତ୍ୟନ୍ତ ଶିକ୍ଷଣୀୟ। ଭକ୍ତ-ଭଗବାନଙ୍କ ସମ୍ପର୍କ କେତେ ନିବିଡ଼, ତାହା ଏଥିରେ ପ୍ରକାଶିତ ହୋଇଅଛି। ଏଥିରେ ତାତ୍ତ୍ୱିକତା ଯେତିକି ରହିଛି, ସାମାଜିକ ଆଦର୍ଶ ମଧ୍ୟ ତତୋଧିକ ଥିବା ଜଣାଯାଇଥାଏ।

ଦରଜୀପୋଖରୀ ଛକ
ପୋଲିସ ଲାଇନ୍, ପୁରୀ-୧

# ଯୁଗ ଯୁଗର ରାକ୍ଷୀ : ସ୍ନେହସୁରକ୍ଷାର ସାକ୍ଷୀ

ଡକ୍ଟର ଶରତ ଚନ୍ଦ୍ର ପରିଡ଼ା

ରାକ୍ଷୀ ପୂର୍ଣ୍ଣିମା ଏକ ସର୍ବ ଭାରତୀୟ ପବିତ୍ର ଗଣପର୍ବ । ଏବେ ଗାଁଗଣ୍ଡା ସହର ବଜାର ଚାରିଆଡ଼େ ବଡ଼ ଆଗ୍ରହ ଉତ୍ସାହ ଆନନ୍ଦ ଓ ଉଦ୍ଦୀପନା ସହ ଏହା ପାଳନ କରାଯାଉଛି । ରାକ୍ଷୀ ହେଉଛି ଚାଖଣ୍ଡେ ରେଶମ ସୂତା । ରକ୍ଷାସୂତ୍ରର ଅର୍ଥ ରକ୍ଷା କରିବା । କେତୋଟି ପ୍ଲାଷ୍ଟିକ୍ ବା କାଚ ପୋହଳା ମାଳି ଏଥିରେ ଗୁନ୍ଥା ହୋଇଥାଏ । ଚକ୍ ଚକ୍ କରୁଥିବା ନାଲି ହଳଦିଆ ଓ ଧଳା ରଙ୍ଗର ଜରିର ସୂକ୍ଷ୍ମ କାର୍ଯ୍ୟରେ ଏହା ଅଧିକ ସୁନ୍ଦର ଦେଖାଯାଉଥାଏ । ଲାଲରଙ୍ଗ ଶତ୍ରୁ ଦମନ, ହଳଦିଆ ରଙ୍ଗ ସର୍ବଦା ଶାନ୍ତି ଓ ଧଳାରଙ୍ଗ ସତ୍ୟର ପ୍ରତୀକ ଅଟେ । ଏହା ଏକ ଆକର୍ଷଣୀୟ ହସ୍ତବନ୍ଧନୀ । ରାକ୍ଷୀ ବାନ୍ଧିବା ପୂର୍ବରୁ ଅଭିମନ୍ତ୍ରିତ କରାଯାଇଥାଏ । ପ୍ରାଚୀନ କାଳରେ ରକ୍ଷାବନ୍ଧନ ଖାଲି ଭାଇଭଉଣୀଙ୍କ ମଧ୍ୟରେ ସୀମିତ ନଥିଲା । ସ୍ତ୍ରୀ ସ୍ୱାମୀଙ୍କୁ, ଝିଅ ବାପାଙ୍କୁ, ମୁନିଋଷିମାନେ ସେମାନଙ୍କ ନିକଟକୁ ଆଶୀର୍ବାଦ ଭିକ୍ଷା କରିବାକୁ ଆସୁଥିବା ଲୋକମାନଙ୍କ ହାତରେ ରାକ୍ଷୀ ବାନ୍ଧୁଥିଲେ । ବ୍ରାହ୍ମଣମାନେ ସେମାନଙ୍କ ଯଜମାନଙ୍କ ଓ ସାଧୁମାନେ ନିଜ ହାତରେ ନିଜେ ରାକ୍ଷୀ ବାନ୍ଧୁଥିଲେ । ଏହା ମଣିଷ ମନର ପାପଭାବନା ଓ ଈର୍ଷା ଅସୂୟା ଦୂରେଇ ସ୍ନେହସଂପ୍ରୀତିର ସଂଚାର କରେ ବୋଲି ଏହାକୁ 'ପାପତୋଡ଼କ ପୁଣ୍ୟପ୍ରଦାୟକ ପର୍ବ' ବୋଲି କୁହାଯାଏ । ଭାବନାତ୍ମକ ଦୃଷ୍ଟିକୋଣରୁ ଏହି ପର୍ବ ଅତ୍ୟନ୍ତ ଲୋକପ୍ରିୟ । ଅନେକ ଉତ୍ସବର ସମାହାର ଏହି ପର୍ବରେ ଦେଖିବାକୁ ମିଳେ



### ଏକ ମଧୁମୟ ପରିବେଶ ସୃଷ୍ଟି କରେ ରାକ୍ଷୀ

ରକ୍ଷା ବନ୍ଧନ ପ୍ରଭାବରେ ଆମ ସମାଜରେ ବହୁତ ସଂସ୍କାର ଆସିଛି । ରକ୍ଷା ଡ଼ୋରି ମଧ୍ୟ ଆମକୁ ବହୁ ଦୁର୍ଯୋଗରୁ ରକ୍ଷା କରିଥାଏ । ସେଥିପାଇଁ ଏହି ପର୍ବକୁ ସମସ୍ତ ଦୁର୍ଯୋଗରୁ ରକ୍ଷା କରୁଥିବା ପର୍ବ କୁହାଯାଏ । ଏହା ପବିତ୍ର ଶ୍ରାବଣୀ ପୂର୍ଣ୍ଣିମାଠାରୁ ବେଦପ୍ରଚାର ସପ୍ତାହ ପାଳନ କରାଯାଉଥିଲା । ଏହା ରାଷ୍ଟ୍ରୀୟ ଚେତନା, ଆଧ୍ୟାତ୍ମିକ ଚିନ୍ତାର ବିକାଶ ତଥା ପାରସ୍ପରିକ ସ୍ନେହ ସଦ୍ଭାବର ସଂକେତ ବହନ କରେ । ଯେଉଁ ବ୍ୟକ୍ତି ରକ୍ଷାସୂତ୍ର ବାନ୍ଧନ୍ତି ତାଙ୍କର ରକ୍ଷା ଭାବନା ରକ୍ଷାସୂତ୍ରରେ ନିହିତ ଥାଏ । ଆଜିକାଲି ଯଜ୍ଞ ସମୟରେ ମଧ୍ୟ ଯେଉଁ ରକ୍ଷାସୂତ୍ର ବାନ୍ଧିବାର ପରମ୍ପରା ରହିଛି, ତାହାର ଉଦ୍ଦେଶ୍ୟ ହେଉଛି ସାଂସାରିକ ସଙ୍କଟରୁ ଯଜମାନକୁ ରକ୍ଷା କରିବା । ରାକ୍ଷୀ ଏକ କୃଷିଭିତ୍ତିକ ପର୍ବ । ଏଥିରେ ଆମ ଦେଶର ଧର୍ମଦର୍ଶନ, ରୀତିନୀତି, ଆଚାରବ୍ୟବହାର, ପ୍ରଥାପରମ୍ପରା, ସଭ୍ୟତା ସଂସ୍କୃତି ପ୍ରତିଫଳିତ । ପୂଜାପାଠ, ନୃତ୍ୟଗୀତ, ଦାନଧର୍ମ

ମାଧ୍ୟମରେ ଏହି ପର୍ବ ପାଳନ କଲାବେଳେ ଜନଜୀବନର ଜଞ୍ଜାଳଜ୍ୱାଳା ବିଦୂରିତ ହୋଇ ନୂତନ ରସର ସଞ୍ଚାର ଘଟେ । ରାକ୍ଷୀପର୍ବ ଦେଶବାସୀଙ୍କ ମଧ୍ୟରେ ଐକ୍ୟ ଓ ଭାଇଚାରାର ଭାବ ଅଭିବୃଦ୍ଧି କରି ରାଷ୍ଟ୍ରୀୟ ଜୀବନକୁ ସମୃଦ୍ଧ କରେ । ଚାରିଆଡ଼େ ସୃଷ୍ଟି ହୁଏ ଏକ ମଧୁମୟ ପରିବେଶ । ମାସଚକ୍ରର ଚତୁର୍ଥ ମାସ ହେଉଛି ଶ୍ରାବଣ ମାସ । ଶ୍ରବଣା ନକ୍ଷତ୍ରଯୁକ୍ତ ହୋଇଥିବାରୁ ଏହାର ଏପରି ନାମକରଣ କରାଯାଇଛି । ଶ୍ରାବଣ ଶୁକ୍ଳ ପୂର୍ଣ୍ଣିମାରେ ଯଦି ଭଦ୍ରାନକ୍ଷତ୍ର ନଥାଏ, ତେବେ ରକ୍ଷାବନ୍ଧନ କରିବା ଉଚିତ ନୁହେଁ । ଶାସ୍ତ୍ରରେ ବର୍ଣ୍ଣିତ ଅଛି –

ଭଦ୍ରାୟାଂ ଦ୍ୱେ କର୍ତ୍ତବ୍ୟେ ଶ୍ରାବଣୀ ଫାଲ୍ଗୁନୀନୀ ତଥା ।
ଶ୍ରାବଣୀ ନୃପତିଂ ହନ୍ତି ଗ୍ରାମଂ ଦହତି ଫାଲ୍ଗୁନୀ ॥

ଅଥାତ୍ ଭଦ୍ରାରେ ଶ୍ରାବଣୀ ଏବଂ ଫାଲ୍ଗୁନୀ–ଏହି ଦୁଇଟି କର୍ମବର୍ଜିତ ଅଟେ । କାରଣ ଭଦ୍ରାରେ ଶ୍ରାବଣୀ କର୍ମ କଲେ ରାଜା ଓ ଫାଲ୍ଗୁନୀ କଲେ ପ୍ରଜାଙ୍କର ଅନିଷ୍ଟ ହୁଏ । ପୃଥିବୀ ଓ ସୂର୍ଯ୍ୟଙ୍କର ଭୌଗୋଳିକ ସମ୍ବନ୍ଧ ଓ ପୃଥିବୀରେ ପଡୁଥିବା ଅନ୍ୟ ଗ୍ରହମାନଙ୍କର ପ୍ରଭାବ ହେତୁ ଏହି ମାସର କେତେକ ଗୁରୁତ୍ୱ ରହିଛି । ଏହି ତିଥିଟି ସୃଷ୍ଟି ଆରମ୍ଭର ଦିନ । ପରମେଶ୍ୱରଙ୍କ ସଂକଳ୍ପ 'ଏକୋଽହଂ ବହୁ ସ୍ୟାମ୍' ବାସ୍ତବ ରୂପ ଧାରଣ କରିଥିଲା । ଅର୍ଥାତ୍ ବହୁମୁଖୀ ସୃଷ୍ଟି ରାକ୍ଷୀପୂର୍ଣ୍ଣମୀ ଦିନ ହିଁ ଆରମ୍ଭ ହୋଇଥିଲା । ବେଦଶିକ୍ଷାର ଶୁଭାରମ୍ଭ ରାକ୍ଷୀ ପୂର୍ଣ୍ଣମୀରେ ହିଁ ହୋଇଥିଲା । ପ୍ରାଚୀନ ଗୁରୁକୁଳରେ ଏହି ଦିନ ନୂତନ ଶିଷ୍ୟମାନଙ୍କର ନାମ ଲେଖା ଯାଉଥିଲା ।

### ବାର୍ଷିକ ସଂସ୍କାରରେ ରାକ୍ଷୀପୂର୍ଣ୍ଣମୀ

ଭାରତୀୟ ସଂସ୍କୃତିର ଦୁଇଟି ମହତ୍ୱପୂର୍ଣ୍ଣ ସର୍ବମାନ୍ୟ ପ୍ରତୀକ ହେଉଛି ଶିଖା ଓ ସୂତ୍ର । ମୁଣ୍ଡନ ସମୟରେ ସ୍ଥାପିତ କରାଯାଇଥିବା ଶିଖା ହେଲା ଭାରତୀୟ ସଂସ୍କୃତି ପ୍ରତି ଆସ୍ଥା ପ୍ରକଟ । ପୁନଶ୍ଚ ଶ୍ରାବଣୀ ପର୍ବରେ ପୁରାତନ ପଇତା ବଦଳା ଯାଇଥାଏ । ଶିଖା ସିଞ୍ଚନ ଓ ଯଜ୍ଞୋପବୀତ ନବୀକରଣ ଏକ ପ୍ରକାର ବାର୍ଷିକ ସଂସ୍କାର ଅଟେ । ଶିଖା ଭାରତୀୟ ସଂସ୍କୃତିର ଧର୍ମଧ୍ୱଜା (ସର୍ବେଷାମେବ ଧର୍ମତଃ–ମନୁ) । ଏହା ଏକ ଚୂଡ଼ାକର୍ମ । ପ୍ରତ୍ୟେକ ବର୍ଣ୍ଣ ପାଇଁ ଉଦ୍ଦିଷ୍ଟ । ଆୟୁର୍ବେଦରେ ବର୍ଣ୍ଣିତ ମୋଟ ଶହେ ସାତ ମର୍ମସ୍ଥଳ ମଧ୍ୟରୁ ବ୍ରହ୍ମରନ୍ଧ୍ରକୁ ମର୍ମସମ୍ରାଟ କୁହାଯାଏ । ଏହାର ରକ୍ଷା ପାଇଁ ଏହା ଉପରେ ଶିଖା ରଖିବା ନିମନ୍ତେ ଋଷିମାନେ ବିଧାନ କରି ଯାଇଛନ୍ତି । ବ୍ରହ୍ମାଣ୍ଡୀୟ ଉର୍ଜା ପ୍ରାପ୍ତ କରୁଥିବା ଏହି ଶିଖାକୁ ଇନ୍ଦ୍ରଯୋନି ବୋଲି ଆୟୁର୍ବେଦରେ କୁହାଯାଇଛି । ଶିଖାଗ୍ରନ୍ଥି ଚାମୁଣ୍ଡାଦେବୀଙ୍କ ଅଧିଷ୍ଠାନ ଅଟେ । ଚାମୁଣ୍ଡାଦେବୀ ବିଚାର ପ୍ରଦୂଷଣ ଓ ଧ୍ୱନିପ୍ରଦୂଷଣ ରୋକିଥା'ନ୍ତି । ଶିଖାବନ୍ଧନ ସମୟରେ 'ତିଷ୍ଠ ଦେବି ଶିଖାମଧ୍ୟେ' କୁହାଯାଇ ଏହି ସ୍ଥାନ ଉପରେ ଦେବୀଙ୍କୁ ଆବାହନ କରିବାର ଏହା ହେଉଛି ବୈଜ୍ଞାନିକ କାରଣ । ପ୍ରାଚୀନ କାଳରୁ ଲୋକମାନେ ଶିଖା ଧାରଣ କରି ଆସୁଛନ୍ତି । ମସ୍ତିଷ୍କ ବିଦ୍ୟାର ବିଶେଷଜ୍ଞମାନେ ମାନନ୍ତି ଯେ ଶିଖା ମସ୍ତିଷ୍କର କେନ୍ଦ୍ରବିନ୍ଦୁ । ଏହାକୁ ସ୍ପର୍ଶ କଲେ ଶକ୍ତିର ସଞ୍ଚାର ହୁଏ । ଯୋଗୀମାନେ କହନ୍ତି ଯେ ଯାହାର ଶିରରେ ଶିଖା ଥାଏ, ସେ ଅନ୍ତରୀକ୍ଷରୁ ଆସୁଥିବା ସତ୍ ପ୍ରେରଣାର ତରଙ୍ଗଗୁଡ଼ିକୁ ସରଳ ଭାବରେ ଗ୍ରହଣ କରିପାରନ୍ତି । ଶିଖା ଧାରଣ କରିବା ଦ୍ୱାରା ବାସନା ଉପରେ ମଧ୍ୟ ନିୟନ୍ତ୍ରଣ ରକ୍ଷା କରି ହୁଏ । ମୁଖମଣ୍ଡଳରେ ତେଜସ୍ୱୀତା ପ୍ରକାଶ ପାଏ । ଉଦ୍‌ବେଗ ଓ ଅବସାଦରୁ ମୁକ୍ତି ମିଳେ । ଏହି କର୍ମରେ ପ୍ରାୟଶ୍ଚିତ ସଂକଳ୍ପ ମୁଖ୍ୟ । ସାବଧାନ ରହୁଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ବି ବେଳେ ବେଳେ ଭ୍ରମବଶତଃ ବା ଅଜ୍ଞାନତାବଶତଃ କିଛି ନା କିଛି ଭୁଲ ହୋଇଯାଏ । ଏସବୁକୁ ଯଦି ନିୟମିତ ଶୁଦ୍ଧ ଏବଂ ସୁଧୁରା ନଯାଏ, ତାହାହେଲେ ଏହା ବୃଦ୍ଧି ପାଇ ଜୀବନକୁ ଅନ୍ଧକାରରେ ପରିଣତ କରିଦିଏ । ବର୍ଦ୍ଧିତ ପାପରାଶି ନାନା ପ୍ରକାର ରୋଗବ୍ୟାଧି, ସଙ୍କଟ ଓ ରୋଗକୁ ଆମନ୍ତ୍ରଣ କରି ଜୀବନକୁ ନରକରେ ପରିଣତ କରିଦିଏ ।

ଶ୍ରାବଣ ପୂର୍ଣ୍ଣିମାରେ ବିଦ୍ୟା ଆରମ୍ଭ କରୁଥିବା ଶିଷ୍ୟମାନଙ୍କ ମଧ୍ୟରୁ ଯଜ୍ଞୋପବୀତ ପାଇ ନଥିବା ଶିଷ୍ୟମାନଙ୍କୁ ଯଜ୍ଞୋପବୀତ ଦିଆଯାଉଥିଲା । ଆମେ ତିନୋଟି ମୁଖ୍ୟ ଋଣରେ ଋଣୀ । ତାହା ହେଉଛି ଋଷିଋଣ, ଦେବଋଣ ଓ ପିତୃଋଣ । ତିନି ଖିଅ ପଇତା ଧାରଣ କରି ଆମେ ଏହି ତିନି ଋଣର ପରିଶୋଧ ପାଇଁ ବ୍ରତୀ ହୋଇଥାଉ । ଛଅ ଖିଅ ପଇତା ଧାରଣ କରିବା ଦ୍ୱାରା ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନ, ଦାନ, ପ୍ରତିଗ୍ରହଣ–ଏହି ଛଅଟି କର୍ମର ସ୍ମୃତି ଜାଗ୍ରତ ହୋଇଥାଏ । ବେଦ ଅଧ୍ୟୟନ ଦ୍ୱାରା ଋଷିଋଣ, ପୂଜା ହୋମ ଦ୍ୱାରା ଦେବଋଣ ତଥା ପିତାମାତା ଓ ପିତୃପୁରୁଷଙ୍କ ଶ୍ରାଦ୍ଧ ଓ ସନ୍ତାନ ଉତ୍ପାଦନ

ଦ୍ୱାରା ଆମେ ପିତୃଋଣରୁ ମୁକ୍ତ ହୋଇଥାଉ । ଏମାନଙ୍କ ଋଣ ଶୁଝିବା ସହଜ ନୁହେଁ । ତଥାପି ସ୍ମରଣ ରଖି ପ୍ରୟାସ କରିବା ପାଇଁ ପଇତା ଆମକୁ ପ୍ରେରଣା ଦେଇଥାଏ । ଅତଏବ ଶ୍ରାବଣ ପୂର୍ଣ୍ଣିମା ଭାରତୀୟ ସଂସ୍କୃତି ରକ୍ଷାର ମହତ୍ୱପୂର୍ଣ୍ଣ ସନ୍ଦେଶ ବହନ କରେ ।

ଯଜ୍ଞୋପବୀତ ହେଲା ନିଜ ଜୀବନରେ ଆମୂଳଚୂଳ ପରିବର୍ତ୍ତନର ବାର୍ତ୍ତାବହ । ଏଥିପାଇଁ ଏହାକୁ ଜୀବନ ପରିଚାଳନାର ସୂତ୍ର କୁହାଯାଏ । ପଇତାରେ ଥିବା ନଅ ଖିଅ ସୂତା ନଅଟି ଗୁଣର ପ୍ରତୀକ । ପ୍ରତି ଗୋଚ୍ଛାରେ ତିନି ଖିଅ ସୂତା ଥାଏ । ତିନି ଗୋଚ୍ଛା ଜୀବନର ତିନି ପ୍ରଧାନ ଭାଗ ଯଥା ଆତ୍ମିକ, ବୌଦ୍ଧିକ ଲୌକିକ ବା ସାଂସାରିକ ବିଷୟରେ ସନ୍ଦେଶ ଦିଏ । ପ୍ରତି ଗୋଚ୍ଛାରେ ଥିବା ତିନି ଖିଅ ସୂତା ତିନି ଗୁଣର ସଙ୍କେତ ବହନ କରେ । ଆତ୍ମିକ କ୍ଷେତ୍ରରେ ତିନି ସଂପତ୍ତି ହେଲା ବିବେକ, ପବିତ୍ରତା ଓ ଶାନ୍ତି । ବୌଦ୍ଧିକ କ୍ଷେତ୍ରରେ ତିନି ସଂପତ୍ତି ହେଲା– ସାହସ, ସ୍ଥିରତା ଓ କର୍ତ୍ତବ୍ୟନିଷ୍ଠା । ସାଂସାରିକ କ୍ଷେତ୍ରରେ ତିନି ସଂପତ୍ତି ହେଲା–ସ୍ୱାସ୍ଥ୍ୟ, ଧନ ଓ ସହଯୋଗ । ଏହି ନଅ ଗୁଣର ବିକାଶର ଦାୟିତ୍ୱ ସର୍ବଦା କାନ୍ଧରେ ଧାରଣ କରି ରଖିବାର ଚିହ୍ନ ସ୍ୱରୂପ ପଇତା ପିନ୍ଧାଯାଏ । ଏହି ପଇତା ପ୍ରାଚୀନ କାଳରେ ପ୍ରଜାପତିଙ୍କ ସହିତ ଉତ୍ପନ୍ନ ହୋଇଥିଲା । ଏହା ପରମ ପବିତ୍ର । ଆୟୁ,ବଳ ଏବଂ ତେଜ ବର୍ଦ୍ଧନକାରୀ । ଉପଯୁକ୍ତ ନଅ ଗୁଣର ବିକାଶ ବ୍ୟତୀତ ପଇତା ତ୍ରିଦେବ ଅର୍ଥାତ୍ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ପ୍ରତୀକ ଅଟେ । ଏହା ଋଗ୍, ସାମ ଏବଂ ଯଜୁର୍ବେଦର ସ୍ୱରୂପ । ଏହା ମଧ୍ୟ ଭୂଃ, ଭୁବଃ ଓ ସ୍ୱଃ–ଏହି ତିନି ଲୋକର କଲ୍ୟାଣ ବିଷୟରେ ସଚେତନ କରାଏ । ଅତଏବ ସ୍ୱକୃତ ଦୋଷତ୍ରୁଟିକୁ ନିର୍ମଳ ହୃଦୟରେ ଅନୁତାପ କରିବା ଏବଂ ଏଗୁଡ଼ିକର ପୁନରାବୃତ୍ତି ନକରିବାର ଦୃଢସଂକଳ୍ପ ନେବା ଯଜ୍ଞୋପବୀତ ନବୀକରଣ ଓ ଶିଖା ସିଞ୍ଚନରୁ ହିଁ ମିଳିଥାଏ ।

### ଗୁରୁଶିଷ୍ୟଙ୍କ ହାତରେ ରାକ୍ଷୀ

କେବଳ ସେତିକି ନୁହେଁ ପୂର୍ବ କାଳରେ ମୁନିଋଷିମାନେ ଉତ୍ତରାୟଣରେ ବିଭିନ୍ନ ଜନପଦ ଭ୍ରମଣ କରି ଲୋକ କଲ୍ୟାଣ ପାଇଁ ନାନା ଉପଦେଶ ପ୍ରଦାନ କରୁଥିଲେ । ଦକ୍ଷିଣାୟନ ଆରମ୍ଭରେ ନିଜ ଆଶ୍ରମକୁ ତଥା ବିଭିନ୍ନ ଗୁରୁକୁଳକୁ ଫେରି ଆସି ପାରାୟଣ ବ୍ରତ ଆରମ୍ଭ କରୁଥିଲେ । ସ୍ମୃତିକାରଙ୍କ ମତରେ ବିଦ୍ୱାନ୍, ବ୍ରାହ୍ମଣାଦି ବର୍ଣ୍ଣ ଶ୍ରାବଣ ପୂର୍ଣ୍ଣିମାଠାରୁ ଚାରିମାସ ପନ୍ଦର ଦିନ ପର୍ଯ୍ୟନ୍ତ ବେଦାଧ୍ୟୟନ କରିବେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ପୂର୍ବ କାଳରେ ଗ୍ରୀଷ୍ମ ଅବକାଶ ପରେ ଶ୍ରାବଣ ପୂର୍ଣ୍ଣିମା ଦିନ ହିଁ ଗୁରୁକୁଳରେ ବିଦ୍ୟାଦାନ ଆରମ୍ଭ ହେଉଥିଲା । ପରିତାପର ବିଷୟ ଆଜି ବେଦବିଦ୍ୟାର ଯଥାର୍ଥ ଆଦାନପ୍ରଦାନ ଓ ଗ୍ରହଣ ପୂର୍ବକ ରକ୍ଷା ହୋଇପାରୁନଥିବାରୁ ବେଦବିରୋଧୀ ବିଚାର ଅଧିକ ପ୍ରସାର ଲାଭ କରୁଛି । ପ୍ରାଚୀନ ଭାରତର ଶିଷ୍ୟଟିଏ ଗୁରୁକୁଳରୁ ନିଜର ଶିକ୍ଷା ସମାପ୍ତ କରି ବିଦାୟ ନେଲାବେଳେ ଗୁରୁଙ୍କ ଆଶିଷ ଲାଭ କରିବା ଉଦ୍ଦେଶ୍ୟରେ ଗୁରୁଙ୍କ ହାତରେ ରାକ୍ଷୀ ବାନ୍ଧୁଥିଲା । ଅନୁରୂପ ଭାବେ ଗୁରୁ ମଧ୍ୟ ନିଜ ଶିଷ୍ୟର ଉଜ୍ଜ୍ୱଳ ଭବିଷ୍ୟତ କାମନା କରି ବେଦମନ୍ତ୍ରରେ ଅଭିମନ୍ତ୍ରିତ ରାକ୍ଷୀ ଶିଷ୍ୟ ହାତରେ ବାନ୍ଧି ଦେଉଥିଲେ । ତନ୍ତ୍ରସାଧନାରେ ମଧ୍ୟ ଗୁରୁଜନ ନିଜ ଶିଷ୍ୟମାନଙ୍କ ହାତରେ ଅଭିମନ୍ତ୍ରିତ ରକ୍ଷାସୂତ୍ର ବାନ୍ଧି ଦିଅନ୍ତି । ଏହାର ଲକ୍ଷ୍ୟ ହେଉଛି ଅନିଷ୍ଟକାରୀ ଭୂତପ୍ରେତାଦିଙ୍କଠାରୁ ଶିଷ୍ୟକୁ ରକ୍ଷା କରିବା । ଏହା ବେଦଜ୍ଞାନ ତଥା ବୈଦିକ ପରମ୍ପରାକୁ ରକ୍ଷା କରିବାର ସୂତ୍ରସଙ୍କେତ ପ୍ରଦାନ କରେ । ବୈଦିକ ଧର୍ମବନ୍ଧନରେ ଶିଷ୍ୟ ଅନୁବନ୍ଧିତ ହୁଏ । ଏହି ବୈଦିକ ସଂସ୍କୃତି ଓ ସଭ୍ୟତା ଯୁଗଯୁଗ ଧରି ମାନବ ଜାତିର କଲ୍ୟାଣ କରି ଆସୁଛି । ମହର୍ଷି ମନୁଙ୍କ ଭାଷାରେ, 'ବେଦୋଦ୍ଧଖିଳ ଧର୍ମମୂଳମ୍' ଅର୍ଥାତ୍ ସମସ୍ତ ଧର୍ମର ମୂଳ ହେଉଛି ବେଦ । ବେଦ ବିନା ଜ୍ଞାନର ଉନ୍ମେଷ ଘଟେ ନାହିଁ । ଗୁରୁକୁଳର ଶିଷ୍ୟମାନେ ବର୍ଷକ ମଧ୍ୟରେ ଯେଉଁ ଯେଉଁ ବେଦଶିକ୍ଷା କରିଥା'ନ୍ତି, ତାକୁ ଶ୍ରାବଣ ପୂର୍ଣ୍ଣିମା ଦିନଠାରୁ ଆରମ୍ଭ କରି ସାତ ଦିନ ଗ୍ରାମେ ଗ୍ରାମେ ବୁଲି ଉପଦେଶ ଦିଅନ୍ତି । ଏହି ସାତ ଦିନକୁ ବେଦପ୍ରଚାର ସପ୍ତାହ କୁହାଯାଉଥିଲା । ବୈଦିକ ଋଷି ଦୃଷ୍ଟିରେ ଏହା ଶ୍ରାବଣୀ ଉତ୍ସବ ।

### ବୈଦିକ ଯୁଗରେ ରାକ୍ଷୀ

ରାକ୍ଷୀ ବୈଦିକ ଯୁଗରୁ ବିଭିନ୍ନ ରୂପରେ ପ୍ରଚଳିତ ହୋଇ ଆସୁଛି । ଏହାକୁ ଆଧାର କରି ପୁରାଣ, ଇତିହାସ ଓ ଆମ ଜନଜୀବନରେ ବହୁ କାହାଣୀ କିଂବଦନ୍ତୀ ଓ ଘଟଣା ସବୁ ରହିଛି । ଏହାର ଆଭିମୁଖ୍ୟ ହେଉଛି ସୁରକ୍ଷା ପାଇଁ ସ୍ନେହମିଶା

ବନ୍ଧନ । ଐତିହାସିକ ଦୃଷ୍ଟିକୋଣରୁ ରାକ୍ଷୀବନ୍ଧନ କେବେଠାରୁ ଆରମ୍ଭ ହୋଇଥିଲା, ତାହା ଠିକ୍ ରୂପେ ଆକଳନ କରି ହୁଏ ନାହିଁ । ତଥାପି ବେଦରୁ ଏହାର ପ୍ରଥମ ସୂଚନା ମିଳିଥାଏ । ଋଗ୍‌ବେଦରେ ଦେବତା ଓ ଅସୁରମାନଙ୍କ ମଧ୍ୟରେ ମଝିରେ ମଝିରେ ଭୟଙ୍କର ସଂଗ୍ରାମ ହୋଇଥିବାର ବର୍ଣ୍ଣନା ରହିଛି । ଏହାକୁ ଦେବାସୁର ସଂଗ୍ରାମ କୁହାଯାଏ । ଏହି ସଂଗ୍ରାମର ପ୍ରାରମ୍ଭିକ ପର୍ଯ୍ୟାୟରେ ଦେବରାଜ ଇନ୍ଦ୍ର ଓ ରାକ୍ଷସରାଜ ବୃତ୍ରଙ୍କଠାରୁ ପରାସ୍ତ ହୋଇଥିଲେ । ଇନ୍ଦ୍ର ରଣଭୂମି ଛାଡି ଅମରାବତୀ ନାମକ ତୀର୍ଥରେ ଆତ୍ମଗୋପନ କରିଥିଲେ । ଏହାପରେ ଦେବଗୁରୁ ବୃହସ୍ପତିଙ୍କ ପରାମର୍ଶରେ ଓ ବତାଇଥିବା ବିଧାନ ଅନୁସାରେ (ଶଚୀ)ଇନ୍ଦ୍ରାଣୀ ଶ୍ରାବଣ ପୂର୍ଣ୍ଣିମାର ପ୍ରାତଃକାଳରେ ରକ୍ଷାର ଡ଼ୋରି ଅଭିମନ୍ତ୍ରିତ କରି ଇନ୍ଦ୍ରଙ୍କ ଡ଼ାହାଣ ହାତରେ ବାନ୍ଧି ଦେଇଥିଲେ । ଏହି ରକ୍ଷା ଡ଼ୋରି ବାନ୍ଧି ଇନ୍ଦ୍ର ପୁନଶ୍ଚ ଦେବାସୁର ସଂଗ୍ରାମରେ ପ୍ରବୃତ୍ତ ହୋଇ ବିଜୟୀ ହୋଇଥିଲେ । ସେହି ପବିତ୍ର ସୂତ୍ର ପରେ ରାକ୍ଷୀ ନାମରେ ପରିଚିତ ହେଲା । ଏହିଠାରୁ ରାକ୍ଷୀର ଶୁଭାରମ୍ଭ ବୋଲି କୁହାଯାଏ । ପରବର୍ତ୍ତୀ ସମୟରେ ରାଜାମାନେ ରକ୍ଷାବନ୍ଧନର ମହିମା ଜାଣିଗଲା ପରେ ପୃଥିବୀ ପୃଷ୍ଠରେ ତା'ର ପ୍ରଚଳନ କରିଥିଲେ । କିନ୍ତୁ ଏତିକି ପାର୍ଥକ୍ୟ ହେଉଛି ଦେବଲୋକରେ ରକ୍ଷାଡ଼ୋରିକୁ ପତ୍ନୀ ନିଜ ସ୍ୱାମୀଙ୍କ ହାତରେ ବାନ୍ଧି ଦେଉଥିବା ବେଳେ ମର୍ତ୍ତ୍ୟଲୋକରେ ରକ୍ଷାଡ଼ୋରିକୁ ଭଉଣୀ ଭାଇ ହାତରେ ବାନ୍ଧି ଦେଉଛି ।

ପୌରାଣିକ କଥା ଅନୁସାରେ ଭଗବାନ୍ ବିଷ୍ଣୁ ବାମନ ଅବତାରରେ ବଳିରାଜାଙ୍କ ହାତରେ ରାକ୍ଷୀ ବାନ୍ଧି ସାରିଲା ପରେ ତାଙ୍କୁ ପାତାଳକୁ ଯିବା ପାଇଁ ଆଦେଶ ଦେଇଥିଲେ । ଅନ୍ୟ ଏକ କଥା ଅନୁସାରେ ଭକ୍ତ ଶ୍ରବଣ କୁମାର ନେତ୍ରହୀନ ଥିଲେ । ସେ ପିତାମାତାଙ୍କୁ କାନ୍ଧରେ ଭାର କରି ତୀର୍ଥଯାତ୍ରାରେ ନେଇଥିଲେ । ରାତିରେ ତାଙ୍କ ପିତାମାତାଙ୍କୁ ଶୋଷ ଲାଗିଲା । ସେ ନଦୀତଟକୁ ପାଣି ଆଣିବାକୁ ଯାଇଥିଲେ । ସେଠାରେ ମାଠିଆରେ ପାଣି ପଶିଲା ବେଳେ ଡ଼ବଡ଼ବ ଶବ୍ଦ ଶୁଣି ରାଜା ଦଶରଥ ତାଙ୍କୁ ଏକ ଜଙ୍ଗଲୀ ପଶୁ ବୋଲି ଭାବି ଶର ନିକ୍ଷେପ କଲେ । ତାଙ୍କର ସେଠାରେ ପ୍ରାଣବାୟୁ ଉଡ଼ିଗଲା । ପୁତ୍ରର ମୃତ୍ୟୁ ସମାଚାର ଶୁଣି ଶ୍ରବଣକୁମାରଙ୍କ ପିତାମାତା ବହୁତ ଦୁଃଖୀ ହେଲେ । ରାଜା ସେମାନଙ୍କୁ ଧୈର୍ଯ୍ୟ ଦେଲେ ଓ ଶ୍ରାବଣ ପୂର୍ଣ୍ଣିମାରେ ଶ୍ରବଣକୁମାରଙ୍କ ପୂଜା ସବୁଠାରେ ହେବ ବୋଲି ପ୍ରଚାର କଲେ । ସେହିଦିନଠାରୁ ସବୁ ସନାତନୀ ଲୋକ ଶ୍ରବଣଙ୍କୁ ପୂଜା କରନ୍ତି ଓ ପ୍ରଥମ ରାକ୍ଷୀ ତାଙ୍କୁ ଅର୍ପଣ କରନ୍ତି ।

**ଯଜମାନ ହାତରେ ରାକ୍ଷୀ**

ପ୍ରାଚୀନ କାଳରେ ବ୍ରହ୍ମଶକ୍ତିସଂପନ୍ନ ବ୍ରାହ୍ମଣମାନେ ରାଷ୍ଟ୍ରର ନେତୃତ୍ୱ ନେଉଥିଲେ । ଜନସାଧାରଣଙ୍କୁ ସତ୍‌ପଥରେ ପରିଚାଳିତ କରିବା ଏମାନଙ୍କର କର୍ତ୍ତବ୍ୟ ଥିଲା । ସମାଜକୁ ଆସୁରୀ ବିଚାର ଓ ପ୍ରବୃତ୍ତିରୁ ରକ୍ଷା କରିବାର ଦାୟିତ୍ୱ ଏମାନେ ନେଉଥିଲେ । 'ବୟଂ ରାଷ୍ଟ୍ରେ ଜାଗୃୟାମ ପୁରୋହିତାଃ'ର ମନ୍ତ୍ରରେ ଉଦ୍‌ବୁଦ୍ଧ ହୋଇ ଲୋକମାନଙ୍କୁ ସତ୍‌ପଥରେ ଓ ଉନ୍ନତି ମାର୍ଗରେ ଜାଗରଣ କରିବାର ବ୍ରତ ଧାରଣ କରି ଏହି ପୁରୋହିତ ଆଚାର୍ଯ୍ୟମାନେ ଯଜମାନଙ୍କ ହାତରେ ମନ୍ତୁରା ରକ୍ଷାସୂତ୍ର ବନ୍ଧନ କରୁଥିଲେ । ତାହା ସହିତ ସେମାନଙ୍କର ଧର୍ମକର୍ମ ସମ୍ପର୍କରେ ସ୍ମରଣ କରାଇ ଦେଉଥିଲେ । ମାନବତ୍ୱର ବିକାଶ ଦ୍ୱାରା ରାଷ୍ଟ୍ରର କଲ୍ୟାଣ ସାଧିତ ରୂପକ ଧର୍ମରକ୍ଷା ପାଇଁ ଏହା ପ୍ରେରଣା ଯୋଗାଉ ଥିଲା । କର୍ମରେ ଶିଥିଳତା ଦୂରେଇ ଦେଉଥିଲା ।

**ସ୍ମୃତିରକ୍ଷାର ଚାବିକାଠି ରାକ୍ଷୀ**

କେତେକ ପ୍ରାଚୀନ ଗ୍ରନ୍ଥରେ ଉଲ୍ଲେଖ ରହିଛି ଯେ ମୁନିଋଷିମାନେ ଶ୍ରାବଣଠାରୁ କାର୍ତ୍ତିକ ପର୍ଯ୍ୟନ୍ତ ବର୍ଷା ଚାରିମାସ କୁଆଡ଼େ ନଯାଇ ଏକାଗ୍ରତା ସହ ଅଧ୍ୟୟନ, ପ୍ରବଚନ ଓ ଯଜ୍ଞାଦି କାର୍ଯ୍ୟ କରୁଥିଲେ । ଶ୍ରାବଣ ପୂର୍ଣ୍ଣିମା ଦିନ ଏକ ଉପକର୍ମ କରି ନିଜ ହାତରେ ଏକ ରକ୍ଷା ବନ୍ଧନ କରନ୍ତି । ଏହାଦ୍ୱାରା ସେମାନଙ୍କ ଦ୍ୱାରା ଅଧୀତ ଶାସ୍ତ୍ର ତେଜସ୍ୱୀ ହୁଏ ଓ ତାଙ୍କ ସ୍ମୃତିରେ ଅପାଶୋରା ହୋଇ ରହେ । ଯଜ୍ଞରେ ସମ୍ମିଳିତ ହୋଇଥିବା ବ୍ୟକ୍ତିମାନଙ୍କ ହାତରେ ରାକ୍ଷୀ ଦେଉଥିଲେ । ସେହି ଯଜ୍ଞସୂତ୍ର ପରବର୍ତ୍ତୀ କାଳରେ ରକ୍ଷା–ସୂତ୍ର ରୂପରେ ବ୍ୟବହୃତ ହୋଇ ଚାଲିଛି ।

**ସତ୍ୟଯୁଗରେ ବଳୀ ହାତରେ ରାକ୍ଷୀ**

ରାକ୍ଷୀବନ୍ଧନର ପରମ୍ପରା ସତ୍ୟଯୁଗରୁ ପ୍ରଚଳିତ । ଭଗବାନ୍ ବାମନ ତିନି ପାଦ ଭୂମି ମାଗି ରାଜା ବଳିଙ୍କର ସମସ୍ତ ଐଶ୍ୱର୍ଯ୍ୟ ହରଣ କରି ନେଇଥିଲେ । ପ୍ରଥମ ପାଦରେ ସ୍ୱର୍ଗ,

ଦ୍ୱିତୀୟ ପାଦରେ ମର୍ତ୍ତ୍ୟ ଓ ତୃତୀୟ ପାଦ ବଳିଙ୍କ ମଥାରେ ରଖି ପାତାଳକୁ ଚାପି ଦେଇଥିଲେ । ବଳିରାଜାଙ୍କ ଭକ୍ତିରେ ସନ୍ତୋଷ ଲାଭ କରି ଭଗବାନ୍ ତାଙ୍କୁ ପାତାଳରେ ଅଧୀଶ୍ୱର କରି ରଖିଥିଲେ । ବଳିରାଜାଙ୍କ ସହିତ ସଂକଳ୍ପବଦ୍ଧ ହୋଇ ଭଗବାନ୍ ବାମନ ତାଙ୍କ ସିଂହଦ୍ୱାରରେ ଦ୍ୱାରପାଳ ଭାବରେ ରହିଲେ । ଲକ୍ଷ୍ମୀ ଏହା ଜାଣିବା ପରେ ନାରଦଙ୍କ ଉପଦେଶକ୍ରମେ ରାକ୍ଷୀପୂର୍ଣ୍ଣମୀ ଦିନ ବଳିଙ୍କ ହାତରେ ରାକ୍ଷୀବନ୍ଧନ କରିଥିଲେ । ଉପହାର ସ୍ୱରୂପ ବଳିରାଜ ବିଷ୍ଣୁବାମନଙ୍କୁ ବୈକୁଣ୍ଠକୁ ଫେରାଇ ଦେଇଥିଲେ ।

ତେଣୁ ରକ୍ଷାବନ୍ଧନ ସମୟରେ ନିମ୍ନୋକ୍ତ ଶ୍ଳୋକଟି ପାଠ କରାଯାଏ –

ଯେନ ବଦ୍ଧୋ ବଳୀ ରାଜ ଦାନବେନ୍ଦ୍ରୋ ମହାବଳଃ । ତେନ ତ୍ୱାଂ ପ୍ରତିବଧ୍ନାମି ରକ୍ଷେ ମା ଚଳ ମା ଚଳ ॥ ଗୋବିନ୍ଦାର୍ଚ୍ଚନ–ଚନ୍ଦ୍ରିକା, ଷଷ୍ଠୋଲ୍ଲାସ.ପୃ ୮୩ । ଅର୍ଥାତ୍ ଏହା ସେହି ସୂତ୍ର ଅଟେ, ଯାହାଦ୍ୱାରା ମହାବଳୀ ଏବଂ ଦାନବେନ୍ଦ୍ର ବଳିରାଜା ବନ୍ଧା ହୋଇଥିଲେ । ସେହି ରକ୍ଷାସୂତ୍ରକୁ ମୁଁ ତୁମ ହାତରେ ବାନ୍ଧୁଛି । ହେ ରାକ୍ଷୀ ! ତୁମେ ସ୍ଥିର ହୋଇ ରୁହ ।

### ତ୍ରେତୟା ଯୁଗରେ ରାମଙ୍କ ହାତରେ ରାକ୍ଷୀ

ତ୍ରେତୟା ଯୁଗରେ ଭଗବାନ୍ ଶ୍ରୀରାମ ରାବଣ ସହିତ ଯୁଦ୍ଧ କରିଥିଲେ । ଯୁଦ୍ଧରେ ରାବଣ ନାନାଦି ମାୟା ରଚନା କଲା । ମହର୍ଷି ଅଗସ୍ତିଙ୍କ ପରାମର୍ଶକ୍ରମେ ପ୍ରଭୁ ଶ୍ରୀରାମ ମାୟା ଛେଦନ ନିମିତ୍ତ 'ଆଦିତ୍ୟହୃଦୟମ୍' ପାଠ ପୂର୍ବକ ଶ୍ରୀସୂର୍ଯ୍ୟଦେବଙ୍କର ଉପାସନା କଲେ । ସୂର୍ଯ୍ୟଦେବ ପ୍ରସନ୍ନ ହେଲେ । ଶ୍ରାବଣ ପୂର୍ଣ୍ଣିମାରେ ଭଉଣୀ ରାକ୍ଷୀ ବନ୍ଧନ କଲେ ମାୟା ଦୂରୀଭୂତ ହୁଏ ବୋଲି କହିଲେ । ତଦନୁଯାୟୀ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ହାତରେ ଭଉଣୀ ଶାନ୍ତା ଶ୍ରାବଣ ପୂର୍ଣ୍ଣିମା ତିଥିରେ ଅଭିମନ୍ତ୍ରିତ କରି ଶ୍ରୀରାମଙ୍କ ହାତରେ ରାକ୍ଷୀ ବାନ୍ଧିବା ପରେ ମାୟା ଦୂରୀଭୂତ ହେଲା । ପ୍ରଭୁ ଯୁଦ୍ଧରେ ଜୟଲାଭ କଲେ ।

### ଦ୍ୱାପର ଯୁଗରେ କୃଷ୍ଣଙ୍କ ହାତରେ ରାକ୍ଷୀ

ମହାଭାରତରେ ଶ୍ରୀକୃଷ୍ଣ ଯୁଧିଷ୍ଠିରଙ୍କୁ ବୁଝାଇବାକୁ ଯାଇ କହିଛନ୍ତି– ଗହ୍ମାପୂର୍ଣ୍ଣମୀ ଦିନ ପ୍ରତ୍ୟୁଷରୁ ଉଠି ନବବସ୍ତ୍ର ପରିଧାନ କରି ରାକ୍ଷୀ ପିନ୍ଧିଲେ ସାରାବର୍ଷ ଶରୀର ବାହ୍ୟ ବିପତ୍ତିରୁ ନିରାପଦ ରହେ । କୌରବଙ୍କ ଆକ୍ରୋଶରୁ ପୁଅମାନଙ୍କୁ ରକ୍ଷା କରିବା ଅଭିପ୍ରାୟରେ କୁନ୍ତୀ ଦିନେ ଶ୍ରୀକୃଷ୍ଣଙ୍କ ହାତରେ ରାକ୍ଷୀ ବାନ୍ଧିଥିଲେ । ପାଣ୍ଡବମାନଙ୍କ ସୁରକ୍ଷା ପାଇଁ ମାତା କୁନ୍ତୀ ନିଜ ପୁଅମାନଙ୍କ ହାତରେ ରକ୍ଷା ବନ୍ଧନ କରୁଥିଲେ । ଗୋପୀମାନେ ବାଳକ କୃଷ୍ଣଙ୍କ ଉପରକୁ କିଛି ବିପତ୍ତି ନଆସୁ ଏହି ଆଶାରେ ତାଙ୍କୁ ରାକ୍ଷୀ ପିନ୍ଧାଇ ଦେଇ ତାଙ୍କର ମଙ୍ଗଳ ମନାସୁ ଥିଲେ । ବଳରାମଙ୍କ ସହିତ ମାୟାବୀ ଅସୁରର ଯୁଦ୍ଧ ଚାଲିଥିଲା ବେଳେ ଲୋକମାନେ ନିରାପଦରେ ରହିବା ଉଦ୍ଦେଶ୍ୟରେ ଗହ୍ମାପୂର୍ଣ୍ଣମୀ ଦିନ ଜାତି ବର୍ଣ୍ଣ ଧର୍ମ ନିର୍ବିଶେଷରେ ପଇତା ଧାରଣ କରିବା କଥା ପୁରାଣରେ ବର୍ଣ୍ଣିତ ହୋଇଛି ।

### ବଳଦେବଙ୍କ ହାତରେ ରାକ୍ଷୀ

ଶ୍ରୀବଳଭଦ୍ର ହେଉଛନ୍ତି ପରଂବ୍ରହ୍ମ ଶ୍ରୀକୃଷ୍ଣଙ୍କର ଅଭିନ୍ନ ଅଙ୍ଗ । ଐତିହାସିକମାନଙ୍କ ମତରେ ସେ ହେଉଛନ୍ତି ପ୍ରାକ୍ ବୈଦିକ ଯୁଗର ଶିବ ଓ ପରବର୍ତ୍ତୀ କାଳର ବଳଭଦ୍ର । ସେ ଶ୍ରବଣା ନକ୍ଷତ୍ରଯୁକ୍ତ ଶ୍ରାବଣ ମାସର ରାକ୍ଷୀ ପୂର୍ଣ୍ଣିମାରେ ମକର ଲଗ୍ନରେ ଶୁକ୍ରବାର ଦିନ ଜନ୍ମ ହୋଇଥିଲେ । ଶ୍ରୀମଭାଗବତ ଅନୁସାରେ ଦେବକୀଙ୍କ ସପ୍ତମ ଗର୍ଭ ଯୋଗମାୟାଙ୍କ ଦ୍ୱାରା ଆକର୍ଷିତ ହୋଇ ବସୁଦେବଙ୍କ ଜ୍ୟେଷ୍ଠା ପତ୍ନୀ ରୋହିଣୀଙ୍କ ଗର୍ଭରେ ସ୍ଥାପିତ ହୋଇଥିଲା । ତେଣୁ ତାଙ୍କ ନାମ ସଙ୍କର୍ଷଣ ।

ଗର୍ଭସଙ୍କର୍ଷଣାତ୍ ତଂ ବୈ ପ୍ରାହୁଃ ସଙ୍କର୍ଷଣଂ ଭୁବି ।
ରାମେତି ଲୋକରମଣାଦ୍ ବଳଂ ବଳବଦୁଚ୍ଛ୍ରାତ୍ ॥

ଭା.ମହାପୁରାଣ.୨/୧୩

ସେ ଲୋକମାନଙ୍କୁ ଆନନ୍ଦ ଦାନ କରୁଥିବାରୁ ରାମ । ବଳଶାଳୀମାନଙ୍କ ମଧ୍ୟରେ ଅଧିକ ବଳଶାଳୀ ହୋଇଥିବାରୁ ସେ ବଳ । ସେ ବିଷ୍ଣୁ ଜ୍ୟୋତିରେଖା ହୋଇଥିବାରୁ ଅନନ୍ତ । ବିଷ୍ଣୁଙ୍କ ଅଂଶବିଶେଷ ହୋଇଥବାରୁ ସେ ଶେଷଦେବ (ସର୍ପଦେବ) ଅଟନ୍ତି । ସେ ରୋହିଣୀ ନାମକ ଗାଈ ଗର୍ଭରୁ ନନ୍ଦରାଜାଙ୍କ ଘରେ ଜନ୍ମ ହୋଇଥିଲେ । ତେଣୁ ସେ ରୋହିଣେୟ । ସେ ଅନନ୍ତ ଶେଷନାଗ ଅଂଶରେ ଜନ୍ମିଥିଲେ । ଆଦି ଅନ୍ତ ନଥିବା ଅନନ୍ତର ସହସ୍ର ଫଣା ଅସୁମାରୀ ସମ୍ଭାବନାର

ପ୍ରତୀକ । ବିଷ୍ଣୁଙ୍କ ସ୍ୱରୂପ ହୋଇଥିବାରୁ ବାସୁଦେବ ମନ୍ତ୍ରରେ ତାଙ୍କର ବିଶେଷ ପୂଜାର୍ଚ୍ଚନା କରାଯାଏ । ବିଷ୍ଣୁଙ୍କ ଦଶାବତାର ମଧ୍ୟରେ ସେ ଅଷ୍ଟମ ଅବତାର । ଦୁଷ୍ଟ ଦଳନ ନିମନ୍ତେ ସେ ଗଦା ଓ କୃଷିକାର୍ଯ୍ୟ ନିମନ୍ତେ ଲଙ୍ଗଳ ଧାରଣ କରିଛନ୍ତି । ଶେଷାବତାର ବଳଭଦ୍ରଙ୍କ ଆୟୁଧ ଲଙ୍ଗଳ କାଳ(ମୃତ୍ୟୁର) ପ୍ରତୀକ । ମୃତ୍ୟୁଚେତନା ସର୍ବଦା ମନ ମଧ୍ୟରେ ଥିଲେ ଜୀବନର ସାର୍ଥକତା ଉପଯୋଗ କରାଯାଇପାରିବ । ସେ କୃଷିର ଆଦ୍ୟ ପ୍ରବର୍ତ୍ତକ ଓ କୃଷିଦେବତା । ସେ କୃଷକମାନଙ୍କର ଆଦର୍ଶ । କୃଷିର ସମୃଦ୍ଧି ହେଲେ ଦେଶ ସମୃଦ୍ଧି ହୋଇଥାଏ ।

ଏହି ପ୍ରସଙ୍ଗରେ ସ୍ୱଭାବ କବି ଗଙ୍ଗାଧର ମେହେର 'କୃଷି ଗୌରବରେ' ଲେଖନ୍ତି –

'କୃଷି ତୋର ବେଦରେ, କୃଷି ତୋ ପୁରାଣ ॥ କୃଷି ଘେନି ନୃପତି, କୃଷି ଘେନି ସଭ୍ୟ, କୃଷିବଳେ ଆୟ ଶ୍ରୀସମ୍ପଦ ହୁଏ ଲଭ୍ୟ ।' ଅଗଣିତ ଭକ୍ତଙ୍କୁ ଅଭୟ ପ୍ରଦାନ ନିମିତ୍ତ ସେ ସର୍ବଦା ତ୍ରିପୁର ବିଜୟ ବେଶରେ ସୁସଜ୍ଜିତ । ତାଙ୍କର ସହସ୍ର ଫଣା ମଧ୍ୟରୁ ଏକ ଫଣା ଉପରେ ଅବଲୀଳାକ୍ରମେ ସମଗ୍ର ବିଶ୍ୱକୁ ଧାରଣ କରି ଅଛନ୍ତି । ରାକ୍ଷୀପୂର୍ଣ୍ଣମୀ ଦିନ ବିଭିନ୍ନ ସ୍ଥାନରେ ବଳଦେବଙ୍କ ଜନ୍ମୋତ୍ସବ ବଡ଼ ଆଡ଼ମ୍ବର ସହକାରେ ପାଳିତ ହୋଇଥାଏ । ଶ୍ରୀକ୍ଷେତ୍ରରେ ଏହିଦିନ ବିବିଧ ବନ୍ଦାବନା ପରେ ସୁଦର୍ଶନ ବିମାନରେ ମାର୍କଣ୍ଡେଶ୍ୱର ମନ୍ଦିରକୁ ଯା'ନ୍ତି । ମଣ୍ଡପ ଉପରେ ବିଜେ ହୁଅନ୍ତି । ଆଗରୁ କୁମ୍ଭାର ବିଶୋଇ ଚିକିଟା ମାଟି ଦେଇଥାଏ । ସୁଦୁସୁଆର ଏହି ମାଟିରେ ବଳଭଦ୍ର ମୂର୍ତ୍ତି ନିର୍ମାଣ କରନ୍ତି । ପୂଜାପଣ୍ଡା ଏହି ମୂର୍ତ୍ତିକୁ ଜୀବନ୍ୟାସ କରି ବିଧାନ ଅନୁଯାୟୀ ସବୁଜାତ କର୍ମ କରନ୍ତି । ଏହା ପରେ ପ୍ରସାଦଲାଗି ହୁଏ । ପଞ୍ଚୋପଚାରରେ ପୂଜା ଓ ଶୀତଳ ମଣୋହି ହୁଏ । ବନ୍ଦାପନା ସରିଲେ ବଳଭଦ୍ର ପ୍ରତିମାକୁ ଜଳରେ ବିସର୍ଜନ କରାଯାଏ । ଏହାପରେ ସୁଦର୍ଶନ ଚାରି ଆଶ୍ରମ ବୁଲି ନଗର ଭ୍ରମଣ କରି ଦେଉଳକୁ ଫେରନ୍ତି । ଏହିଦିନ ଶ୍ରୀଜୀଉମାନଙ୍କୁ ଶ୍ରୀମନ୍ଦିରରେ ବୋଇରାଣୀ ପତନୀ ନୂଆଲୁଗା ଲାଗି ହୁଏ । ମଧ୍ୟାହ୍ନ ଧୂପରେ ବରୁଣ ପୂଜା ସରେ । ପୁଷ୍ପାଳକ ସେବକମାନେ ଶ୍ରୀଜୀଉମାନେ ଭଉଣୀ ସୁଭଦ୍ରାଙ୍କ ପକ୍ଷରୁ ଶ୍ରୀଜଗନ୍ନାଥ ଓ ବଳଭଦ୍ରଙ୍କ ଶ୍ରୀଭୁଜରେ ପାଟରା ବିଷୋୟୀ ଯୋଗାଇଥିବା ଚାରୋଟି ପାଟରାକ୍ଷୀ ଦୁଇ ଭୁଜରେ ପିନ୍ଧନ୍ତି ।

**ଗହ୍ମାବେକରେ ରାକ୍ଷୀ**

ଗୋ ମାତା ଶବ୍ଦରୁ ଗହ୍ମା ଶବ୍ଦ ଉଦ୍ଭବ ବୋଲି କୁହାଯାଇ ପାରେ । ଓଡ଼ିଶାର ଜନଜୀବନ କୃଷିକର୍ମ ସହିତ ଓତପ୍ରୋତ ଭାବେ ଜଡ଼ିତ । ଶ୍ରାବଣ ପୂର୍ଣ୍ଣିମା ଏକ କୃଷିଭିତ୍ତିକ ପର୍ବ । ଭାରତ ଏକ କୃଷିପ୍ରଧାନ ଦେଶ ହୋଇଥିବାରୁ ପ୍ରତ୍ୟେକ ରାଜ୍ୟରେ ଏହି ପର୍ବକୁ ଆନନ୍ଦ ଉଲ୍ଲାସର ସହ ପାଳନ କରାଯାଏ । ଗୋସମ୍ପଦ ପୁରପଲ୍ଲୀର ସବୁଠାରୁ ବଡ଼ ସମ୍ପଦ । ଗାଈ ଓ ବଳଦଙ୍କର କୃଷିକର୍ମ ନିମନ୍ତେ ଯଥେଷ୍ଟ ଅବଦାନ ରହିଛି । ପୌରାଣିକ ଆଖ୍ୟା ଅନୁଯାୟୀ କାମଧେନୁ ପରି ଗୋମାତା ମଣିଷର ଅନେକ ଆଶା ଅଭୀପ୍ସା ପୂରଣ କରିଥାଏ । ସ୍ୱାସ୍ଥ୍ୟ ନିରାମୟ ଜୀବନ ପାଇଁ ଗୋମାତାର ଦାନ ଅତୁଳନୀୟ । ଗୋମାତା ମଣିଷକୁ ବିବିଧ ବିଘ୍ନରୁ ରକ୍ଷା କରିଥାଏ । ବହୁ ପ୍ରାଚୀନ କାଳରୁ ଓଡ଼ିଆ ଜାତି ଗାଈଗୋରୁଙ୍କୁ ଦେବତା ଜ୍ଞାନରେ ପୂଜା କରି ଆସିଛି । ସମସ୍ତ ଦେବଦେବୀ ତା'ର ଶରୀରରେ କଳ୍ପିତ ହୋଇଛନ୍ତି ।

ଯାହାର ଶୃଙ୍ଗୁ ପାଦ ଯାଏ । ଅଙ୍ଗେ ବସନ୍ତି ଦେବତାଏ ॥
ଗୋରୁଙ୍କ ପ୍ରତି ଲୋମକୂପେ । ଦେବ ବସନ୍ତି ନାନା ରୂପେ ॥
ବହୁ ତପସ୍ୟା ଫଳେ ଗାଭୀ । ଅଛନ୍ତି ଏ ପ୍ରଭାବ ଲଭି ॥

ଗହ୍ମାପର୍ବ ଗୋ ଦେବତା ପୂଜାର ପର୍ବ । ଉତ୍କଳର ସ୍ୱଭାବ କବି ଗଙ୍ଗାଧର ମେହେର ଗୋସମ୍ପଦର ମହିମା ପ୍ରଖ୍ୟାପନ କରି କହନ୍ତି–

ପୃଷ୍ଠେ ବ୍ରହ୍ମା ଗଳେ ବିଷ୍ଣୁ ... ରୁଦ୍ର ସ୍ଥିତ । ଆର୍ଯ୍ୟ ଋଷିମୁଖେ ଏହା ହୁଅଇ କଥିତ ॥

ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ମଧ୍ୟ ଗାଈବଳଦଙ୍କୁ ଶ୍ରଦ୍ଧାର ସହ ପୂଜା କରିବା ପାଇଁ କହି ଯାଇଛନ୍ତି–

ଗୋ ସେବା କର ଘରେ ଘରେ ।
ଗୋ ହିତ ବିଚାର ମନରେ ॥

ଶ୍ରୀବଳଦେବ ସହିତ ଗୋଜାତିର ପୂଜା କରାଯାଏ । ରୋହିଣୀ ନାମକ ଏକ ଗାଈଠାରୁ ଜନ୍ମ ଲାଭ କରିଥିଲେ ବୋଲି ଗୋଜାତି ସହିତ ତାଙ୍କର ସମ୍ପର୍କ ଅତି ନିବିଡ଼ । ଗହ୍ମା ପୂର୍ଣ୍ଣିମା ଦିନ ଗାଈବଳଦଙ୍କୁ ସଫାସୁତୁରା କରି ଗାଧୋଇ ଦିଆଯାଏ ।

ତେଣୁ କୃଷକମାନେ ହଳଲଙ୍ଗଳ ସହିତ ଅନ୍ୟାନ୍ୟ କୃଷି ଉପକରଣକୁ ଧୋଇପୋଛି ଚନ୍ଦନ ସିନ୍ଦୂର ହଳଦୀ କୁଙ୍କୁମ ଫୁଲ ଧୂପଦୀପ ଦେଇ ଗୋଟିଏ ସ୍ଥାନରେ ରଖି ପୂଜା କରିଥା'ନ୍ତି । ଏହି ପୂଜା ସାମଗ୍ରୀ ଦେଇ ଗୋମାତାଙ୍କୁ ପୂଜା କରାଯାଇ ରାକ୍ଷୀ ସହ ଉପବୀତ ପଇତା ପିନ୍ଧାଇ ଦିଆଯାଏ । ସୁମିଷ୍ଟ ଓ ମିଠା ଭୋଜନ ଦିଆଯାଏ । ଗହ୍ମାପୂର୍ଣ୍ଣିମାରେ ବଳିବର୍ଦ୍ଧ ପୂଜା ଏକ ସ୍ୱତନ୍ତ୍ର ପରମ୍ପରା । ଆଖ୍ୟାୟିକା ଅନୁଯାୟୀ ସ୍ୱୟଂ ବଳିବର୍ଦ୍ଧ ପ୍ରଭୁ ଶ୍ରୀବଳଭଦ୍ର ଗହ୍ମା ନାମକ ଏକ ଦୁରାଚାରୀକୁ ବଧ କରି ଗୋଜାତିର କଲ୍ୟାଣ ସାଧନ କରିଥିଲେ । ଲୋକ ବିଶ୍ୱାସ ଗହ୍ମାପୂର୍ଣ୍ଣିମା ଦିନ ବଳିବର୍ଦ୍ଧଙ୍କ ପୂଜା କଲେ କୃଷି କ୍ଷେତ୍ରରେ ସମସ୍ତ ବାଧକ ଦୂର ହୋଇଯାଏ । ପ୍ରକାରାନ୍ତରେ କୁହାଯାଏ ଗୋଜାତିର ବାଧକ ଥିଲା ଗହ୍ମା ନାମକ ଏକ କୁଗ୍ରହ । ଶ୍ରାବଣ ପୂର୍ଣ୍ଣିମା ଦିନ ଭଗବାନ୍ ବଳଦେବ ତାହାକୁ ସଂହାର କରି ଏହି ପର୍ବ ରଚନା କରିଥିଲେ । ଆଉ କେତେକ କହନ୍ତି ଏହି ଦିନ ଗହ୍ମାନାମକ ଏକ ଠାକୁରାଣୀଙ୍କ ପୂଜା କରାଯାଉଥିଲା ।

### ରାକ୍ଷୀ ପୂର୍ଣ୍ଣମୀରେ ଝୁଲଣ ଯାତ୍ରା

ଶ୍ରାବଣ ପୂର୍ଣ୍ଣିମାକୁ ଝୁଲଣଯାତ୍ରା ମଧ୍ୟ କୁହାଯାଏ । ଶ୍ରାବଣ ଶୁକ୍ଳଦଶମୀ ତିଥିରୁ ରାଧାକୃଷ୍ଣଙ୍କ ମୂର୍ତ୍ତିକୁ ଦୋଳିରେ ବସାଇ ଝୁଲଣଯାତ୍ରା ଆରମ୍ଭ ହୁଏ । ଏହି ପର୍ବ ଗହ୍ମାପୂର୍ଣ୍ଣମୀ ରାତିରେ ଶେଷ ହୁଏ । ପୁରୀ ମନ୍ଦିରରେ ଏହି ପର୍ବ ବେଶ୍ ଆଡ଼ମ୍ବର ସହକାରେ ପାଳିତ ହୁଏ । ଦୋଳି ପୁଷ୍ପରାଶିରେ ଅଳଙ୍କୃତ ହୁଏ । ଦିଅଁଙ୍କ ବସ୍ତ୍ରପରିପାଟୀ ଦର୍ଶକବର୍ଗଙ୍କୁ ଆକର୍ଷିତ କରେ । ଚନ୍ଦ୍ରାଲୋକରେ ଅଧରଂ ମଧୁରଂ..ସଂଗୀତର ଅପୂର୍ବ ମାଧୁର୍ଯ୍ୟ ପ୍ରତିଟି ହୃଦୟରେ ମୂର୍ଚ୍ଛନା ସୃଷ୍ଟି କରେ । ପୂର୍ଣ୍ଣିମା ରାତିକୁ ଏହି ପର୍ବ ଅଧିକ ମନୋଜ୍ଞ କରେ । ଏହା ହେଉଛି ରାଧାକୃଷ୍ଣଙ୍କର ବର୍ଷାକାଳୀନ ରାସୋତ୍ସବ । ବୃନ୍ଦାବନର କୁଞ୍ଜବନରେ ଭକ୍ତିମତୀ ଗୋପୀମାନେ ରସିକଶେଖର ଶ୍ରୀକୃଷ୍ଣଙ୍କୁ ଲତାଦୋଳିରେ ବସାଇ ଝୁଲାଉଥିଲେ । ଝୁଲଣଯାତ୍ରାର ଉତ୍ପତ୍ତି ରାଧାକୃଷ୍ଣଙ୍କର କୁଞ୍ଜବନର ଝୁଲଣକୁ ଭିତ୍ତି କରି ସମ୍ଭବ ହୋଇ ପାରିଛି । ଏହାକୁ ନରସିଂହ ଦାସ 'ଶ୍ରବଣେ କୁଞ୍ଜମନ୍ଦିରମ୍' ବୋଲି ଉଲ୍ଲେଖ କରିଛନ୍ତି । ଏହାକୁ ଭାବ ଦେହରେ ଅପ୍ରାକୃତ ରମଣ କୁହାଯାଏ । ଏହା ବାସ୍ତବରେ ରାଧାକୃଷ୍ଣଙ୍କର ଦିବ୍ୟଲୀଳାର ପ୍ରତୀକ । ପ୍ରାୟ ଷୋଡ଼ଶ ଶତାବ୍ଦୀ ପରଠାରୁ ଭାରତର ବୈଷ୍ଣବ ସମ୍ପ୍ରଦାୟ ଓ ମଠ ମନ୍ଦିରମାନଙ୍କରେ ଝୁଲଣଯାତ୍ରା ଅନୁଷ୍ଠିତ ହୋଇ ଆସୁଛି ।

### ଯମହାତରେ ରାକ୍ଷୀ

ଯମୁନା (ବୃନ୍ଦାବନରେ ଏବେ ବି ନଦୀ ରୂପରେ ପ୍ରବାହିତ) ଭାଇ ଯମ ହାତରେ ରାକ୍ଷୀ ବାନ୍ଧି ଅମରତ୍ୱ ବର୍ଷା କଲେ । ଯମ ଏହି ପର୍ବର ପବିତ୍ରତାରେ ଏପରି ପ୍ରଭାବିତ ହୋଇ ପଡ଼ିଥିଲେ ଯେ ସେ ଘୋଷଣା କରିଦେଲେ ଯିଏ ଭଉଣୀଠାରୁ ଏହି ତିଥିରେ ରାକ୍ଷୀ ବନ୍ଧାଇ ତାକୁ ସୁରକ୍ଷାର ପ୍ରତିଶ୍ରୁତି ଦିଅନ୍ତି ସେ ଅମର ହୋଇଯା'ନ୍ତି ।

### ବାସ୍ତୁବିଦ୍ୟାରେ ରାକ୍ଷୀ

ଭାରତୀୟ ପରମ୍ପରା ଅନୁସାରେ ରକ୍ଷାବନ୍ଧନ ଦିନ ପରିବାରର ସଦସ୍ୟଙ୍କ ହାତରେ ରାକ୍ଷୀ ବାନ୍ଧିବା ପୂର୍ବରୁ ପୁରୋହିତ ଲାଲ୍ ଓ କସରିଆ ଡ଼ୋରିକୁ ଗାୟତ୍ରୀ ମନ୍ତ୍ରରେ ଅଭିମନ୍ତ୍ରିତ କରି ଘରର ମୁଖ୍ୟ ଦ୍ୱାରରେ ରକ୍ଷାସୂତ୍ର ଭାବରେ ବାନ୍ଧି ଥା'ନ୍ତି । ବାସ୍ତୁଶାସ୍ତ୍ରମତେ ଏହିପରି ରକ୍ଷାବନ୍ଧନ ଘରର ସମସ୍ତ ପ୍ରକାର ଦୁର୍ଭାଗ୍ୟକୁ ଦୂର କରେ । ଘରେ ବାସ କରୁଥିବା ସମସ୍ତ ସଦସ୍ୟଙ୍କ ପୁରୁଷାର୍ଥ ଜାଗ୍ରତ କରେ । ଧର୍ମର ମାର୍ଗ ଖୋଲିଦିଏ । କୁଦୃଷ୍ଟି ଓ କୋପଦୃଷ୍ଟିରୁ ଘରକୁ ରକ୍ଷା କରିବା ସହିତ ଗୃହ ପରିବେଷ୍ଟିତ– ଜଳ, ବାୟୁ, ପୃଥିବୀ, ଆକାଶ ଓ ଅଗ୍ନିକୁ ସନ୍ତୁଳିତ ରଖେ । ଅଧିକନ୍ତୁ ଶ୍ରାବଣୀ ପର୍ବରେ ବୃକ୍ଷରୋପଣ କରିବା ଏକ ପରମ୍ପରା ଅଟେ । ସବୁଜିମାକୁ କାଳେ କାଳେ ସମ୍ବର୍ଦ୍ଧନା ଦିଆଯାଇଛି । ଏଥିରେ ଜୀବଜଗତ ଓ ରାଷ୍ଟ୍ରର ସମୃଦ୍ଧି ନିହିତ । ବୃକ୍ଷରୋପଣର ମହତ୍ତ୍ୱ ଉଲ୍ଲେଖ କରି ଅଥର୍ବ ପୃଥ୍ୱୀସୂକ୍ତରେ କୁହାଯାଇଛି–ବୃକ୍ଷ ବନସ୍ପତି ମଧ୍ୟ ପୃଥିବୀର ସନ୍ତାନ । ବାୟୁରେ ଥିବା ବିଷାକ୍ତ ତତ୍ତ୍ୱ (ଅଙ୍ଗାରକାମ୍ଳ)କୁ ବୃକ୍ଷ ଆହାର ରୂପେ ଗ୍ରହଣ କରି ତା'ର ପ୍ରତିବଦଳରେ ପ୍ରାଣୀ ଆବଶ୍ୟକ କରୁଥିବା ପ୍ରାଣଦାୟକ ବାୟୁ(ଅକ୍ସିଜେନ୍)ପ୍ରଦାନ କରିଥାଏ । ବୃକ୍ଷବାହୁଲ୍ୟ ବର୍ଷାକାରକ । ଅତଏବ ପ୍ରକୃତି ଓ ପର୍ଯ୍ୟାବରଣର ସମୃଦ୍ଧି ଉପରେ ବାସ୍ତୁରାକ୍ଷୀ ଶାଣିତ ଦୃଷ୍ଟି ରଖିଥାଏ ।

### ଇତିହାସ ପୃଷ୍ଠାରେ ରାକ୍ଷୀ

ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀର ଘଟଣା । ମାସିଡ଼ୋନିଆର ରାଜା ଗ୍ରୀକ୍ ବୀର ଆଲେକ୍‌ଜାଣ୍ଡର ଥରକୁ ଥର ଭାରତ ଆକ୍ରମଣ

କରୁଥା'ନ୍ତି । ପ୍ରବଳପ୍ରତାପୀ ରାଜା ପୁରୁଙ୍କଠାରୁ ପରାସ୍ତ ହେଉଥା'ନ୍ତି । ସ୍ୱାମୀଙ୍କ ପରାଜୟରେ ଲଜ୍ଜିତ ହେଲେ ଆଲେକ୍‌ଜାଣ୍ଡରଙ୍କ ପତ୍ନୀ । ସ୍ୱାମୀଙ୍କ ସୁରକ୍ଷା ନେଇ ଚିନ୍ତିତ ଓ ଆତଙ୍କିତ ହୋଇ ପଡ଼ିଲେ । ସେଥିପାଇଁ ସେ ଏକ ଉପାୟ ପାଞ୍ଚିଲେ । ପୂର୍ବରୁ ରାକ୍ଷୀ ବିଷୟରେ ସେ ଶୁଣିଥିଲେ । ସମ୍ପର୍କ ଯୋଡ଼ିବା ପାଇଁ ସେ ରାଜା ପୁରୁଙ୍କ ନିକଟକୁ ଏକ ରାକ୍ଷୀ ପଠାଇଲେ ଓ ତାଙ୍କୁ ଭଉଣୀ ରୂପେ ଗ୍ରହଣ କରିବାକୁ ଅନୁରୋଧ ଜଣାଇଲେ । ପୁରୁ ତାଙ୍କର ଏହି ଇଚ୍ଛାକୁ ସମ୍ମାନ ଜଣାଇଲେ । ଆଲେକ୍‌ଜାଣ୍ଡରଙ୍କ କୌଣସି କ୍ଷତି କରିବେ ନାହିଁ ବୋଲି ପ୍ରତିଶ୍ରୁତି ଦେଇଥିଲେ ।

### ମୁସଲମାନ୍ ଶାସକଙ୍କ ହାତରେ ରାକ୍ଷୀ

ରାକ୍ଷୀ ପର୍ବ ଇସ୍‌ଲାମ ସମାଜକୁ ମଧ୍ୟ ପ୍ରଭାବିତ କରି ଆସିଛି । ମଧ୍ୟଯୁଗରେ ମୁସଲମାନ୍ ଶାସକମାନଙ୍କର କଥା । ସେମାନେ ହିନ୍ଦୁ ରାଜପୁତ ଶାସିତ ରାଜ୍ୟଗୁଡ଼ିକ ଉପରେ ବାରମ୍ବାର ଆକ୍ରମଣ କରୁଥା'ନ୍ତି । ଅତ୍ୟାଚାରୀ ମୁସଲମାନ୍ ଶାସକଙ୍କଠାରୁ ସ୍ୱକୀୟ ସତୀତ୍ୱ ଓ ପତିବ୍ରତାର ସୁରକ୍ଷା ପାଇଁ ରାଜପୁତ୍ ରମଣୀମାନେ ସେମାନଙ୍କ ପାଖ ପଡ଼ୋଶୀ ରାଜାଙ୍କ ନିକଟକୁ ରାକ୍ଷୀ ପଠାଇ ଭାଇଚାରା ସମ୍ପର୍କ ଯୋଡୁଥା'ନ୍ତି । ହିନ୍ଦୁ ରାଜବଂଶୀୟ ରମଣୀମାନେ ମୁସ୍‌ଲିମ ବାଦସାହ୍। ସୁବେଦାରମାନଙ୍କୁ ରାକ୍ଷୀ ବନ୍ଧନ କରି ସେମାନଙ୍କଠାରୁ ସୁରକ୍ଷା ଆଶା କରୁଥିଲେ ।

୧୫୩୫ ଖ୍ରୀଷ୍ଟାବ୍ଦର କଥା । ଗୁଜୁରାଟର ସୁଲତାନ୍ ବାହାଦୁର ଶାହାଙ୍କ ଆକ୍ରମଣରେ ଆଶଙ୍କିତ ଚିତୋରର ବିଧବାରାଣୀ ବାଳୁତରାଜା ବିକ୍ରମାଦିତ୍ୟଙ୍କ ମାତା କର୍ଣ୍ଣାବତୀ ହୁମାୟୁନ୍‌ଙ୍କ ନିକଟକୁ ହସ୍ତବନ୍ଧନୀ ପଠାଇ ଥିଲେ । ତାଙ୍କୁ ଭାଇ ବୋଲି ସମ୍ବୋଧନ କରି ଏକ ଚିଠି ଲେଖି ସହାୟତା ଅନୁରୋଧ କରିଥିଲେ । ହୁମାୟୁନ୍ ବୁଝିଥିଲେ 'ରାକ୍ଷୀ ଭାରତୀୟ ପରମ୍ପରାରେ ଧର୍ମର ଊର୍ଦ୍ଧ୍ୱରେ ଏକ ପବିତ୍ର ସମ୍ପର୍କ । ବିପଦ ଆପଦରେ ଭଉଣୀର ସହାୟତା କରିବାର ପ୍ରତିଶ୍ରୁତି ।' ସେ ତୁରନ୍ତ ନିଜର ସୈନ୍ୟଙ୍କୁ ନେଇ ସେଠାରେ ପହଞ୍ଚି ଯାଇଥିଲେ । ସମ୍ରାଟ ପୁରୁ ଓ ସିକନ୍ଦରଙ୍କ ମଧ୍ୟରେ ହୋଇଥିବା ଯୁଦ୍ଧରେ ସିକନ୍ଦର ହାରି ଯାଇଥିଲେ । ସିକନ୍ଦରଙ୍କ କୌଣସି କ୍ଷତି ଘଟାଇ ନଥିଲେ । ସମ୍ରାଟ ଆକବର ଓ ଜାହାଙ୍ଗୀର ମଧ୍ୟ ନିଜଆଡୁ ସଂହତି ପ୍ରତିଷ୍ଠା ପାଇଁ ସମସ୍ତଙ୍କୁ ରାକ୍ଷୀ ବାନ୍ଧିବାକୁ ଆହ୍ୱାନ ଦେଇଥିଲେ । ବହୁ ବ୍ରିଟିଶ ଅଫିସର ଭାରତରେ ରାକ୍ଷୀବନ୍ଧନକୁ ଉତ୍ସାହିତ କରୁଥିଲେ । ନିଜେ ଆଗ୍ରହର ସହିତ ସେଥିରେ ଭାଗ ନେଉଥିଲେ । ଅତଏବ ରାକ୍ଷୀର ଧାର୍ମିକ ଗୁରୁତ୍ୱ ଅପେକ୍ଷା ଆବେଗିକ ଗୁରୁତ୍ୱ ଅଧିକ ଅଟେ ।

### ସ୍ୱାଧୀନତା ସଂଗ୍ରାମୀମାନଙ୍କ ହାତରେ ରାକ୍ଷୀ

୧୯୪୭ରେ ଭାରତୀୟ ସଂଗ୍ରାମରେ ଜନଜାଗରଣ ପାଇଁ ରାକ୍ଷୀର ଭୂମିକା ମଧ୍ୟ କମ୍ ନଥିଲା । ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର ଭାଇଚାରା ଓ ଏକତାର ପ୍ରତୀକ ଭାବେ ରାକ୍ଷୀବନ୍ଧନକୁ ପାଳନ କରୁଥିଲେ । ସେ କହୁଥିଲେ ରକ୍ଷାବନ୍ଧନ ହେଉଛି ମାନବତାର ମହୋତ୍ସବ । ସମାଜରେ ପ୍ରତ୍ୟେକେ ପ୍ରତ୍ୟେକଙ୍କୁ ସାହାଯ୍ୟ ଓ ସୁରକ୍ଷା ଦେବା ଚାହି । ରକ୍ଷାବନ୍ଧନ ଏଥିପାଇଁ ଏକ ମାର୍ଗ । ଜଣକ ସହିତ ଅନ୍ୟ ଜଣେ ସ୍ନେହମମତାରେ ଅନୁବନ୍ଧିତ ହେବାର କ୍ଷେତ୍ର ପ୍ରସ୍ତୁତ କରେ ରାକ୍ଷୀ । ଅନ୍ୟମାନଙ୍କ କଥା ଚିନ୍ତା କରିବା ଓ ଯତ୍ନ ନେବା ଆମର ସାମାଜିକ ଧର୍ମ । ଯେତେବେଳେ ବ୍ରିଟିଶ ସରକାର ଜାତି ଓ ଧର୍ମ ଆଧାରରେ ବଙ୍ଗକୁ ଭାଗ ଭାଗ କରିବାକୁ ୧୯୦୫ ମସିହାରେ ନିଷ୍ପତ୍ତି ନେଲେ, ସେତେବେଳେ ରବୀନ୍ଦ୍ରନାଥ ଠାକୁର ହିନ୍ଦୁ ମୁସଲମାନମାନଙ୍କ ମଧ୍ୟରେ ପ୍ରେମ ଓ ଏକତାର ବନ୍ଧନକୁ ଦୃଢୀଭୂତ କରିବା ଉଦ୍ଦେଶ୍ୟରେ ରକ୍ଷାବନ୍ଧନକୁ ବ୍ୟାପକ କରିଥିଲେ । ବଙ୍ଗବାସୀମାନେ ବଙ୍ଗଭଙ୍ଗକୁ ବିରୋଧ କରୁଥିଲେ । ଇଂରେଜ ବିରୋଧରେ ଲଢିଥିଲେ । ରବୀନ୍ଦ୍ରନାଥ ଠାକୁର ଭାଇଚାରା ଓ ଏକତାର ପ୍ରତୀକ ଭାବେ ରାକ୍ଷୀବନ୍ଧନକୁ ପାଳନ କରୁଥିଲେ । ପ୍ରେମର ବାର୍ତ୍ତା ପ୍ରଚାର କରି ସେ ଶାନ୍ତି ନିକେତନରେ ସହାବସ୍ଥାନର ପ୍ରତୀକ ରୂପେ ଶ୍ୱେତବରାକ୍ଷୀ ମହୋତ୍ସବ ଆରମ୍ଭ କରିଥିଲେ । ଏହା ସାମାଜିକ ତଥା ବନ୍ଧୁତାପୂର୍ଣ୍ଣ ସମ୍ବନ୍ଧର ଶ୍ରେଷ୍ଠ ନିଦର୍ଶନ । ରାକ୍ଷୀରେ ଏହି ରାଜନୈତିକ ଉପଚାର ସଫଳ ହୋଇଥିଲା । ରାକ୍ଷୀର ସ୍ନେହସୌହାର୍ଦ୍ଦ୍ୟର ଡ଼ୋର ବଙ୍ଗବାସୀଙ୍କୁ ଏକଜୁଟ କରିବାରେ ସମର୍ଥ ହୋଇଥିଲା ।

ସ୍ୱାଧୀତନା ଆନ୍ଦୋଳନ ସମୟରେ ଚନ୍ଦ୍ରଶେଖର ଆଜାଦ୍‌ଙ୍କୁ ଧରିବା ପାଇଁ ବ୍ରିଟିଶ ସୈନିକମାନେ କଳବଳ କୌଶଳ

ଖଟାଇଥିଲେ । ଆଜାଦ୍ ଦିନେ ଏକ ଝଡ଼ତୋଫାନ ରାତିରେ ହଠାତ୍ ଜଣଙ୍କ ଘରେ ପହଞ୍ଚିଗଲେ । ସେହି ଘରେ ଜଣେ ବିଧବା ତାଙ୍କର ବଢ଼ିଲା ଝିଅ ସହିତ ରହୁଥିଲେ । ଆଜାଦ୍ ଜାଣିବାକୁ ପାଇଲେ ଅର୍ଥାଭାବ ହେତୁ ଝିଅଟିର ବିଭାଘର ହୋଇ ପାରି ନାହିଁ । ଆଜାଦ୍ ସଙ୍ଗେ ସଙ୍ଗେ ମହିଳା ଜଣଙ୍କୁ ଡ଼ାକି କହିଲେ–ମୋତେ ଧରାଇ ଦେଲେ ଇଂରେଜ ସରକାର ପାଞ୍ଚ ହଜାର ଟଙ୍କା ପୁରସ୍କାର ଦେବେ । ତେଣୁ ଆପଣ ମୋତେ ଧରାଇ ଦେଇ ସେହି ଟଙ୍କାରେ ଆପଣଙ୍କ ଝିଅ ବାହାଘର କରାଇ ନିଅନ୍ତୁ । ଏହା ଶୁଣିବା ପରେ ବିଧବା ମହିଳାଙ୍କ ଆଖିରୁ ଧାରଧାର ହୋଇ ଲୁହ ବୋହିବାକୁ ଲାଗିଲା । ସେ କହିଲେ ଦେଖ ଭାଇ– ତୁମେ ଦେଶକୁ ସ୍ୱାଧୀନ କରିବା ପାଇଁ କାମ କରୁଛ । କେତେ ଝିଅବୋହୂଙ୍କର ଇଜ୍ଜତ ରଖୁଛ । ତୁମ ପରି ସ୍ୱାଧୀନତା ସଂଗ୍ରାମୀଙ୍କ ହାତରେ ଏ ଦେଶର ଭାଗ୍ୟ ଓ ଭବିଷ୍ୟତ । ମୁଁ ମୋର ସ୍ୱାର୍ଥ ପାଇଁ ଏଭଳି ବେଇମାନ କାମ କରିପାରିବି ନାହିଁ । ଏହା କହି ସେ ସଙ୍ଗେ ସଙ୍ଗେ ଆଜାଦଙ୍କ ହାତରେ ରାକ୍ଷୀ ବାନ୍ଧି ଭାଇ କରିନେଲେ । ନିଜେ ମଧ୍ୟ ଦେଶ ସେବା କରିବେ ବୋଲି କଥା ଦେଲେ । ତା'ପର ଦିନ ସକାଳ ହେଲା ବେଳକୁ ଆଜାଦ୍ ସେ ସ୍ଥାନ ଛାଡ଼ି ଚାଲି ଯାଇଥିଲେ । ସେ ଯିବା ପୂର୍ବରୁ ତକିଆ ତଳେ ପାଞ୍ଚ ହଜାର ଟଙ୍କା ଓ ଗୋଟିଏ ଚିଠି ଛାଡ଼ି ଯାଇଥିଲେ । ସେ ଚିଠିରେ ଲେଖା ଥିଲା– 'ମୋର ସ୍ନେହର ଭଉଣୀ ପାଇଁ ଏହା ସାମାନ୍ୟ ଉପହାର' ।

### ଭାଇ ହାତରେ ରାକ୍ଷୀ

ବହୁ ପ୍ରତୀକ୍ଷାର ଅନ୍ତ ଘଟାଇ ବର୍ଷକରେ ଥରେ ଆଜି ଭଳି ଦିନଟି ଆସେ । ଆଜି ଭଉଣୀଟିଏ ଭାଇର ହାତରେ ଅତି ସ୍ନେହଶ୍ରଦ୍ଧାରେ ରାକ୍ଷୀ ବାନ୍ଧି ଦେଇଥାଏ । ସ୍ନେହପ୍ରେମର ଏହି ମହାମିଳନରେ ଉଭୟ ମଧୁର ଅନୁଭବରେ ଆହ୍ଲାଦିତ ହୁଅନ୍ତି । ବନ୍ଧା ହେଉଥିବା ରାକ୍ଷୀରେ ଭାଇ ନିମନ୍ତେ ଭଉଣୀର ସ୍ନେହ ଓ କଲ୍ୟାଣ ଭାବନା ଥାଏ । ଉଭୟଙ୍କ ଆପଣାପଣ ଓ ଶାନ୍ତିରେ ଭିଜିଯାଇ ଥାଏ ଏହି ରାକ୍ଷୀ । ଅଭିମନ୍ତ୍ରିତ ରାକ୍ଷୀ ବର୍ଷେ ପର୍ଯ୍ୟନ୍ତ ବ୍ୟକ୍ତିକୁ ସୁରକ୍ଷିତ ରଖେ ବୋଲି ବିଶ୍ୱାସ କରାଯାଏ । 'ସ ସର୍ବଦୋଷରହିତଃ ସୁଖଂ ସମ୍ବତ୍ସରଂ ବସେତ୍' (ଭବିଷ୍ୟୋତ୍ତର) ମଥାରେ ଚନ୍ଦନର ତିଳକ ମାରି ହଳଦି ମିଶ୍ରିତ ଅକ୍ଷତ, ଦୁବ, ଫୁଲ ଓ ଦୀପରେ ଭାଇର ବନ୍ଦାପନା କରେ । ଈଶ୍ୱରଙ୍କ ନିକଟରେ ଦୀର୍ଘ ଆୟୁ କାମନା କରେ । ବିପଦ ଆପଦରେ ଭଉଣୀକୁ ସୁରକ୍ଷା ଯୋଗାଇ ଛାଇ ପରି ରହି ତା'ର ସ୍ନେହ ମମତାର ମୂଲ୍ୟ ରଖିବା ହେଉଛି ରକ୍ଷାବନ୍ଧନର ଅଭିପ୍ରାୟ । କୁନି ଝିଅ ହେଉ କି କିଶୋରୀ, ଯୁବତୀ ହେଉ କି ବିବାହିତ ମହିଳା, ଏପରିକି ବିଧବା ନାରୀଟିଏ ବି ତା'ର ଭାଇ ହାତରେ ଏହି ରାକ୍ଷୀ ଅତି ଆବେଗରେ ବାନ୍ଧି ଦେଇଥାଏ । ଧର୍ମ, ସମ୍ପ୍ରଦାୟ, ଜାତି, ଉଚ୍ଚନୀଚର କୌଣସି ପ୍ରଭେଦ ନଥାଏ ରକ୍ଷାବନ୍ଧନର ଏହି ପବିତ୍ର ପରମ୍ପରାରେ । ଏଠାରେ ପ୍ରଶ୍ନ ଉଠେ ରାକ୍ଷୀ ନ ବାନ୍ଧିଲେ କ'ଣ ଭାଇଭଉଣୀର ସୁରକ୍ଷା କରି ନଥାଏ ? ଏହା ଭାଇର ପାରିବାରିକ ଓ ସାମାଜିକ ଉତ୍ତରଦାୟିତ୍ୱ । ସମାଜରେ ଶିଥିଳ ହୋଇ ପଡୁଥିବା ଭାଇଭଉଣୀର ବିଶ୍ୱାସ ଓ ଭଲ ପାଇବାକୁ ଉଜ୍ଜୀବିତ କରି ମଜବୁତ୍ କରିବାରେ ରାକ୍ଷୀର ଭୂମିକା କିଛି କମ୍ ନୁହେଁ । ଏହା ସମ୍ପର୍କର ସେତୁକୁ ସୁଦୃଢ଼ କରେ । ଅତଏବ ରକ୍ଷାସୂତ୍ର ସଂକଳ୍ପିତ ହେବାର ପ୍ରତୀକ । ଏହା ଉଚ୍ଚ ଜୀବନ ମୂଲ୍ୟ ରକ୍ଷା ପାଇଁ ଜଣକୁ ବ୍ରତଶୀଳ କରାଏ । ଦାୟିତ୍ୱପୂର୍ଣ୍ଣ ଜୀବନଯାପନ କରିବାର ପ୍ରେରଣା ପ୍ରଦାନ କରେ । ରକ୍ଷାବନ୍ଧନ ଉତ୍ସବ ପାଳନ ଦ୍ୱାରା ପାରିବାରିକ ଓ ସାମାଜିକ ଏକତା ଦୃଢ଼ୀଭୂତ ହୋଇଥାଏ ।

ଭାଦ୍ରପଦ ଶୁକ୍ଳ ପଞ୍ଚମୀକୁ ମଧ୍ୟ ରକ୍ଷାବନ୍ଧନ ପାଇଁ ଶୁଭ ଓ ସିଦ୍ଧଦିନ ବୋଲି ଗଣନା କରାଯାଏ । ଏହାକୁ ଋଷିପଞ୍ଚମୀ ବୋଲି ମଧ୍ୟ କୁହାଯାଏ । ଏହିଦିନ ବ୍ରାହ୍ମଣ ଲୋକମାନେ ତର୍ପଣାଦି କରିଥା'ନ୍ତି ଏବଂ ଭଉଣୀ ଉପବାସ ରହି ଭାଇଙ୍କ ଦୀର୍ଘ ଆୟୁ ଓ ସୁଖଶାନ୍ତି କାମନା କରିଥାଏ ।

### ଦସ୍ୟୁ ହାତରେ ରାକ୍ଷୀ

କୁଖ୍ୟାତ ଦସ୍ୟୁର ହୃଦୟରେ ମଧ୍ୟ ରାକ୍ଷୀ ସ୍ନେହର ଝର ଫିଟାଏ । ଉନବିଂଶ ଶତାବ୍ଦୀର ପୂର୍ବାର୍ଦ୍ଧର କଥା । ରାଜସ୍ଥାନର ଯୋଧପୁରର ଘଟଣା । ଚାଲିଥାଏ ଦସ୍ୟୁ ମଙ୍ଗଳଦାସର ଅମଙ୍ଗଳ ରାଜ୍ । ମରୁଯାତ୍ରୀଙ୍କଠାରୁ ଆରମ୍ଭ କରି ସାଧାରଣ ଲୋକଙ୍କ ମଧ୍ୟରେ କୋକୁଆ ଭୟ । ରାକ୍ଷୀ ପୂର୍ଣ୍ଣମୀ ଦିନ ସକାଳେ ହୋହଲ୍ଲା–ଦୌଡ଼ି ଚାଲ, ପଳାଇ ଚାଲ ... ମଙ୍ଗଳ ଦାସ ଆସୁଛି । ଯିଏ ଯୁଆଡ଼େ ପାରିଲେ ଲୁଚିଗଲେ । ହେଲେ ନିଜକୁ ଲୁଚାଇ

ପାରିଲା ନାହିଁ ଏକ ବିଧବା ସ୍ତ୍ରୀଲୋକ । କାଖରେ ଚାରି ପାଞ୍ଚବର୍ଷର ଅବୁଝା ଝିଅଟି । ରାହା ଧରି କାନ୍ଦୁଛି – ଭାଇ ହାତରେ ରାକ୍ଷୀ ବାନ୍ଧିବ ବୋଲି । ମଙ୍ଗଳଦାସର ଭୟ ନିରୀହ ଶିଶୁକୁ କାହିଁ ସ୍ପର୍ଶ କରିବ ? ଇତିମଧ୍ୟରେ ମରୁଦସ୍ୟୁ ମଙ୍ଗଳ ଦାସ ନିଜ ଦଳବଳ ସହିତ ଓଟ ପିଠିରେ ବସି ବିଧବାଟି ପାଖରେ ପହଞ୍ଚି ସାରିଥାଏ । ତାକୁ ଦେଖି ବିଧବାଟି ବିଚରା ବରଡ଼ାପତ୍ର ପରି ଥରୁଥାଏ । ମୁଦ୍ଗର ପରି ହାତଟି ବାହାର କରି ବଢାଇ ଦେଇ କୁନି ଝିଅଟିକୁ କହିଲା–ନେ ! ମୋ ହାତରେ ରାକ୍ଷୀ ବାନ୍ଧ । ମୁଁ ତୋର ଭାଇ । କୁନି ଝିଅଟି ତା'ର କୋତରା ଚୁନରୀରୁ ଖିଏ ଛିଡ଼େଇ ଖିଲି ଖିଲି ହସି ରାକ୍ଷୀଟିଏ ବାନ୍ଧି ଦେଲା ମଙ୍ଗଳ ଦାସ ହାତରେ । ତା'ପରେ ଲୋକଙ୍କ ଆଖି ସଜଳ ହୋଇ ଉଠିଲା । ସାରା ଜୀବନ ସେହି ଭାଇଭଉଣୀ ସମ୍ପର୍କ ଅତୁଟ ରହିଥିଲା ।

### ରାକ୍ଷୀ ପୂର୍ଣ୍ଣମୀରେ ଗହ୍ମାଡ଼ିଆଁ

ଓଡ଼ିଶାର ସାମରିକ ପରମ୍ପରାରେ ଗହ୍ମା ପୂର୍ଣ୍ଣିମା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ପାଇକମାନେ ନୂତନ ରଣକୌଶଳର ଅଭ୍ୟାସ ପାଇଁ ଶ୍ରାବଣପୂର୍ଣ୍ଣିମାକୁ ଶୁଭଙ୍କର ମନେ କରୁଥିଲେ । ଏବେ ମଧ୍ୟ ପାଇକମାନଙ୍କ ସମରାଭ୍ୟାସ 'ଗହ୍ମାଡ଼ିଆଁ' ରୂପେ ପରିଚିତ ।

### ଲଘୁଜନଙ୍କ ହାତରେ ରାକ୍ଷୀ

ଶ୍ରାବଣ ପୂର୍ଣ୍ଣିମା ଦିନ ପିତାମାତା ଓ ଗୁରୁଜନମାନଙ୍କ ନିକଟକୁ ଯାଇ ସାନମାନେ ନମ୍ରତାପୂର୍ବକ ନିଜର ଶ୍ରଦ୍ଧା, ସମ୍ମାନ ଓ କୃତଜ୍ଞତା ପ୍ରକାଶ କରିଥାନ୍ତି । ଗୁରୁଜନମାନେ ମଧ୍ୟ ନିଜର ବାତ୍ସଲ୍ୟ ଭାବ ଦେଖାଇ ଆଶୀର୍ବାଦର ପ୍ରତୀକ ସେମାନଙ୍କ ହାତରେ ରାକ୍ଷୀ ବାନ୍ଧି ଦେଇଥା'ନ୍ତି ।

### ନାରିୟଲ ପୂର୍ଣ୍ଣିମା

ଭାରତର ଭିନ୍ନଭିନ୍ନ ଭାଗରେ ରାକ୍ଷୀପର୍ବକୁ ଲୋକେ ନାନା ପ୍ରକାର ନାମ ଦେଇଥା'ନ୍ତି । ଦକ୍ଷିଣ ଭାରତରେ ହୟଗ୍ରୀବ ଜୟନ୍ତୀ, ଉତ୍ତରଭାରତରେ ଶକୁନ–ମହୋତ୍ସବ ଓ ପଶ୍ଚିମ ଭାରତ ବିଶେଷ କରି ମହାରାଷ୍ଟ୍ର ଗୁଜୁରାଟ ଓ ଗୋଆରେ ଏହା ନାରିୟଲ ପୂର୍ଣ୍ଣିମା ରୂପରେ ପାଳିତ ହୁଏ । ନାରିୟଲ ଅର୍ଥାତ୍ ନଡ଼ିଆ ସମୁଦ୍ରର ଦେବତା ବରୁଣଙ୍କୁ ଶାନ୍ତ କରିବା ଉପଲକ୍ଷେ ଅର୍ପଣ କରାଯାଏ । 'ସାଗରେ ସର୍ବତୀଥାନି' ବୋଲି ଋଷିମାନେ କହି ଅଛନ୍ତି । ଅର୍ଥାତ୍ ନଦୀ–ସାଗରର ସଂଗମସ୍ଥଳ ଓ ତା' ଠାରୁ ସମୁଦ୍ର ଅଧିକ ପବିତ୍ର ହୋଇଥାଏ । ଏହିଦିନ ଅର୍ପିତ ନାରିୟଲ ଶୁଭସୂଚକ ଓ ସୃଜନଶକ୍ତିର ପ୍ରତୀକ ମନେ କରାଯାଇଥାଏ । ସମସ୍ତ ନଦୀ ସାଗରରେ ମିଶିଲେ ମଧ୍ୟ ଅଚଳ ସାଗର ନିଜ ପ୍ରତିଷ୍ଠାରୁ ବିଚଳିତ ହୁଏ ନାହିଁ । ସ୍ଥିତପ୍ରଜ୍ଞ ପରି ସବୁ କାମନା ନିଜ ଭିତରେ ପ୍ରବେଶ କଲେ ମଧ୍ୟ ନିଜର ଶାନ୍ତିକୁ ବଜାୟ ରଖେ । ଯେପରିକି ସକଳ ସମ୍ପତ୍ତି ମିଳିଲେ ମଧ୍ୟ ସାଗର ଉନ୍ମତ୍ତ ହୁଏ ନାହିଁ । ଏହିପରି ବ୍ୟବସାୟୀ ନିଜର ସମ୍ପତ୍ତି ବଢିଲେ ମଧ୍ୟ ଉନ୍ମତ୍ତ ହେବା ଉଚିତ ନୁହେଁ । ସାଗର ପରି ନମ୍ର ରହିବା ଚାହି । ନିଜର ଧନଦୌଲତ ଅନ୍ୟମାନଙ୍କୁ ପ୍ରଦର୍ଶନ ନକରି ନିଜସମ୍ପତ୍ତିକୁ ପ୍ରଭୁଙ୍କୁ ଅର୍ପଣ କରିବା ଆବଶ୍ୟକ । କାରଣ ଏହିଦିନଠାରୁ ମାଛମରା ଋତୁ ଆରମ୍ଭ ହୋଇଥାଏ । ଯେଉଁମାନେ ମତ୍ସ୍ୟ ଧରି କୁଟୁମ୍ବ ପୋଷନ୍ତି, ସେମାନେ ବରୁଣଙ୍କ କୃପାରୁ ଅଧିକ ମତ୍ସ୍ୟ ଅମଳ କରିବା ଆଶାରେ ଏପରି କରିଥା'ନ୍ତି । ଏହା ହେଉଛି ସେମାନଙ୍କର ଲୋକପ୍ରଥା । ଅନ୍ୟ ବ୍ୟବସାୟୀମାନେ ସମୁଦ୍ରରେ ଜାହାଜ ଦ୍ୱାରା ମାଲ୍ ନେବା ଆଣିବା କରିଥା'ନ୍ତି । କାକରି ପୂର୍ଣ୍ଣିମା ମଧ୍ୟ ଭାରତର ମଧ୍ୟପ୍ରଦେଶ, ଝାଡ଼ଖଣ୍ଡ, ବିହାର ଓ ଛତିଶଗଡ଼ରେ ଶ୍ରାବଣ ପୂର୍ଣ୍ଣିମାକୁ କାଜରିପୂର୍ଣ୍ଣିମା ବୋଲି କୁହାଯାଏ । ଏହି ଦିନଟି କୃଷକମାନଙ୍କ ପାଇଁ ବିଶେଷ ମହତ୍ତ୍ୱପୂର୍ଣ୍ଣ । ଶ୍ରାବଣ ଅମାବାସ୍ୟାର ନ'ଦିନ ପରେ ଏପରି ପର୍ବର ଆରମ୍ଭ ହୋଇ ପୂର୍ଣ୍ଣିମା ଯାଏଁ ଚାଲେ । ଏହି ଦିବସରେ ମା' ଭଗବତୀଙ୍କ ନିକଟରେ ଗହମ ସହ ବାର୍ଲି ସମର୍ପଣ କରାଯାଏ ।

### ପବିତ୍ରୋପନା

ଗୁଜୁରାଟର କେତେକ ଅଞ୍ଚଳରେ ପବିତ୍ରୋପନା ପର୍ବ ଅବସରରେ ଭଗବାନ୍ ଶିବଙ୍କୁ ପୂଜା କରାଯାଇଥାଏ । ତାଙ୍କୁ ଡାଲ ସମର୍ପଣ କରି ପାପମୋଚନ ପାଇଁ ସ୍ମରଣ କରାଯାଏ । ଏହିଦିନ ସମସ୍ତେ ପଣା ସେବନ କରିଥା'ନ୍ତି । ଘିଅ, ମହୁ ଓ କ୍ଷୀର ଆଦି ପଞ୍ଚଗବ୍ୟରେ ଭିଜାଇ ଶିବଲିଙ୍ଗରେ ସୂତ୍ରବନ୍ଧନ କରାଯାଇଥାଏ ।

### ଆଧ୍ୟାତ୍ମିକ ବିକାଶ ପାଇଁ ଶ୍ରାବଣୀ ଉପାକର୍ମ

ଭାରତୀୟ ସଂସ୍କୃତିର ଏକ ବୈଶିଷ୍ଟ୍ୟ ହେଉଛି ପର୍ବପର୍ବାଣିର ପୃଷ୍ଠଭୂମିରେ ଆଧ୍ୟାତ୍ମିକ ଅନ୍ୱେଷଣ କରିବା ।

ଶ୍ରାବଣୀ ପର୍ବ ପାଳନରେ ଆତ୍ମିକ ଚେତନାର ଉତ୍ତରଣ ଘଟିଥାଏ । ଶ୍ରବଣରୁ ଶ୍ରାବଣୀ ଶବ୍ଦ ନିଷ୍ପନ୍ନ । ନବଧାଭକ୍ତିର ପ୍ରଥମ ସୋପାନ ଶ୍ରବଣ । ଆତ୍ମିକ ବିକାଶର ପ୍ରଥମ ପାହାଚ ଆତ୍ମା ବିଷୟରେ ଶୁଣିବା । ଶାସ୍ତ୍ରବାକ୍ୟ ଓ ଗୁରୁବାକ୍ୟ ଶୁଣି ମନନ କଲାପରେ ତାକୁ ପ୍ରୟୋଗ କରାଯାଇଥାଏ । ବୈଦିକ ଜ୍ଞାନକୁ ଶୁଣିବା ହେଉଛି ଶ୍ରାବଣୀ ଉପାକର୍ମ । ମଣିଷ ଜୀବନରେ ଶିଖିଲେ ତା'ର କ୍ରିୟାନ୍ୱୟନ କରେ । କାରଣ ମଣିଷ ହେଉଛି ଏକ ଶୈକ୍ଷିକ ଜୀବ । ଶୃଙ୍ଗାର ରସର ପ୍ରାବଲ୍ୟ ହେତୁ ଶ୍ରାବଣ ମାସରେ ଆଧ୍ୟାତ୍ମ୍ୟ ବିଦ୍ୟାର ବିଶେଷଜ୍ଞମାନେ ନାନା ପ୍ରକାର ଧର୍ମାଚରଣ ଓ ତପଶ୍ଚର୍ଯ୍ୟାର ବିଧାନ ନିର୍ଦ୍ଦେଶ ଦେଇଛନ୍ତି । ଧର୍ମର ଅର୍ଥ ହେଲା ଯେ ଆମ୍ଭେ ଏଭଳି କାର୍ଯ୍ୟ କରିବା ଉଚିତ୍, ଯାହା ମାଧ୍ୟମରେ ଆମର ମନକୁ ଶାନ୍ତି ମିଳିବ ଓ ମୋକ୍ଷର ଦ୍ୱାର ଖୋଲିଯିବ । ଏହି ମର୍ମରେ ଶୁଭ ସଂସ୍କାରର ଚାରାରୋପଣ କରାଯାଇଥାଏ । ଏହା ହେଉଛି ଆତ୍ମ ଜାଗୃତିର ମାସ । ଲୋକେ ସଂସ୍କାରିତ ହେବା ସଙ୍ଗେ ସଙ୍ଗେ ସଂକଳ୍ପବାନ୍ ମଧ୍ୟ ହୋଇଥା'ନ୍ତି । ଅମରନାଥ ଯାତ୍ରା ଏହି ପର୍ବ ସହିତ ଯୋଡ଼ି ହୋଇ ରହିଛି । ବ୍ରାହ୍ମଣମାନଙ୍କ ଯଜ୍ଞୋପବୀତ ପରିବର୍ତ୍ତନ, ଭାଇଭଉଣୀଙ୍କ ସ୍ନେହପ୍ରେମର ପର୍ବ ତଥା ବ୍ୟବସାୟୀମାନଙ୍କ ସମୁଦ୍ରପୂଜନ– ଏହି ତିନି ଉତ୍ସବର ରକ୍ଷାବନ୍ଧନ ହେଉଛି ତ୍ରିବେଣୀ ସଂଗମ । ଏହା ବ୍ୟତୀତ ରକ୍ଷାବନ୍ଧନ, ଗହ୍ମାପୂର୍ଣ୍ଣିମା ଓ ଝୁଲଣଯାତ୍ରା– ଏହି ତିନୋଟି ପର୍ବ ଗୋଟିଏ ତିଥିରେ ପାଳିତ ହେଉଛି ।

ମଣିଷର ଉତ୍ସବ ପ୍ରେମ ତାକୁ ଜୀବନର ଉଚ୍ଚତର ଆଭିମୁଖ୍ୟ ଆଡ଼କୁ ଆକୃଷ୍ଟ କରେ । ପାରସ୍ପରିକତାର ମନ୍ତ୍ର ବଳରେ ଜୀବାତ୍ମାକୁ ବିଶ୍ୱାତ୍ମା ହେବାର ବାଟ ଫିଟାଏ । ମାନବକୁ ପରମ୍ପରା ପ୍ରତି ଶ୍ରଦ୍ଧାଶୀଳ କରେ । ଶାନ୍ତି, ପ୍ରୀତି ଓ ସ୍ନେହବନ୍ଧନର ପ୍ରତୀକ ରାକ୍ଷୀ । ଏହା ନରୀ ଜାତି ପ୍ରତି ସମ୍ମାନ ଓ ଦାୟିତ୍ୱବୋଧର ଜାଗରଣ ସଞ୍ଚାର କରିଥାଏ । ସମ୍ପର୍କ, ସହୃଦୟତା ଓ ସଂହତିର ଭାବ ଉଦ୍ରେକ କରି ସାମାଜିକ ଜୀବନକୁ ସମୃଦ୍ଧ କରି ଗଢି ତୋଳେ । ପରିବାର ସୀମାକୁ ଡ଼େଇଁ ଦେଶର ସୀମାକୁ ଯାଇ ସୈନିକମାନଙ୍କ ହାତରେ ରାକ୍ଷୀ ବାନ୍ଧି ପାରିଲେ ସେମାନେ ଦେଶବାସୀଙ୍କ ଭ୍ରାତୃପ୍ରେମରେ ଉଦ୍‌ବୁଦ୍ଧ ହୁଅନ୍ତେ । ସାଧାରଣ ଜନତାଙ୍କ ହାତରେ ରାକ୍ଷୀ ବାନ୍ଧିଲେ ପରିବେଶରେ ସନ୍ତୁଳନ ଓ ରାଷ୍ଟ୍ରୀଜୀବନରେ ସମନ୍ୱୟ ଆସି ଜାତୀୟ ଜୀବନକୁ ସୁସଂହତ କରିପାରନ୍ତା । ଆଜିକାଲି ରାକ୍ଷୀ ଦେବାନେବାର ଏକ ଔପଚାରିକ ପର୍ବରେ ପରିଣତ ହୋଇଗଲାଣି । ରକ୍ଷା ବନ୍ଧନର ମୂଳ ଭାବନା ଲୁପ୍ତ ହୋଇଗଲାଣି । ଅତଏବ ଆମେ ସମସ୍ତେ ମିଳିମିଶି ଭାଇଭଉଣୀଙ୍କ ମଧ୍ୟରେ ସେହି ସ୍ନେହରକ୍ଷା ପର୍ବର ମହତ୍ତ୍ୱକୁ ବୁଝିବା ଦରକାର । ଯେପରିକି କୌଣସି ପରିସ୍ଥିତିରେ ମଧ୍ୟ ତାହା ଊଣା ନହୁଏ । ଜଣେ ଅନ୍ୟ ଜଣକର ସୁଖଦୁଃଖରେ ଭାଗୀଦାର ହୋଇ ରୁହନ୍ତୁ । ଏହି ପର୍ବରେ ଭଉଣୀ ଭାଇର କଲ୍ୟାଣ ପ୍ରାର୍ଥନା କରୁ ଓ ଭାଇ ଭଉଣୀର ସୁରକ୍ଷା ପାଇଁ ଦୃଢ ସଂକଳ୍ପ କରୁ । ଆମେ ସମସ୍ତେ ସମାଜର ସୁଧାର ପାଇଁ ଏହି ପ୍ରତିଜ୍ଞା କରିବା କଥା ଯେ ରାଷ୍ଟ୍ରଧର୍ମ ରକ୍ଷା ନିମନ୍ତେ ଆମେ ସବୁ ତତ୍ପର ରହିବା ଓ ପରସ୍ପର ପ୍ରେମପୂର୍ବକ ରହି ଆଦର୍ଶ ନାଗରିକ ହେବା । ଆଉ ଗୋଟିଏ କଥା ମନେ ରଖିବାକୁ ହେବ ଯେ ରାକ୍ଷୀରେ ଆଜିକାଲି ଓଁ, ସ୍ୱସ୍ତିକ ଆଦି ଦେବଦେବୀଙ୍କ ଛବି ରହୁଥିବାରୁ ସେଗୁଡ଼ିକର ଉପଯୋଗ ସରିଲା ପରେ ତାହା ଏଣେତେଣେ ନପକାଇ ଧର୍ମର ପ୍ରତୀକକୁ ଅନାଦର ନକରି ଜଳରେ ବିସର୍ଜନ କରିବା ଶୋଭନୀୟ ଅଟେ ।

ପ୍ଲଟ୍ ନଂ – ୫୫୬/୩୭୬୧
ତୁଳସୀନଗର, କାନନ ବିହାର–୨, ପଟିଆ
ଭୁବନେଶ୍ୱର–୭୫୧୦୩୧



# ଓଡ଼ିଶାରେ ଗଡ଼ଜାତ ରାଜ୍ୟ ସମୂହର ମିଶ୍ରଣରେ ଡକ୍ଟର ହରେକୃଷ୍ଣ ମହତାବଙ୍କର ଭୂମିକା

**ହୃଦାନନ୍ଦ ବେହେରା**

ଦ୍ୱିତୀୟ ବିଶ୍ୱଯୁଦ୍ଧର ପରିସମାପ୍ତି ପରେ ଓଡ଼ିଶାରେ ପ୍ରାଦେଶିକ ବିଧାନସଭା ନିର୍ବାଚନ ହୋଇଥିଲା ଓ ଏଥିରେ କଂଗ୍ରେସ ସଂଖ୍ୟା ଗରିଷ୍ଠତା ହାସଲ କରିଥିଲା । ପ୍ରାଦେଶିକ ବିଧାନସଭାରେ ଡକ୍ଟର ହରେକୃଷ୍ଣ ମହତାବ ପ୍ରଧାନମନ୍ତ୍ରୀ ରୂପେ ମନୋନୀତ (ତତ୍‌କାଳୀନ ପ୍ରାଦେଶିକ ମୁଖ୍ୟଙ୍କୁ ପ୍ରଧାନମନ୍ତ୍ରୀ କୁହାଯାଉଥିଲା) ହେବାପରେ ଓଡ଼ିଶାର ଦେଶୀୟ ରାଜ୍ୟମାନଙ୍କର ଓଡ଼ିଶା ସହିତ ମିଶ୍ରଣ ନିମନ୍ତେ ଉଦ୍ୟମ ଆରମ୍ଭ କରିଥିଲେ ।



ଇଂରେଜମାନଙ୍କ ଶାସନ ସମୟରେ ଗଡଜାତ ରାଜାମାନେ ଇଂରେଜମାନଙ୍କଠାରୁ ଅହେତୁକ ଅନୁକମ୍ପା ପାଉଥିଲେ । ଫଳରେ ସେମାନେ ପ୍ରଜାପୀଡକ ହୋଇ ଉଠିଥିଲେ । ଏଣୁ ପ୍ରଜାମାନେ ରାଜାମାନଙ୍କ ଶାସନରୁ ମୁକ୍ତ ହେବା ପାଇଁ ଚାହୁଁଥିଲେ । ସେମାନଙ୍କର ପୁଞ୍ଜିଭୂତ ଅସନ୍ତୋଷ ଯୋଗୁଁ ଦେଶୀୟ ରାଜ୍ୟମାନଙ୍କରେ ଆନ୍ଦୋଳନ ମୁଣ୍ଡ ଟେକୁଥିଲା । ପ୍ରଜାମାନଙ୍କର ଆନ୍ଦୋଳନକୁ ଅତ୍ୟନ୍ତ ନିଷ୍ଠୁର ଭାବରେ ଦମନ କରିବାକୁ ରାଜାମାନେ ଚେଷ୍ଟା କରୁଥିଲେ । ଏହି ଗଡ଼ଜାତ ରାଜ୍ୟଗୁଡ଼ିକର ନିଜର ସାର୍ବଭୌମ କ୍ଷମତା ରହିଥିଲା । ଫଳରେ ଗଡ଼ଜାତ ରାଜାମାନେ ନିଜର ମନମୁତାବକ ଶାସନ କରିବା ସଙ୍ଗେ ସଙ୍ଗେ ଓଡ଼ିଶା ସହିତ ମିଶି ନିଜର କ୍ଷମତା ହସ୍ତାନ୍ତର କରିବାକୁ ପ୍ରତ୍ୟକ୍ଷ ଭାବେ ଚାହୁଁନଥିଲେ ।

ହରେକୃଷ୍ଣ ମହତାବ ପ୍ରଧାନମନ୍ତ୍ରୀ ହେବାପରେ ଗଡ଼ଜାତ ରାଜ୍ୟ ସମୂହର ଓଡ଼ିଶା ସହିତ ମିଶ୍ରଣ ନିମନ୍ତେ ଭାରତ ଭ୍ରମଣରେ ଆସିଥିବା କ୍ୟାବିନେଟ୍ ମିଶନ ନିକଟରେ ପ୍ରସ୍ତାବ ଉପସ୍ଥାପନ କରିଥିଲେ । ଓଡ଼ିଶାର ଉନ୍ନତିକଳ୍ପେ ଗଡ଼ଜାତ ରାଜ୍ୟଗୁଡ଼ିକ ଓଡ଼ିଶା ସହିତ ମିଶିବା ଅପରିହାର୍ଯ୍ୟ ବୋଲି ସେ ଅନୁଭବ କରିଥିଲେ । ଦେଶ ସ୍ୱାଧୀନ ହେବାପରେ ପ୍ରଥମେ ନୀଳଗିରି ରାଜ୍ୟରେ ପ୍ରଜା ଆନ୍ଦୋଳନ ଦେଖାଦେଇଥିଲା । ତେଣୁ ମହତାବଙ୍କ ଚେଷ୍ଟା ଫଳରେ ନୀଳଗିରି ଓଡ଼ିଶା ସହିତ ମିଶିଯାଇଥିଲା । ନୀଳଗିରିର ଓଡ଼ିଶା ସହିତ ମିଶ୍ରଣ ମହତାବଙ୍କ ମନରେ ଉତ୍ସାହ ଭରିଦେବା ସଙ୍ଗେ ସଙ୍ଗେ ଅନ୍ୟ ଗଡ଼ଜାତ ରାଜ୍ୟଗୁଡ଼ିକର ମିଶ୍ରଣର ବାଟ ଫିଟାଇଥିଲା ।

ଅନ୍ୟ ଦେଶୀୟ ରାଜ୍ୟଗୁଡ଼ିକୁ ଓଡ଼ିଶା ସହିତ ମିଶ୍ରଣ ନିମନ୍ତେ ଶ୍ରୀଯୁକ୍ତ ମହତାବ ଆପ୍ରାଣ ଚେଷ୍ଟା କରିଥିଲେ ଏବଂ ଏହି କାର୍ଯ୍ୟରେ ତତ୍କାଳୀନ ଗୃହମନ୍ତ୍ରୀ ଶ୍ରୀଯୁକ୍ତ ବଲ୍ଲଭ ଭାଇ ପଟେଲଙ୍କ ପୂର୍ଣ୍ଣ ସମର୍ଥନ ଥିଲା । ବଲ୍ଲଭ ଭାଇଙ୍କ ସମର୍ଥନ ଥିବାରୁ ଶ୍ରୀଯୁକ୍ତ ମହତାବ ବହୁତ ଉତ୍ସାହିତ ହୋଇ ମିଶ୍ରଣ କାର୍ଯ୍ୟକୁ ତ୍ୱରାନ୍ୱିତ କରିବାକୁ ଦୃଢ଼ ପରିକର ହୋଇଥିଲେ ଏବଂ ଏଥିନିମନ୍ତେ ସମ୍ବଲପୁରଠାରେ ଗଡ଼ଜାତ ରାଜାମାନଙ୍କୁ ନିମନ୍ତ୍ରଣ କରି ଏକ ସଭାର ଆୟୋଜନ କରିଥିଲେ । ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ସଭା ମାଧ୍ୟମରେ ସେହିଦିନ ରାଜାମାନଙ୍କ ସମ୍ମୁଖରେ ଉପସ୍ଥାପନ

କରିଥିଲେ । ମହତାବଙ୍କର ସେଦିନର ସେହି ବକ୍ତବ୍ୟକୁ ରାଜାମାନେ ଗ୍ରହଣ କରିନଥିଲେ । ସେମାନେ ଭାବୁଥିଲେ ଯଦି ସେମାନଙ୍କର ରାଜ୍ୟ ଓଡ଼ିଶା ସହିତ ମିଶିଯିବ ସେମାନେ ପାଉଥିବା ଓ ଉପଭୋଗ କରୁଥିବା ରାଜକୀୟ ସୁବିଧା ସୁଯୋଗରୁ ବଞ୍ଚିତ ହେବେ । ସେହିଦିନ ମହତାବ ଗଡ଼ଜାତ ରାଜାମାନଙ୍କ ସମ୍ମୁଖରେ ଯେଉଁ ପ୍ରସ୍ତାବ ଉପସ୍ଥାପନ କରିଥିଲେ, ତାହା ଏକ ଗଠନମୂଳକ ପ୍ରସ୍ତାବ ଥିଲା, କିନ୍ତୁ ଗଡ଼ଜାତ ରାଜାମାନେ ହରେକୃଷ୍ଣ ମହତାବଙ୍କ ପ୍ରସ୍ତାବକୁ ଗ୍ରହଣ କରିନଥିଲେ । ଶ୍ରୀଯୁକ୍ତ ମହତାବ ତାଙ୍କର ନିଜର ପ୍ରସ୍ତାବକୁ ମଧ୍ୟ ତତ୍କାଳୀନ ଗୃହମନ୍ତ୍ରୀ ଶ୍ରୀଯୁକ୍ତ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କ ନିକଟକୁ ଏକ ଦାବିପତ୍ର ରୂପେ ପ୍ରେରଣ କରିଥିଲେ । ଓଡ଼ିଶା ପ୍ରଦେଶର ଉନ୍ନତି ନିମନ୍ତେ ଗଡ଼ଜାତ ରାଜ୍ୟଗୁଡ଼ିକର ଓଡ଼ିଶା ସହିତ ମିଶ୍ରଣ ନିହାତି ଅପରିହାର୍ଯ୍ୟ ବୋଲି ଉକ୍ତ ଦାବିପତ୍ରରେ ତତ୍କାଳୀନ ଗୃହମନ୍ତ୍ରୀ ଶ୍ରୀଯୁକ୍ତ ପଟେଲଙ୍କୁ ବୁଝାଇ ଦେଇଥିଲେ ।

ଦେଶ ସ୍ୱାଧୀନତାର ଠିକ୍ ଅବ୍ୟବହିତ ପରେ ନୀଳଗିରି ରାଜ୍ୟରେ ଦେଖା ଦେଇଥିଲା ପ୍ରଜା ଅସନ୍ତୋଷ । ନୀଳଗିରିର ରାଜା ପ୍ରଜାମାନଙ୍କୁ ଦମନ କରିବା ନିମନ୍ତେ ଆଦିବାସୀମାନଙ୍କୁ ନିଜ ଅକ୍ତିଆରକୁ ନେଇଯାଇଥିଲେ । ଆଦିବାସୀମାନଙ୍କ ଦ୍ୱାରା ଅଣ ଆଦିବାସୀମାନଙ୍କୁ ଦମନ କରିବାକୁ ସେ ଚେଷ୍ଟା କରିଥିଲେ । ଧନୁତୀର ଓ ବର୍ଚ୍ଛା ଦ୍ୱାରା ଅଣ ଆଦିବାସୀମାନଙ୍କର କ୍ଷତି ଘଟାଇବା ପାଇଁ ଆଦିବାସୀମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । ନୀଳଗିରି ରାଜାଙ୍କର ଏହି ସ୍ୱେଚ୍ଛାଚାରିତାକୁ ପ୍ରଜାମାନେ ଓ ନିଜେ ହରେକୃଷ୍ଣ ମହତାବ ଜାଣିପାରିଥିଲେ । ରାଜାଙ୍କ ପ୍ରତି ସେ ଅତ୍ୟନ୍ତ କ୍ଷୁବ୍ଧ ହୋଇ ଦିଲ୍ଲୀ ଯାଇ ଗୃହମନ୍ତ୍ରୀ ବଲ୍ଲଭ ଭାଇ ପଟେଲଙ୍କୁ ସମସ୍ତ ବିଷୟ ବିସ୍ତାର ଭାବେ ବୁଝାଇଥିଲେ । ବଲ୍ଲଭ ଭାଇ ପଟେଲ ନିଃସଙ୍କୋଚରେ ନୀଳଗିରି ରାଜ୍ୟକୁ ଓଡ଼ିଶା ସହିତ ମିଶାଇବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ଶ୍ରୀଯୁକ୍ତ ମହତାବ ଦିଲ୍ଲୀରୁ ଫେରି ତତ୍କାଳୀନ ବାଲେଶ୍ୱର ମାଜିଷ୍ଟ୍ରେଟ ଏବଂ ରାଜସ୍ୱ ମନ୍ତ୍ରୀ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀଙ୍କୁ ନୀଳଗିରି ରାଜ୍ୟକୁ ଓଡ଼ିଶା ସହିତ ମିଶ୍ରଣ କରିବା ପାଇଁ ପୋଲିସ୍ ବାହିନୀ ସହିତ ପ୍ରେରଣ କରିଥିଲେ । ମହତାବଙ୍କର ଏତାଦୃଶ କାର୍ଯ୍ୟରେ ନୀଳଗିରିର ଶାସକ ଆଶ୍ଚର୍ଯ୍ୟ ସ୍ତମ୍ଭିତ ହୋଇଯାଇଥିଲେ । କିଛି ଉପାୟ ନପାଇ ସେହି ଦିନ ରାଜା ନିଜ ଶାସନ ଭାର ରାଜସ୍ୱ ମନ୍ତ୍ରୀ ଶ୍ରୀଯୁକ୍ତ ଚୌଧୁରୀଙ୍କ ନିକଟରେ ସମର୍ପଣ କରିଦେଲେ । ଏହାଥିଲା ଗଡ଼ଜାତ ରାଜ୍ୟ ମିଶ୍ରଣର ପ୍ରଥମ ସୋପାନ । ଏହା ପୂର୍ବରୁ ପାଟଣାର ରାଜା ରାଜେନ୍ଦ୍ର ନାରାୟଣ ସିଂ ଦେଓଙ୍କର ନେତୃତ୍ୱରେ ପୂର୍ବାଞ୍ଚଳ ଦେଶୀୟ ରାଜ୍ୟ ସଂଘ ଗଠିତ ହୋଇଥିଲା । ପ୍ରକୃତରେ କହିବାକୁ ଗଲେ ଏହି ରାଜ୍ୟ ସଂଘ ଗଡ଼ଜାତ ରାଜ୍ୟ ଓଡ଼ିଶା ସହିତ ମିଶ୍ରଣର ପ୍ରତିଦ୍ୱନ୍ଦ୍ୱୀ ଥିଲା । ଏହି ସଂଘର ଛୋଟ ଛୋଟ ଦେଶୀୟ ରାଜା ନିଜର ସ୍ୱାର୍ଥକୁ ସାକାର କରିବା ନିମନ୍ତେ ଓଡ଼ିଶା ସହିତ ମିଶିବାକୁ ଚାହୁଁନଥିଲେ ।

ନୀଳଗିରି ରାଜ୍ୟର ମିଶ୍ରଣ ପରେ ହରେକୃଷ୍ଣ ମହତାବ ଚୁପ୍ ହୋଇ ବସିନଥିଲେ । ଦିଲ୍ଲୀଠାରେ ଦେଶୀୟ ରାଜ୍ୟଗୁଡ଼ିକର ମିଶ୍ରଣ ନିମନ୍ତେ ଘରୋଇ ସଚିବ ଭି.ପି. ମେନନ୍‌ଙ୍କ କକ୍ଷରେ କେତେଜଣ ବିଶିଷ୍ଟ ବ୍ୟକ୍ତିଙ୍କୁ ନେଇ ଏକ ସମ୍ମିଳନୀ ଆୟୋଜିତ ହୋଇଥିଲା । ଶାସନଗତ ସୁପରିଚାଳନା ନିମନ୍ତେ ଓଡ଼ିଶାର ଦେଶୀୟ ରାଜ୍ୟଗୁଡ଼ିକ ଓଡ଼ିଶା ସହିତ ମିଶିବା ନିହାତି ଅପରିହାର୍ଯ୍ୟ ବୋଲି ସମସ୍ତେ ଅନୁଭବ କରିଥିଲେ । ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କର ମଧ୍ୟ ଏଥିରେ ସ୍ୱୀକୃତି ରହିଥିଲା । ପୂର୍ବାଞ୍ଚଳ ଦେଶୀୟ ରାଜ୍ୟ ସଂଘକୁ ଭାଙ୍ଗିଦେବା ପାଇଁ ସେ ମଧ୍ୟ ନିର୍ଦ୍ଦେଶ ଦେଇଥିଲେ । ଗୃହମନ୍ତ୍ରୀଙ୍କର ଉକ୍ତ ନିର୍ଦ୍ଦେଶ ଦେଶୀୟ ରାଜ୍ୟ ଓଡ଼ିଶା ସହିତ ମିଶ୍ରଣ ନିମନ୍ତେ ଶ୍ରୀ ମହତାବଙ୍କୁ ବହୁତ ଉତ୍ସାହିତ କରିଥିଲା । ଅନ୍ୟାନ୍ୟ ଗଡ଼ଜାତ ରାଜାମାନଙ୍କ ସହିତ ବିଚାର ବିମର୍ଶ କରିବା ନିମନ୍ତେ ହରେକୃଷ୍ଣ ମହତାବ କଟକଠାରେ ୧୯୪୭ ମସିହା ଡିସେମ୍ବର ୧୪ ତାରିଖ ଦିନ ଏକ ସମ୍ମିଳନୀର ଆୟୋଜନ କରିଥିଲେ । ଉକ୍ତ ସମ୍ମିଳନୀରେ ଯୋଗଦେବା ପାଇଁ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ମଧ୍ୟ ସ୍ୱତନ୍ତ୍ର ନିମନ୍ତ୍ରିତ ଅତିଥି ରୂପେ ଆସି ଓଡ଼ିଶାରେ ପହଞ୍ଚିଥିଲେ । ହରେକୃଷ୍ଣ ମହତାବଙ୍କ କାର୍ଯ୍ୟଶୈଳୀକୁ ଅନୁଧ୍ୟାନ କରି ବିଶେଷ କରି ଛୋଟ ଛୋଟ ଦେଶୀୟ ରାଜ୍ୟ ଭୟଭୀତ ହୋଇପଡିଲେ । ସର୍ଦ୍ଦାର ପଟେଲ ନିଜେ ଦେଶୀୟ ରାଜାମାନଙ୍କୁ ନିଜର ରାଜ୍ୟଗୁଡ଼ିକୁ ଓଡ଼ିଶା ପ୍ରଦେଶ ସହିତ ମିଶାଇଦେବା ପାଇଁ ମଧ୍ୟ ପରାମର୍ଶ ଦେଇଥିଲେ । ସେହି ସମୟରେ ଗଡ଼ଜାତ ରାଜ୍ୟଗୁଡ଼ିକୁ ତିନୋଟି ଶ୍ରେଣୀ ଯଥା– 'କ', 'ଖ' ଓ 'ଗ'ରେ ବିଭକ୍ତ କରାଯାଇଥିଲା । ବିଭିନ୍ନ ପର୍ଯ୍ୟାୟରେ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ଉପରୋକ୍ତ ରାଜ୍ୟର ପ୍ରତିନିଧିଙ୍କ ସହିତ ମିଶି

ସେମାନଙ୍କୁ ଦର୍ଶାଇ ଦେଇଥିଲେ ଯେ ଶାସନ ଓ ଆଇନଗତ ସୁବିଧା ଦୃଷ୍ଟିରୁ ସ୍ୱାଧୀନ ଭାରତ ଭୂଖଣ୍ଡରେ ସମସ୍ତ ଦେଶୀୟ ରାଜ୍ୟ ରହିବା ଅନିବାର୍ଯ୍ୟ । ପଟେଲଙ୍କର ଉକ୍ତ ପ୍ରସ୍ତାବକୁ ନିଜକୁ ଶକ୍ତିଶାଳୀ ଓ ବୃହତ୍ ମଣୁଥିବା 'କ' ଶ୍ରେଣୀୟ ରାଜ୍ୟ ଗ୍ରହଣ କରିବାକୁ ଚାହୁଁନଥିଲେ । ସେତେବେଳର ମୟୂରଭଞ୍ଜ ରାଜା ନିଜକୁ ପ୍ରଜାବତ୍ସଳ ରାଜା ରୂପେ ବର୍ଣ୍ଣନା କରିଥିଲେ । ପର୍ଯ୍ୟାୟକ୍ରମେ ବିଭିନ୍ନ ଛୋଟ ବଡ ଗଡ଼ଜାତ ରାଜ୍ୟ ଇଚ୍ଛା ହେଉ ବା ଅନିଚ୍ଛା ସତ୍ତ୍ୱେ ଗଡ଼ଜାତ ରାଜ୍ୟ ମିଶ୍ରଣ ଚୁକ୍ତିରେ ଦସ୍ତଖତ କରିବାକୁ ବାଧ୍ୟ ହୋଇଥିଲେ । ତତ୍କାଳୀନ ଘରୋଇ ସଚିବ ଭି.ପି. ମେନନ୍ ସମସ୍ତ ରାଜାଙ୍କଠାରୁ ଦସ୍ତଖତ କରାଇ ନେଇଥିଲେ । ଗଡ଼ଜାତ ରାଜ୍ୟ ମିଶ୍ରଣ ଫଳରେ ଓଡ଼ିଶାର ପରିସୀମାର ଯଥେଷ୍ଟ ବୃଦ୍ଧି ଘଟିଥିଲା । ପ୍ରକୃତରେ ଡକ୍ଟର ହରେକୃଷ୍ଣ ମହତାବଙ୍କ ପ୍ରଗାଢ଼ ଚେଷ୍ଟା, ଶ୍ରୀଯୁକ୍ତ ବଲ୍ଲଭଭାଇ ପଟେଲ ଏବଂ ଭି.ପି. ମେନନ୍‌ଙ୍କ ଉଦ୍ୟମ ଯୋଗୁଁ ଓଡ଼ିଶାର ୨୪ ଗୋଟି ଗଡ଼ଜାତ ରାଜ୍ୟ ଓଡ଼ିଶାର ଭୌଗୋଳିକ ସୀମା ମଧ୍ୟରେ ଅନ୍ତର୍ଭୁକ୍ତ ହୋଇଥିଲା । Extra Provincial Jurisdiction Act ଅନୁସାରେ ଏହି ଗଡ଼ଜାତ ରାଜ୍ୟଗୁଡିକର ଶାସନଭାର ଓଡ଼ିଶା ସରକାର ଗ୍ରହଣ କରିଥିଲେ । କିନ୍ତୁ ମୟୂରଭଞ୍ଜ ୧୬ ଅକ୍ଟୋବର ୧୯୪୮ରେ ଭାରତ ସହିତ ମିଶିଥିଲା ଏବଂ କେନ୍ଦ୍ର ସରକାର ପରେ ଉକ୍ତ ରାଜ୍ୟକୁ ଓଡ଼ିଶାକୁ ହସ୍ତାନ୍ତର କରିଥିଲେ ।

ଏହିପରି ଭାବେ ଗଡ଼ଜାତ ରାଜ୍ୟଗୁଡିକ ଓଡ଼ିଶା ସହ ମିଶିବା ସତ୍ତ୍ୱେ ମଧ୍ୟ ଦୁଇଟି ସୀମାନ୍ତ ରାଜ୍ୟ ଷଢ଼େଇକଳା ଓ ଖରସୁଆଁ ଓଡ଼ିଶା ସହିତ ମିଶି ପାରିନଥିଲା । ଏହି ରାଜ୍ୟ ଦ୍ୱୟକୁ ବିହାର ସହିତ ମିଶାଇ ଦିଆଗଲା । ଉକ୍ତ ରାଜ୍ୟ ଦ୍ୱୟରେ ବସବାସ କରୁଥିବା ଓଡ଼ିଆ ଭାଷାଭାଷୀଙ୍କୁ ବହୁତ ଆଘାତ ଲାଗିଥିଲା । ପରିଶେଷରେ ଶାଣିତ ଆଇନ ମାଧ୍ୟମରେ ଜନ ଅସନ୍ତୋଷକୁ ଚିରଦିନ ପାଇଁ ଦବେଇ ଦିଆଗଲା । ଗଡ଼ଜାତ ରାଜ୍ୟଗୁଡିକ ମିଶ୍ରଣ ଯୋଗୁଁ ଗଡ଼ଜାତ ଅଞ୍ଚଳର ଲୋକମାନେ ରାଜତନ୍ତ୍ରରୁ ମୁକ୍ତ ହୋଇ ସ୍ୱାଧୀନତାର ସ୍ୱାଦ ଚାଖିଲେ । ଓଡ଼ିଶା ସହିତ ଗଡ଼ଜାତ ରାଜ୍ୟମାନଙ୍କର ମିଶ୍ରଣ ହରେକୃଷ୍ଣ ମହତାବଙ୍କର ଏକ ସମୟୋପଯୋଗୀ ପଦକ୍ଷେପ ଥିଲା କହିଲେ ଅତ୍ୟୁକ୍ତି ହେବନାହିଁ ।

ସୂର୍ଯ୍ୟ ନିବାସ
ସା-ସୁଭଦ୍ରାପୁର, ପୋ- ଉତ୍ତମାପୁର, କଟକ-୧୧

# ମୁକ୍ତିପଥ

**କୃଷ୍ଣଚନ୍ଦ୍ର ରଥ**

ତୁମ ଚକାଆଖି ଥରେ ଦେଖିଦେଲେ
ଦୁଃଖଯାଏ ଅପସରି
ସେଥିପାଇଁ ପ୍ରଭୁ ବହୁ ଦୂରୁ ଧାଇଁ
ପ୍ରତିବର୍ଷ ଆସେ ପୁରୀ ।
ହସ ହସ ମୁଖ ଅପଲକ ନେତ୍ର
ତୁମର ସେ ପଦ୍ମମୁଖ
ଦୁଃଖୀଙ୍କ ଆରତ ଶୁଣୁ ଶୁଣୁ ପ୍ରଭୁ !
କାହିଁକି ହୁଅ ବିମୁଖ ?
ମୋ ଆଖି ଲୁହରେ ଲେଖିଛି କବିତା
ଆଶା ନିରାଶାର କଥା
ଗରୁଡ଼ ପଛରୁ ଶୁଣାଇବି ଥରେ
ମଣିଷ ମନର ବ୍ୟଥା ।

ପାପୀ ବୋଲି ମତେ ଆଡ଼େଇ ନଦେଇ
ଦେଖାଇବ ମୁକ୍ତି ପଥ
ତୁମରି ଭକ୍ତିରେ ପୂରି ଉଠୁ ମୋର
ଜୀବନର ପରମାର୍ଥ ।
ସଂସାର ଝଡ଼ରୁ ଉଦ୍ଧାରିବ ପ୍ରଭୁ
ଏତିକି କରେ ପ୍ରାର୍ଥନା
ଚକାନୟନକୁ ଭଜି ଭଜି ମତେ
ମିଳୁଥାଉ ଦାନାକନା ।

ସାଧାରଣ ସମ୍ପାଦକ
ଶ୍ରୀକ୍ଷେତ୍ର ଲେଖକ ସାମ୍ମୁଖ୍ୟ
ଖୁଣ୍ଟିଆ ସାହି, ପୁରୀ-୧

# ସ୍ୱୀକୃତି, ସମ୍ମାନ ଓ ସ୍ୱାଧୀନତା ପଥେ ନାରୀ

ଅମିନୀଲୁ ରାୟ

ଯେଉଁଠି ନାରୀକୁ ପୂଜା କରାଯାଏ, ସେଠାରେ ଦେବତାମାନେ ବିହାର କରିଥାନ୍ତି । ଏହାକୁ ପ୍ରାଚୀନ ଭାରତର ଆଦର୍ଶ ବା ବାଣୀ କହିଲେ ଭୁଲ ହେବ ନାହିଁ । ସେତେବେଳେ ଏହା କେବଳ ସ୍ଲୋଗାନ୍ ବା ଧ୍ୱନି ନଥିଲା, ଏହା ଥିଲା ଏକ ସାମାଜିକ ପ୍ରତ୍ୟୟ । କେଉଁ ପ୍ରାଚୀନ କାଳରୁ ମଧ୍ୟ ସାମାଜିକ ଜୀବନରେ ନାରୀର ମର୍ଯ୍ୟାଦା ସମ୍ପର୍କରେ ଭୂୟଂସୀ ପ୍ରଶଂସା କରାଯାଇଛି । ସେସମୟରେ ନାରୀ ପୁରୁଷର କେବଳ ଲୀଳାସଙ୍ଗିନୀ ନଥିଲା, ସାଂସାରିକ ଜୀବନଯାତ୍ରାର ଯଥାର୍ଥରେ ଥିଲା ଅର୍ଦ୍ଧାଙ୍ଗିନୀ । ବିଭିନ୍ନ ଧର୍ମାନୁଷ୍ଠାନରୁ ଆରମ୍ଭ କରି ଶାସନ କାର୍ଯ୍ୟ ପରିଚାଳନା ପର୍ଯ୍ୟନ୍ତ ସବୁ କ୍ଷେତ୍ରରେ ସେ ଥିଲା ପୁରୁଷର ସହଯୋଗିନୀ । ଦୃଷ୍ଟାନ୍ତ ସ୍ୱରୂପ – ଯୁଗକୁ ସ୍ମରଣ କଲେ ଜଣାଯାଏ ଲୀଳାବତୀ, ମୈତ୍ରେୟୀ, ଗାର୍ଗୀ ଓ ଖନାଙ୍କ ପରି ବିଚକ୍ଷଣା ତଥା ପଣ୍ଡିତା ନାରୀ ଯୁଗେ ଯୁଗେ ଅମର ଥିବାର ପ୍ରମାଣ ଅଛି । ପୁନଶ୍ଚ ପୌରାଣିକ ଯୁଗର ଶକୁନ୍ତଳା, ଦମୟନ୍ତୀ, ସାବିତ୍ରୀ, ସୀତା, ଅନୁସୟାଙ୍କ ଭଳି ପତିପ୍ରାଣା ସ୍ୱାଧ୍ୱୀନାରୀଙ୍କର ଆଦର୍ଶ ସର୍ବଦା ଅମଳିନ ଓ ଚିର ଭାସ୍ୱର । ଏମିତିବି ଇତିହାସର ପୃଷ୍ଠାକୁ ଅନୁଧ୍ୟାନ କଲେ ଜଣାପଡେ – ଶୁକଦେଈ, ରାଣୀ ଲକ୍ଷ୍ମୀବାଈ, ଅହଲ୍ୟାବାଈ ଇତ୍ୟାଦିଙ୍କ ଭଳି ବୀରା ରମଣୀମାନେ ଚିର ସ୍ମରଣୀୟା । ସେମାନଙ୍କର ବୀରତ୍ୱ ଓ ସାହସିକତା ବଳରେ ସେମାନେ ଶକ୍ତିସ୍ୱରୂପିଣୀ ଜଗନ୍ମାତାଙ୍କର ପ୍ରତିନିଧି ସଦୃଶ ।

ସମ୍ପ୍ରତି ଆଧୁନିକ ଯୁଗରେ ମଧ୍ୟ ନାରୀମାନଙ୍କର ପ୍ରଭାବ ଓ ପ୍ରତିଷ୍ଠା ପୁରୁଷମାନଙ୍କ ତୁଳନାରେ କୌଣସି ଗୁଣରେ କମ୍ ପ୍ରମାଣିତ ହୋଇନାହିଁ । ସମାଜସେବା, ରାଜନୀତି, ବିଜ୍ଞାନ, ଗବେଷଣା, ଶିକ୍ଷା ଓ ଦେଶର ସୁରକ୍ଷା ଆଦି ସମସ୍ତ କ୍ଷେତ୍ରରେ ନାରୀ ପାରଦର୍ଶିତା ଲାଭ କରିଛି । ସରୋଜିନୀ ନାଇଡୁ, କମଳା ଦେବୀ ଚଟ୍ଟୋପାଧ୍ୟାୟ, କସ୍ତୁରବା ଗାନ୍ଧୀ, ବିଜୟଲକ୍ଷ୍ମୀ ପଣ୍ଡିତ, ପଦ୍ମଜା ନାଇଡୁ, ଅମୃତା କାଉର, ମଦର ଟେରେସା, ସୁଚେତା କୃପାଳିନୀ, ଇନ୍ଦିରା ଗାନ୍ଧୀ ପ୍ରଭୃତିଙ୍କ ପରି ମହୀୟସୀ ନାରୀ ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରିପାରିଛନ୍ତି ।

ବିଶ୍ୱ ବ୍ରହ୍ମାଣ୍ଡର ମୂଳ ହେଉଛି ନାରୀ । ସେ ପୁଣି ଏକାଧାରାରେ ଜାୟା, ଜନନୀ ଓ ଭଗିନୀ । ସେ ସୃଷ୍ଟିକାରିଣୀ ଆଉ ସଂହାରିଣୀ । ପୁନଶ୍ଚ ପୁରାଣ ଓ ଇତିହାସରେ ନାରୀକୁ ନେଇ ସୃଷ୍ଟି ହୋଇଛି କେତେ ଅଶ୍ଳୀଳ ଅଧ୍ୟାୟ । ସେହି କାରଣରୁ ସ୍ୱର୍ଣ୍ଣ ଲଙ୍କା, କୌରବ ବଂଶ ଧ୍ୱଂସ ପାଇଯାଇଥିଲା । ନାରୀ ପାଇଁ ସମାଜରେ ସହାନୁଭୂତିର ଧାରା ଉଜ୍ଜ୍ୱଳ ହୋଇଉଠିଥାଏ ଓ ତା'ର ସାମାଜିକ ସ୍ୱୀକୃତି, ସମ୍ମାନ ଓ ସ୍ୱାଧୀନତା ପାଇଁ ବୈଧାନିକ ବ୍ୟବସ୍ଥାର ଆବଶ୍ୟକତା ପଡିଥାଏ ।

ସ୍ୱାଧୀନତାର ପରବର୍ତ୍ତୀ ସମୟରେ ସମାଜରେ ଦିନକୁ ଦିନ ବ୍ୟତିକ୍ରମ ଦେଖାଯାଇଛି । ଅଧୁନା ବିଜ୍ଞାନ ଯୁଗରେ ବିଜ୍ଞାନ କ୍ଷେତ୍ରରେ ଅନେକ ବିକାଶ ଘଟୁଛି । ତେବେ କେତେକ ପାଶ୍ଚାତ୍ୟ ରାଜ୍ୟମାନଙ୍କରେ ନାରୀ ଶିକ୍ଷା ଓ ନାରୀର ସାମାଜିକ ସ୍ୱାତନ୍ତ୍ର୍ୟ ଅଧିକ ହୋଇଥିବାରୁ ସେଠାରେ ଭାରତ ତୁଳନାରେ ଅପରାଧର ମାତ୍ରା ଟିକେ ଊଣା ତଥାପି କେତେକ ରକ୍ଷଣଶୀଳ ମନୋଭାବ ଯୋଗୁଁ ସମାଜର ନାରୀ ସ୍ୱାଧୀନତାକୁ ଗର୍ବ କରିବାକୁ ଚାହାନ୍ତି । ସେହି କାରଣରୁ ଗତ ୧୯୯୯ରେ ଇଂଲଣ୍ଡଠାରେ ନାରୀମାନଙ୍କୁ ଧର୍ମ ପୁରୋହିତ ଭାବରେ ନିଯୁକ୍ତ ଦିଆଯିବାର ଘୋଷଣା କରାଯିବାବେଳେ ସେଠାରେ ପ୍ରବଳ ଆଲୋଡନ ସୃଷ୍ଟି ହୋଇଥିଲା ।

ରାଷ୍ଟ୍ରରେ ନାରୀ ଉପରେ ଯେଉଁ ଅପରାଧ ସବୁ ଘଟୁଛି, ତା' ପଛରେ ଭୋଗବାଦୀ ଜୀବନ ପ୍ରତି ଅହେତୁକ ମମତା ଏଥିପାଇଁ ଅଧିକ ପରିମାଣରେ ଦାୟୀ । ନିଶା, ଚଳଚିତ୍ର, ଦୂରଦର୍ଶନରେ ହିଂସା ଓ ଯୌନ ଉତ୍ତେଜକ ଚିତ୍ର ପ୍ରଦର୍ଶନ, ସମ୍ଭୋଗ କାମନାରୁ ଜାତ ଅର୍ଥ ଲାଳସା, ନାରୀର ରୂପକୁ ନେଇ ବିଶ୍ୱ ବଜାରରେ ପ୍ରତିଦ୍ୱନ୍ଦ୍ୱିତା ଇତ୍ୟାଦି ହେଉଛି ଏହାର ମୁଖ୍ୟ କାରଣ । ଦେଖିବାକୁ ଗଲେ ଆମର ସାମାଜିକ ବ୍ୟବସ୍ଥା ସାଧାରଣତଃ ପୁରୁଷ ପ୍ରଧାନ ହୋଇଥିବାରୁ ଏବଂ ସ୍ତ୍ରୀମାନଙ୍କର ସ୍ୱତନ୍ତ୍ର ଜୀବିକାର୍ଜନର ମାର୍ଗ ନଥିବାରୁ ସେମାନେ ସ୍ୱଭାବତଃ ପୁରୁଷମାନଙ୍କ ଉପରେ ନିର୍ଭରଶୀଳ । ଏଇ କାରଣରୁ ମନ୍ଦ ସ୍ୱଭାବର ପୁରୁଷମାନେ ସ୍ତ୍ରୀମାନଙ୍କୁ ନିଜର କ୍ରୀତଦାସୀ ଚକ୍ଷୁରେ ଦେଖିଥାନ୍ତି ।

ଇତର ଜଗତରେ ମଧ୍ୟ ମାତୃପକ୍ଷୀ ଉପରେ ପୁରୁଷ ପକ୍ଷୀମାନେ ନିଜର ଦୈହିକ ଶକ୍ତି ବଳରେ ଅଧିକାର ସାବ୍ୟସ୍ତ କରିଥାନ୍ତି । ସେଠାରେ ମାତୃପ୍ରାଣୀଟିର ନିଜର କିଛି ଇଚ୍ଛା ବା ରୁଚି ନଥାଏ । ଏହା ହେଉଛି ଜୀବଜଗତର ଏକ ସ୍ୱଭାବସିଦ୍ଧ ପ୍ରାକୃତିକ ଧର୍ମ । କିନ୍ତୁ ମନୁଷ୍ୟ ଏକ ଉଚ୍ଚତର ପ୍ରାଣୀ ହେଲେ ମଧ୍ୟ ସେ ଜାଗନ୍ତ ପ୍ରବୃତିର ଅଧୀନ । ସେ କେବଳ ସାମାଜିକ ଶୃଙ୍ଖଳା ଓ ସୌଜନ୍ୟ ନିମନ୍ତେ ନିଜ ପାଇଁ ନିଜେ କେତେଗୁଡ଼ିଏ ଆଚରଣ ସଂହିତା ପ୍ରଣୟନ କରି ତ୍ରୁଟି ପାଇଁ ଦଣ୍ଡ ବିଧାନର ବ୍ୟବସ୍ଥା କରିଛି । ତେଣୁ ପ୍ରକୃତ ପକ୍ଷେ ସମାଜରେ ନାରୀ ସୁରକ୍ଷିତା ହୋଇ ନପାରିଲେ ଏବଂ ତା'ର ମର୍ଯ୍ୟାଦା ଓ ସ୍ୱାଧୀକାର ସ୍ୱୀକୃତ ନ ହେଲେ, ସମାଜ ଜୀବନ ଶୃଙ୍ଖଳା ଓ ଶାଳୀନତା ହରାଇ ବିପର୍ଯ୍ୟସ୍ତ ହୋଇପଡ଼ିବ ।

ଜଗତ୍‌ସିଂହପୁର

# ତୁମେ ଲୀଳାମୟ

**ସୁଚିତ୍ରା ବେହେରା**

ଲୀଳାମୟ ପ୍ରଭୁ ତୁମେ
ହେ ରାଧା ଗୋବିନ୍ଦ !
ମିନତି କରେ ମୁଁ
ଭରାପ୍ରୀତି ଢାଳି
ତୁମ ଶ୍ରୀପୟରେ ।
ସୁଖ ମୋର ଦିଗବଳୟ ପାଲଟେ
ତୁମ ବିନା
ଏ ପାର୍ଥିବ ଜଗତରେ,
ଦୁଃଖ ସବୁ ଦାହ ହୁଏ
ମନର ସ୍ୱର୍ଗଦ୍ୱାରରେ
ଆତ୍ମହରା ହୁଏ ଦେଖି
ତୁମ ଯୁଗଳ ମିଳନ ରୂପରେ ।
ସୁଧାମୟ ଶାଶ୍ୱତ
ପ୍ରୀତି ଲୀଳାର୍ବିନ୍ଦରେ
ଭକ୍ତିଧାରା ବହିଯାଏ ନିରବଧି
ମଧୁମୟ ହୋଇଉଠେ ନିବାସ
ତୁମ ନାମ କୀର୍ତ୍ତନରେ ।
ସର୍ବପାତକ ଧୋଇଯାଏ ଯୁଗଯୁଗର
ତୁମଠାରେ ସମର୍ପିତ ହୋଇ
ନାହିଁ କେଉଁ ଅଭିପ୍ରାୟ
ଚତୁଃଧାମ ତୀର୍ଥାଟନର
ତୁମେ ହିଁ ଜଗଦୀଶ୍ୱର
ସକଳ ତୀର୍ଥ ମୋର
ପୂର୍ଣ୍ଣ ହୁଏ
ତୁମ ଲୀଳାରୂପ ସନ୍ଦର୍ଶନରେ ।

ପ୍ଲଟ୍ ନଂ-୧୩୬/୮୫୦
ବ୍ରହ୍ମେଶ୍ୱର ପାଟଣା, ଭୁବନେଶ୍ୱର-୧୮

# ସୁବର୍ଣ୍ଣ ଭୂମି ସୁବର୍ଣ୍ଣପୁର

ଡକ୍ଟର ଜୟନ୍ତୀ ରଥ

ସୁବର୍ଣ୍ଣପୁର ବାସ୍ତବରେ ସୁବର୍ଣ୍ଣଭୂମି । ଏଠାରେ ଭୂମିତଳୁ ଉଦ୍ଧାର ହୋଇଥିବା ଅର୍ଦ୍ଧଶତାଧିକ ତାମ୍ରଶାସନ ଏବଂ ସହସ୍ରାଧିକ ସର୍ବପ୍ରାଚୀନ ରୌପ୍ୟ ଲାଞ୍ଛନ ମୁଦ୍ରା ଓଡିଶାର ରାଜନୈତିକ ସାମାଜିକ. ସାଂସ୍କୃତିକ ଇତିହାସର ପୁନଃ ସଂରଚନା କରିବା ନିମନ୍ତେ ତଥ୍ୟ ପ୍ରଦାନ କରନ୍ତି । ଓଡିଶାରେ ସଂସ୍କୃତ ଭାଷାରେ ରଚିତ ସର୍ବପ୍ରାଚୀନ ଐତିହାସିକ ମହାକାବ୍ୟ କୋଶଳାନନ୍ଦରେ ସୁବର୍ଣ୍ଣପୁରର ବର୍ଣ୍ଣନା ଅତୀବ ଚିତ୍ତାକର୍ଷକ । ସପ୍ତଦଶ ଶତାବ୍ଦୀରେ ରଚିତ ଏହି ମହାକାବ୍ୟର ପ୍ରଣେତା ଗଙ୍ଗାଧର ମିଶ୍ର । ସମ୍ବଲପୁର ଚୌହାନ ବଂଶୀୟ ନରପତି ବଳୀୟାର ଦେବଙ୍କ ସେ ସଭା ପଣ୍ଡିତ ଥିଲେ । ସେ କୋଶଳ ରାଜ୍ୟକୁ ଏକ ହସ୍ତୀ ଏବଂ ସୁବର୍ଣ୍ଣପୁରକୁ ସେହି ହସ୍ତୀର ସମ୍ମୁଖପାଦ ରୂପେ ବର୍ଣ୍ଣନା କରି ଏହାକୁ ଭାରତର ଦ୍ୱିତୀୟ ବାରାଣାସୀ ରୂପେ ଅଭିହିତ କରିଛନ୍ତି ।

ତତଃ ସ୍ୱର୍ଣ୍ଣପୁର ପାଦୌ ପୂର୍ଣ୍ଣକାମୀ ମନୋରଥୈ
ସାକ୍ଷାଦ୍ଵାରାଣସୀ ଯୁକ୍ତଂ ପରିତଃ ସନ୍ଦବୈଃ ଶିବୈଃ ।

ଏଇ ମାଟିରେ ଥିଲେ ଜଣେ ରାଣୀ । ବିଜୟା ମହାଦେବୀ, କଦମ୍ବ ବଂଶର ରାଜକନ୍ୟା । ଭଞ୍ଜବଂଶୀ ରାଜା ପରମବୈଷ୍ଣବ ପରମଭଟ୍ଟାରକ ଶତ୍ରୁଭଞ୍ଜଙ୍କ ପୁତ୍ରବଧୂ । ରଣଭଞ୍ଜଙ୍କ ପତ୍ନୀ । ସେ ଥିଲେ ପିତୃକୁଳର ଈଷ୍ଟଦେବ ଶିବଙ୍କର ଉପାସିକା । ରାଣୀ ମହାନଦୀ ତଟସ୍ଥ ବହିରାବେଡାଠାରେ ବିଜୟେଶ୍ୱର ଶିବଙ୍କ ଏକ ମନ୍ଦିର ନିର୍ମାଣ କରାଇଥିଲେ । ରାଣୀଙ୍କ ପ୍ରଭାବରେ ପରମବୈଷ୍ଣବ ରାଜା ରଣଭଞ୍ଜ ନିଜକୁ ପରମମାହେଶ୍ୱର ବୋଲାଇ ଥିଲେ । ସମ୍ବଳ ଦେଶର ରାଜା ବଜ୍ରଯାନର ପ୍ରବର୍ତ୍ତକ ଇନ୍ଦ୍ରଭୂତିଙ୍କ ଭଗିନୀ ଲକ୍ଷ୍ମୀଙ୍କରାଙ୍କ ସାଧନାର ପୀଠ ଥିଲା ସୁବର୍ଣ୍ଣପୁର । ସେ ଥିଲେ ଉଡ୍ଡୀୟାନ ଅନ୍ତର୍ଗତ ଲଙ୍କା (ବର୍ତ୍ତମାନ ସୁବର୍ଣ୍ଣପୁର)ର ରାଜବଧୂ । ପ୍ରଥମେ ଭ୍ରାତାଙ୍କ ବଜ୍ରଯାନ ଧର୍ମରେ ଦୀକ୍ଷିତ ହୋଇଥିଲେ ହେଁ ପରେ ସେହି ଶୃଙ୍ଖଳାକୁ ଅତିକ୍ରମ କରି ସହଜଯାନର ପ୍ରବର୍ତ୍ତନ କରିଥିଲେ । ଏହି ସହଜଯାନ ତତ୍କାଳୀନ କଳିଙ୍ଗ, କୋଶଳ, ଉତ୍କଳ ସୀମା ଅତିକ୍ରମ କରି ନେପାଳ ତିବ୍ବତ, ମଙ୍ଗୋଲିଆ, ସିକିମ୍, ସିଂହଳ (ଶ୍ରୀଲଙ୍କା) ଆଦି ସ୍ଥାନରେ ଆଦୃତ ଲାଭ କରିଥିଲା । ବର୍ତ୍ତମାନର ସହଜଯାନ ରୂପାନ୍ତର ଦେହ ମାଧ୍ୟମରେ ଦେହାତୀତର ପ୍ରବୃତ୍ତି ମାଧ୍ୟମରେ ନିବୃତ୍ତିର ଇନ୍ଦ୍ରିୟ ମଧ୍ୟରେ ଅତିନ୍ଦ୍ରିୟର ଉପଲବ୍ଧି ଥିଲା ସହଜଯାନର ମୂଳତତ୍ତ୍ୱ ତାଙ୍କ ରଚିତ ଅଦ୍ୱୟସିଦ୍ଧି ଗ୍ରନ୍ଥରେ ସେ ଲେଖିଛନ୍ତି–

ନ କଷ୍ଟ କଳ୍ପନାଂ କୁର୍ଯ୍ୟାତ୍ ନୋପବାସୋ ନ ଚ କ୍ରିୟାଂ
ସ୍ନାନଂ ଶୌଚଂ ନ ଚୈବାତ୍ରଂ ଗ୍ରାମଧର୍ମଂ ବିବର୍ଜନଂ
ନ ଚାପି ବନ୍ଦୟେଦ୍ଦେବାନ୍ କାଷ୍ଠପାଷାଣ ମୃଣ୍ମୟାନ୍
ପୂଜାମସୈବ କାୟସ୍ୟ କୁର୍ଯ୍ୟାନ୍ନିତ୍ୟଂ ସମାହିତଃ ।

ଆଉ ଜଣେ ଥିଲେ ମହାରାଣୀ ବାସଟ୍ଟା । ସୋମବଂଶୀ ମହାରାଜା ହର୍ଷଗୁପ୍ତଙ୍କ ପତ୍ନୀ । ହର୍ଷଗୁପ୍ତ ଅକାଳରେ ମୃତ୍ୟୁବରଣ କରିଥିବାରୁ, ତାଙ୍କ ପୁତ୍ର ବାଳାର୍ଜୁନ ନାବାଳକ ହୋଇଥିବାରୁ ବିଧବା ରାଣୀ ବାସଟ୍ଟା ଶାସନ ଦାୟିତ୍ୱ ତୁଲାଉଥିଲେ । ଭଗବାନ ପୁରୁଷୋତ୍ତମ ନରସିଂହଙ୍କ ପ୍ରତି ତାଙ୍କର ଗଭୀର ଭକ୍ତି ଥିଲା ଓ କୋଶଳରେ ସେ ବହୁ ବିଷ୍ଣୁ ମନ୍ଦିର ନିର୍ମାଣ କରିଥିଲେ । ଆଧୁନିକ ବଲାଙ୍ଗୀର ଜିଲ୍ଲାର ସଇଁତଲା ଗ୍ରାମର ଅଷ୍ଟମ ଶତାବ୍ଦୀରେ ନିର୍ମିତ ବିଷ୍ଣୁ ମନ୍ଦିରର ଯେଉଁ ଭଗ୍ନାବଶେଷ ମିଳୁଛି, ତହିଁରୁ ଜଣାଯାଏ

ସମ୍ଭବତଃ ତାହା ବାସଛାଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ପୁରୁଷୋତ୍ତମଙ୍କ ସଂପର୍କରେ ଯେତେ ଅଭିଲେଖ ଅଛି, ତନ୍ମଧ୍ୟରେ ରାଣୀ ବାସଛାଙ୍କ ଶିଳାଲେଖ ସର୍ବପ୍ରାଚୀନ ।

କେଶରୀଙ୍କ ମାତା କଳାବତୀ ଦେବୀ ନିର୍ମାଣ କରିଥିଲେ ଭୁବନେଶ୍ୱରର ବ୍ରହ୍ମେଶ୍ୱର ମନ୍ଦିର । ଯଯାତିଙ୍କ ସମୟରେ ସୁବର୍ଣ୍ଣପୁରର ଅଧିଷ୍ଠାତ୍ରୀ ଦେବୀ ଥିଲେ ଭଗବତୀ ପଞ୍ଚାସ୍ୱରୀ ଭଦ୍ରମ୍ବିକା ।

ପରବର୍ତ୍ତୀ କାଳରେ ଏହି ରାଜ୍ୟର ନରପତି ସୋମେଶ୍ୱର ଦେବ ପରମମାହେଶ୍ୱର ପରମଭଟ୍ଟାରକ ସୋମକୁଳ କମଳ କଳିକା ବିକାଶ ଭାସ୍କର ଉପାଧି ସହିତ ଲଙ୍କାଧିପତି ବିରୁଦ ଗ୍ରହଣ କରିଥିଲେ । ଏବେ ବି ମହାନଦୀ ଓ ତେଲ ନଦୀର ସଙ୍ଗମସ୍ଥଳରେ ବିରାଜିତ ଲଙ୍କେଶ୍ୱରୀ ଦେବୀଙ୍କ ମନ୍ଦିର । ମହାନଦୀ ଓ ତେଲ ନଦୀ ସହିତ ମିଶିଥିଲା ଆଉ ଏକ ନଦୀ, ନାଁ ତା'ର କର୍ପୂର । କର୍ପୂର ନଦୀ ଏବେ ଲୁପ୍ତ । ସରସ୍ୱତୀ ନଦୀ ପରି । ତେବେ ଏଇ ତିନି ନଦୀର ସଙ୍ଗମକୁ କୁହାଯାଉଥିଲା ସ୍ୱର୍ଣ୍ଣ ପ୍ରୟାଗ ।

ସୁବର୍ଣ୍ଣପୁରର ପ୍ରଜାବତ୍ସଳ ମହାରାଜା ବୀରମିତ୍ରୋଦୟ ସିଂହଦେଓ ସୁବର୍ଣ୍ଣପୁର ଅଧିବାସୀଙ୍କ ଜଳକଷ୍ଟ ଦୂର କରିବା ପାଇଁ ବନ୍ଧ ବାନ୍ଧି ମହାନଦୀକୁ ନଗରୀ ସହିତ ସଂଯୁକ୍ତ କରିବାର ଯୋଜନା କରିଥିଲେ । ତତ୍କାଳୀନ କଲିକତା ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଚେୟାର ପ୍ରତିଷ୍ଠା କରିଥିଲେ । ସୁବର୍ଣ୍ଣପୁରର ସୁବର୍ଣ୍ଣମେରୁ ମନ୍ଦିରର ଏକ ପାର୍ଶ୍ୱରେ ରାଜାଙ୍କର ଏକ କ୍ଷୁଦ୍ର ପ୍ରତିମୂର୍ତ୍ତି ରହିଛି । ଶିବଙ୍କ ପରିବାରର ପ୍ରତ୍ୟେକ ସଦସ୍ୟ (ଗଣେଶ, କାର୍ତ୍ତିକ, ମହାଦେବ, ପାର୍ବତୀ ନନ୍ଦୀ) ଙ୍କୁ ନେଇ ଗଢି ଉଠିଛି ପଞ୍ଚରଥ ମନ୍ଦିର । କବି ପ୍ରତାପ ରାୟଙ୍କ ରଚିତ ଓ ଗୋପୀନାଥ ପାଣିଗ୍ରାହୀଙ୍କ ସଂପାଦିତ ଶଶିସେଣା କାବ୍ୟର ନାୟକ ଅହିମାଣିକ୍ୟ ଓ ଶଶିସେଣାଙ୍କ ଅମର ପ୍ରେମର ସ୍ମାରକୀ ହୋଇ ଠିଆ ହୋଇ ରହିଛି ଏକ ସ୍ମୃତି ମନ୍ଦିର । ସେ ମନ୍ଦିରର ମୁହଁ ନାହିଁ । ଶୀର୍ଷରେ ସିଂହ, ତିନି ପାର୍ଶ୍ୱରେ ଗଣ୍ଡା, ମାଙ୍କଡ, ବାଘ, ଦଣ୍ଡାୟମାନ । ଅତୀତରେ ରାଜକନ୍ୟା ଶଶିସେଣା ଓ ମନ୍ତ୍ରୀପୁତ୍ର ଅହିମାଣିକ୍ୟଙ୍କ ମଧ୍ୟରେ ଗଢି ଉଠିଥିବା ପ୍ରେମ ସଂପର୍କକୁ ରାଜା ଅଗ୍ରାହ୍ୟ କରିଥିଲେ । ହତାଶା ଜର୍ଜରିତ ପ୍ରେମୀଯୁଗଳ ଆତ୍ମହତ୍ୟା କରିଥିଲେ । ସେଇ ଦୁଃଖଦ ସ୍ମୃତିକୁ ନେଇ ଗଢି ଉଠିଛି ଏଇ ମନ୍ଦିର ଶଶିସେଣା କାବ୍ୟର ଆଧାରରେ । ପ୍ରେମକୁ ନେଇ ମନ୍ଦିର ଗଢା ଯିବାର ନଜିର ଓଡିଶାର ଆଉ କେଉଠି ନାହିଁ । ଭୁବନେଶ୍ୱରର କେଦାରଗୌରୀ ମନ୍ଦିରକୁ ନେଇ ଯାହା ଲେଖା ଯାଇଚି ତାହା କଳ୍ପନାପ୍ରସୂତ । ରାଜଜେମା / ରାଜପୁତ୍ରମାନଙ୍କ କଥା ଇତିହାସରେ, କିମ୍ବଦନ୍ତୀରେ ଜୀଇଁ ରହିଛି । ସାଧାରଣ, ମଧ୍ୟବିତ୍ତ, ଜାତିମୋହଗ୍ରସ୍ତ, ବିଚାରଭ୍ରାନ୍ତ ପରିବାରରେ ଘଟୁଥିବା ଘଟଣା ଲୋକସ୍ମୃତିରୁ ହଜିଯାଉଛି । ତେବେ ଆଜିକାଲି ସନ୍ତାନମାନଙ୍କ ପ୍ରେମକୁ ସ୍ୱୀକୃତି ଦେବାରେ ବାପା, ମାଆମାନେ ପୂର୍ବାପେକ୍ଷା ଉଦାର, ସହନଶୀଳ ହେଲେଣି ।

ମହାନଦୀର ବିସ୍ତୃତ ବାଲୁକା ଶଯ୍ୟା, ବୃକ୍ଷରୁ ଝଡିଥିବା ବହଳ ପତ୍ରର ଶଯ୍ୟା, ନଦୀ ଭିତରେ ଛୋଟ ଶିଳାର ଶଯ୍ୟା, ପ୍ରକୃତି ସତେଯେମିତି ପଚାରୁଚି –କେଉଁ ଶଯ୍ୟା ଚାହୁଁଛ . . .

ବଢି ବେଳେ ଛୋଟ ନଦୀ ତେଲ ଉଠିଯାଏ ମହାନଦୀ ଉପରକୁ । ମହାନଦୀ ତା'ର ଗତିରୋଧ କରିପାରେ ନାହିଁ । ତେଲନଦୀ ଲଙ୍କେଶ୍ୱରୀଙ୍କ ଚରଣ ଧୋଇ ଲେଉଟି ଆସେ । ଜଣେଇ ଦିଏ ତାର ଗୁହାରି –ମାଆ ତୋ ଚରଣ ଛୁଇଁବାର ସୁଯୋଗରୁ ବଞ୍ଚିତ କରିବୁ ନାହିଁ । ମହାନଦୀ କୂଳରେ ଥିବା ପ୍ରାଚୀନ ମହାକାଳେଶ୍ୱର ଆଉ ନାହିଁ । ନଦୀ ଗର୍ଭରେ ବିଲୁପ୍ତ ତା'ର ସତ୍ତା । ମନ୍ଦିରରେ ବ୍ୟବହୃତ ପଥର ଯୋଡାଣ ଦୁର୍ବଳ ଥିଲା ? କି ନିର୍ମାଣରେ ତ୍ରୁଟି ଥିଲା ? କି ବନ୍ୟାର ପ୍ରକୋପ ପ୍ରବଳ ଥିଲା ? କି ମହାକାଳେଶ୍ୱର ମହାନଦୀର ସଙ୍ଗ ଚାହିଁଲେ ? ପାର୍ଶ୍ୱରେ ଥିବା କୋଶଳେଶ୍ୱର ମନ୍ଦିର ଖଣ୍ଡ ବିଖଣ୍ଡ ହେବା ପରେ ପୁନଃ ସଂରକ୍ଷିତ ହୋଇ ରହିଛି, ତା'ର କିଛି ଅଂଶ । ସେଇ ମନ୍ଦିରର ସ୍ତମ୍ଭମାନଙ୍କର କାରୁକାର୍ଯ୍ୟ, ଗନ୍ଧର୍ବ ଅପ୍ସରାଙ୍କ ରମଣୀୟ ମୂର୍ତ୍ତି–ଗାଉନ୍ ପିନ୍ଧିଥିବା ନାରୀର ଅଦ୍ଭୁତ କେଶସଜ୍ଜାରୁ ଅନୁମାନ କରାଯାଏ ଯେ, ଅଷ୍ଟମ ଓ ନବମ ଶତାବ୍ଦୀ ବେଳକୁ କୋଶଳ ରାଜ୍ୟରେ ମନ୍ଦିର ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ କଳା ଉତ୍କର୍ଷ ଲାଭ କରିଥିଲା ଓ ରାଜ୍ୟକୁ ବିଦେଶୀ ପର୍ଯ୍ୟଟକ ଯାତାୟାତ କରୁଥିଲେ ।

କି ଚିତ୍ତାକର୍ଷକ ରୂପ ସୁବର୍ଣ୍ଣପୁରର ଅଧିଷ୍ଠାତ୍ରୀ ଦେବୀ ସୁରେଶ୍ୱରୀଙ୍କ । ଦେବୀ ଉତ୍ତର ଦିଗକୁ ମୁଖ କରି ବିରାଜିତ । ପାର୍ଶ୍ୱରେ ଦଶ ମହାବିଦ୍ୟା ।

ଲଙ୍କେଶ୍ୱର ଜଳରେ, ସୁରେଶ୍ୱରୀ ସ୍ଥଳରେ ସ୍ତମ୍ଭେଶ୍ୱରୀ ଶାସ୍ତ୍ରରେ ଓ ସ୍ମୃତିରେ ଥାଇ ଅଭୟ ପ୍ରଦାନ କରୁଛନ୍ତି ସୁବର୍ଣ୍ଣପୁରକୁ ।

ଅଦୂରରେ ଅଛି କଟ ସମଲେଇ । ସେଠି ପାତାଳି ଶ୍ରୀକ୍ଷେତ୍ର । ବାହ୍ୟଶତ୍ରୁଙ୍କ ଆକ୍ରମଣରୁ ରକ୍ଷା କରିବା ପାଇଁ ଭକ୍ତମାନେ ଶହ ଶହ ବର୍ଷ ତଳେ ତିନି ଠାକୁରଙ୍କୁ ଏଠାରେ ଆଣି ଲୁଚ୍ଚାୟିତ ରଖିଥିଲେ । ପାତାଳ ଶ୍ରୀକ୍ଷେତ୍ର ନିରବରେ ଘୋଷଣା କରୁଚି, ହିଂସ୍ର, ଅବିବେକୀ, ବଳିଷ୍ଠ ଶତ୍ରୁ ହାତରେ ବିନଷ୍ଟ ହେବାଠାରୁ ଆତ୍ମଗୋପନ କରିବା ଶ୍ରେୟସ୍କର । ଯଥେଷ୍ଟ ବଳ ସଞ୍ଚୟ କରିବା ପରେ ଶତ୍ରୁର ମୁକାବିଲା କରାଯାଏ ।

ପ୍ରସ୍ତୁତ ନ ଥାଇ ଶତ୍ରୁର ସାମ୍ନା କରିବା ନିର୍ବୋଧତା । ଅଳ୍ପ ଦୂରରେ ଅଛି ଖଲିଆପଲି । କବି ଭୀମଭୋଇଙ୍କ ସମାଧି ସ୍ଥଳ । ଲୋକ କହନ୍ତି ସିଏ ଥିଲେ ଅନ୍ଧ ।

ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ  
ଦେଖୁ ଦେଖୁ କେବା ସହୁ  
ମୋ ଜୀବନ ପଛେ ନର୍କେ ପଡିଥାଉ  
ଜଗତ ଉଦ୍ଧାର ହେଉ ।

ଏ କବିତାର କବି ଭୀମ ଭୋଇଙ୍କୁ ଆମେ ଅନ୍ଧ କହିବା କେମିତି । ସେ ଯେ ଅନ୍ତରରେ ଜଗତ ଦର୍ଶନ କରୁଥିଲେ ଓ ଜଗତର ହିତ ପାଇଁ ଜୀବନରେ ବଞ୍ଚିଥିଲେ ।

ଅତୀତରେ ଚର୍ଯ୍ୟାପଦର ଗୀତରେ ଝଙ୍କୃତ ହୋଇ ଉଠୁଥିଲା ଏଇ ଭୂମି । ସାତ ଭଉଣୀଙ୍କ ତନ୍ତ୍ର ଉପାସନାର ପୀଠ ସୁବର୍ଣ୍ଣପୁରରେ ଏକକାଳୀନ ତ୍ରିଶୂଳ, ଚକ୍ର, ଯନ୍ତ୍ର ଶୂନ୍ୟାଭିମୁଖୀ ଥିଲେ ।

ଏବେ ଏଠାରେ ଅଛି ମଲ୍ଲୀ ଫୁଲର ମହକ । ମହାନଦୀରେ ଅଛି ମାଛ । ବୁଣାକାରମାନେ ତନ୍ତରେ ବୁଣି ଚାଲିଛନ୍ତି ବୃକ୍ଷ, ମୟୂର, ହଂସ, ପଦ୍ମ, ମାଛ, ହାତୀ, ଶୁଆ ଓ ଆହୁରି କେତେ କ'ଣ । ମାଟିତଳୁ ବାହାରିଥିବା କୁମୁରକେଲା, ଟସ ପାଇକେରା, ବକ୍ର ତେନ୍ତୁଳି, ମହଦା, ସିଂଘରା, ବଉଦ, ମୁରୁଞ୍ଜମରା, ବୋଣ୍ଡ, ବଲୋଦା ଆଦି ତାମ୍ରଶାସନଗୁଡ଼ିକର ଓଡିଶା ଓ ଭାରତର ପ୍ରସିଦ୍ଧ ଲିପିତତ୍ତ୍ୱମାନେ ପାଠୋଦ୍ଧାର କରିଛନ୍ତି । ସେସବୁ ଅନୁଶୀଳନ କଲେ ଜଣାଯାଏ ଯୁଦ୍ଧ ଓ ଶାନ୍ତି ବିଷୟ ତତ୍ତ୍ୱାବଧାନ କରୁଥିବା ସର୍ବୋଚ୍ଚ କର୍ତ୍ତାଙ୍କୁ କୁହାଯାଉଥିଲା ସନ୍ଧିବିଗ୍ରହିକ । ରାଜସ୍ୱ ବିଭାଗର କର୍ମକର୍ତ୍ତା, ବ୍ୟକ୍ତିଗତ ସଚିବ, ଦଲିଲ ପତ୍ର ରକ୍ଷକ, ନିଯୁକ୍ତି ପ୍ରଦାନ ଅଧିକାରୀ, ପୁଲିସ ଅଧୀକ୍ଷକ, ଗୁପ୍ତଚର, ବୃତ୍ତିଭୋଗୀ ସୈନ୍ୟମାନଙ୍କୁ ଯଥାକ୍ରମେ ସମାହର୍ତ୍ତୃ, ସନ୍ନିଧାତୃ, ମହାକ୍ଷପଟଳ, ନିଯୁକ୍ତିକାଧିକାରିକ, ଦଣ୍ଡପାଶିକ, ପିଶୁନି, ଚାଟ କୁହାଯାଉଥିଲା । ନଗରବାସୀଙ୍କୁ ପୌର ପ୍ରଜା କୁହାଯାଉଥିଲା । ହସ୍ତୀ ଦଣ୍ଡ (ହାତୀ ଶିକାର ପାଇଁ), ଅହିଦଣ୍ଡ (ସାପୁଆ କେଳାମାନଙ୍କ ପାଇଁ), ସୁବର୍ଣ୍ଣ ଦଣ୍ଡ (ସୁବର୍ଣ୍ଣକାରମାନଙ୍କ ପାଇଁ), ହଳ ଦଣ୍ଡ (ଚାଷ ଜମି ପାଇଁ), ମାର୍ଗଣି କର (ସଡକ କର), ଅନ୍ଧାରୁଆ (ଜଳକର), ଆଦି ପ୍ରଜାମାନଙ୍କଠାରୁ ଆଦାୟ କରାଯାଉଥିଲା ।

ଆକାର ଓ ଆୟତନରେ ବିଶାଳ ରାଜ ପ୍ରାସାଦ ଏବେ ଧ୍ୱଂସର ଶେଷ ପର୍ଯ୍ୟାୟରେ । କିଏ ରକ୍ଷା କରିବ ଏହି ଅବକ୍ଷୟଗ୍ରସ୍ତ ପ୍ରାସାଦକୁ ? ବହୁ ସୁଖଦ ଓ କରୁଣସ୍ମୃତି ବିଜଡିତ ଏହି ମହଲର ରକ୍ଷଣାବେକ୍ଷଣ ଅତ୍ୟନ୍ତ ବ୍ୟୟ ସାପେକ୍ଷ । କିଏ ବଡ– ବିଗତ ଦିନ ନା ବର୍ତ୍ତମାନ ଏହି ନ୍ୟାୟରେ ଆଖି ଫେରେଇ ଅଣାଯାଉ ସେଠାରୁ । ଏକଦା ରାଣୀ, ରାଜକନ୍ୟା ଓ ସହଚରୀମାନେ ପ୍ରାସାଦରୁ ମହାନଦୀକୁ ସ୍ନାନ କରିବାକୁ ଯାଉଥିଲେ ଗୋପନ ପଥରେ, ଯେଉଁ ଶିଳାମାନଙ୍କ ଉପରେ ବସି ଦେହରେ ତେଲ, ହଳଦୀ ମାଖୁଥିଲେ, ପାଦ ଘଷୁଥିଲେ– ସେମାନେ ଏବେ ବି ନିରବ ସାକ୍ଷୀ ରୂପେ ବିଦ୍ୟମାନ । ଦିନେ ଧରାଶାୟୀ ହୋଇଯିବ ସେଇ ସୁଶ୍ରୀ ଲଳନାମାନଙ୍କର ଆବାସ, ତାହା ସେମାନେ ପ୍ରତ୍ୟକ୍ଷ କରିବେ । ବିଡମ୍ବନା ଏଇଆ ଯେ ଶିଳା ଦେଖେ ମଣିଷ ତାହା ପ୍ରତ୍ୟକ୍ଷ କରିପାରେନା ।

---

ଡି. ୮୭, ବି.ଜେ.ବି ଫ୍ଲାଟ୍ସ  
ଭୁବନେଶ୍ୱର–୧୪

# ସ୍ୱାଧୀନତା ଦିବସର ସ୍ୱର୍ଣ୍ଣିମ କଥା ଓ ଗାଥା

ଡକ୍ଟର ସର୍ବେଶ୍ୱର ସେଣ

ମହାନଦୀରେ ଅନେକ ପାଣି ବହିଗଲାଣି, ସମୟଟା ବି ବଡ଼ ଆଗମଡ଼ା। କାହିଁ କେତେ ଆଗରେ। ବିତିଗଲାଣି ଏକସ୍ତରୀ ବର୍ଷ, ଆମ ସ୍ୱାଧୀନତାର ସ୍ୱର୍ଣ୍ଣିମ କଥା ଗାଥା ଏବେ ସ୍ମୃତି ମୁହାଁ। ତଥାପି, ଫିସନ ଆସେ ସ୍ୱାଧୀନତା ଦିବସ, ଚିଆଇଁ ଦେଇଯାଏ ମହାନ ସ୍ୱାଧୀନତା ସଂଗ୍ରାମୀମାନଙ୍କ ଦେଶପ୍ରେମକୁ। ସେଇମାନଙ୍କ ଲୁହ, ଲହୁ, ତ୍ୟାଗ, ତିତିକ୍ଷା, ଆତ୍ମବଳିଦାନରେ ଅନେକ ହେଲେ ଶହୀଦ୍। ରକ୍ତ ସ୍ନାତା ହେଲେ ଭାରତମାତା। ଶହୀଦ୍‌ର ରକ୍ତ ଗାଧୁଆ ତ୍ୟାଗ କେବେ ବିଫଳ ହୁଏନା। ତାହା ହିଁ ହେଲା। ଭାରତମାତା ହେଲା ବେଢ଼ି ଶୃଙ୍ଖଳ ମୁକ୍ତ (ଅଗଷ୍ଟ ୧୫, ୧୯୪୭)। ଫିରିଙ୍ଗି ଦଳ ହେଲେ ଘରବାହୁଡ଼ା। ସେମାନଙ୍କର ଅତ୍ୟାଚାର, ଲୁଣ୍ଠନ, ଆତଙ୍କରାଜ ବିଶେଷକରି ପୁଲିସ ବାହିନୀର ନରସଂହାର କିଛି ଭ୍ରୂକ୍ଷେପ କରିନଥିଲେ ସଂଗ୍ରାମୀମାନେ। କାରାଗାର ସେମାନଙ୍କ ପାଇଁ ତୀର୍ଥକ୍ଷେତ୍ର, ପୁଲିସ୍ ଗୁଳି ଫୁଲମାଳ, କାରାକକ୍ଷଣ, ନିର୍ଯାତନା ଉପହାର – ଏ ପ୍ରକାର ମାନସିକତା ବଳିଷ୍ଠ କରିଥିଲା ମୁକ୍ତି ସଂଗ୍ରାମ ଇତିହାସକୁ। ସ୍ୱାଧୀନତା ଯୁଦ୍ଧ ଥିଲା ନିରବଚ୍ଛିନ୍ନ। ହେଲେ ଗାନ୍ଧୀଙ୍କ ଆଦର୍ଶ କିମିଆ କଲା। ସାରାଦେଶ ସାମିଲ ହୋଇଗଲା ଅହିଂସ ସଂଗ୍ରାମରେ। ଶେଷରେ ସଂଗ୍ରାମୀଙ୍କ ସ୍ୱପ୍ନ ସାକାର ହେଲା। କ୍ଷମତାଲିପ୍ସୁ ଫିରିଙ୍ଗିଏ, ଗାଦି ଛାଡ଼ିବା କିଛି କମ୍ କଥା ନ ଥିଲା। ମୁକ୍ତିଯୁଦ୍ଧରେ ସାରାଭାରତ ଆନ୍ଦୋଳିତ, ମାତ୍ର ଓଡ଼ିଶା ଥିଲା ସର୍ବାଗ୍ରେ। ଏହାର ବୀର ବୀରାଙ୍ଗନାଙ୍କ ଆତ୍ମୋତ୍ସର୍ଗ ସୃଷ୍ଟି କଲା ସ୍ୱର୍ଣ୍ଣିମ ଇତିହାସ।

ଓଡ଼ିଶାର ଗଜପତି ମୁକୁନ୍ଦଦେବଙ୍କ ନିଧନ ପରେ ଦେଶର ଭାଗ୍ୟରବି ଅସ୍ତମିତ ହେଲା। ପରାଧୀନତାର ଅମା ଅନ୍ଧାର ଘେରିଗଲା ସାରା ଦିଗ୍‌ବଳୟକୁ। ଏକ ଦୀର୍ଘ ସମୟର ପ୍ରତୀକ୍ଷା । ଏହା ମଧ୍ୟରେ ଅନେକ ଘାତ ପ୍ରତିଘାତ। ଆସିଲେ ଆଫ୍‌ଗାନ, ମୋଗଲ, ମରହଟ୍ଟା। ବିଦେଶୀମାନେ ସହଜେତ ଲୁଣ୍ଠନକାରୀ ମାତ୍ର ମରହଟ୍ଟାବର୍ଗୀଙ୍କ ଅତ୍ୟାଚାର ଥିଲା ସୀମାତିକ୍ରାନ୍ତ। ତଥାପି ଓଡ଼ିଆମାନେ ହିମ୍ମତ ହାରି ନଥିଲେ। ଜାରି ରଖିଥିଲେ ଆପଣା ସ୍ୱାଧୀନ ଚିନ୍ତା ଚେତନାକୁ। ଅନେକତ୍ର ପାଇକ ଆଖଡ଼ା, ପାଇକ ଆଖଡ଼ା ବୋଲି, ଧର୍ମକ୍ଷେତ୍ରମାନଙ୍କର ସୁରକ୍ଷା ଏ ସବୁରେ ଥିଲା ଓଡ଼ିଆଙ୍କ ସ୍ୱାଧୀନ ମନୋଭାବ। ତାହା ଅତୀବ ପ୍ରଶଂସନୀୟ। ଶେଷରେ ଆସିଲା ଇଷ୍ଟ ଇଣ୍ଡିଆ କମ୍ପାନୀ, ସାତସମୁଦ୍ର ତେର ନଈ ସେପାରିରୁ। ଫିରିଙ୍ଗିଏ ଗୋଟେ ବଣିକ ଜାତି। ଦିନେ ବେପାର ପାଇଁ ଜାଗା ଟିକେ ମାଗିଥିଲେ। କୂଟନୀତି ପ୍ରୟୋଗ କଲେ। ଭାରତୀୟଙ୍କ ଦୁର୍ବଳତାର ସୁଯୋଗ ନେଲେ। ରାଜା ରାଜୁଡ଼ାଙ୍କ ଗୋଡ଼ଟଣା ନୀତି, ଏକତାର ଘୋର ଅଭାବ, ସ୍ୱାର୍ଥଲିପ୍ସା, କ୍ଷମତା କନ୍ଦଳ – ଏସବୁ ଥିଲା ବଡ଼ ଦୁର୍ବଳତା। ଏଥିରୁ ଫାଇଦା ଉଠାଇଲେ ଇଂରେଜମାନେ। ଭାରତ ବିଜୟ କଲେ, ଶେଷରେ ଓଡ଼ିଶା ଅଧିକାର କଲେ । ଓଡ଼ିଶାବାସୀ ସେମାନଙ୍କ ପ୍ରତି ଆରମ୍ଭରୁ ଥିଲେ ବିମୁଖ। ମୁହୂର୍ତ୍ତଟାଏ ବରଦାସ୍ତ କରିବା ସପକ୍ଷରେ ନଥିଲେ। ମାତ୍ର ୧୪ଟା ବର୍ଷ ପୂରିନି, ଅତିଷ୍ଠ ଓଡ଼ିଆଏ। ଆରମ୍ଭ ହେଲା ପାଇକ ବିଦ୍ରୋହ (୧୮୧୭)। ନେତୃତ୍ୱ ନେଲେ ରୋଡ଼ଙ୍ଗ ବକ୍‌ସି ଜଗବନ୍ଧୁ ବିଦ୍ୟାଧର। ଏହା ଥିଲା ଭାରତର ପ୍ରଥମ ମୁକ୍ତି ସଂଗ୍ରାମ। ଇଂରେଜମାନେ ଏହାକୁ ଦମନ କଲେ, ଜମିଜମା ସମ୍ପର୍କିତ କନ୍ଦଳ କହିଲେ। ଏଡ଼ାଇ ଦେଲେ ଏହାର ଐତିହାସିକ ଗୁରୁତ୍ୱକୁ। ଏଥି ପୂର୍ବର ଘଟଣା, ପ୍ରାକ୍-୧୮୦୩ ବିଦ୍ରୋହର କଥା। ଘୁମୁସୁର ରାଜା କୃଷ୍ଣଚନ୍ଦ୍ର ଭଞ୍ଜ, ପାରଳା ରାଜା ଗୌରଚନ୍ଦ୍ର ଦେବ, ପାରଳା ରାଣୀ ପାଟମହାଦେଈ – ଏମାନଙ୍କର ଇଂରେଜ

ବିରୋଧୀ ସଂଗ୍ରାମ, ସୃଷ୍ଟି କଲା ଏକ ନୂଆ ଇତିହାସ। ଦକ୍ଷିଣ ଓଡ଼ିଶାର ପ୍ରଜାମାନଙ୍କର ନାହିଁ ନଥିବା ସମର୍ଥନ, ଫିରିଙ୍ଗିଙ୍କ ହୃତ୍‌କମ୍ପ ସୃଷ୍ଟି କରିଥିଲା। ଅନୁରୂପ ଭାବେ ଖୋର୍ଦ୍ଧା ବିଦ୍ରୋହରେ ଜୟୀ ରାଜଗୁରୁଙ୍କ ଆତ୍ମବଳି ସ୍ୱର୍ଣ୍ଣିମ ଇତିହାସ ସୃଷ୍ଟି କଲା। ମେଦିନୀପୁର ବାଘତୋଟାରେ ଫାଶିଦିଆ ବରଗଛ, ମୂକସାକ୍ଷୀ ଫିରିଙ୍ଗି ନାରକୀୟ କାର୍ଯ୍ୟାବଳୀର। ସେଦିନ ଜୟୀରାଜଗୁରୁଙ୍କୁ ଫାଶି ଦିଆଗଲା (୧୮୦୬)। ଜୟୀ ରାଜଗୁରୁ ହେଲେ ମୁକ୍ତି ଯୁଦ୍ଧର ପ୍ରଥମ ଶହୀଦ୍। ଏ ଶ୍ରେୟ ଓଡ଼ିଶା ମାତାଙ୍କର। ଠିକ୍ ସେମିତି ସିପାହୀ ବିଦ୍ରୋହ (୧୮୫୭)। ଐତିହାସିକ ପଟ୍ଟାଭି ସୀତାରାମାୟା, ଏହାକୁ ପ୍ରଥମ ମୁକ୍ତିଯୁଦ୍ଧ କହିଲେ। ଓଡ଼ିଆବୀର ସୁରେନ୍ଦ୍ର ସାଏ, ଚନ୍ଦନ ହଜୁରୀ/ ଚାଖି ଖୁଣ୍ଟିଆ, ଏମାନେ ମଧ୍ୟ ଇତିହାସ ରଚିଲେ। ଏମିତି ଓଡ଼ିଆ ବୀର, ମୁକ୍ତି ସଂଗ୍ରାମର ପ୍ରତିଟି ଅଧ୍ୟାୟରେ ଆପଣାର ମହତ ରଖିଲେ। ନେତାଜୀ ସୁଭାଷ ବୋଷ, ଆଜାଦ୍ ହିନ୍ଦ୍ ଫୌଜର ମହାନାୟକ, ତାଙ୍କ ଜନ୍ମ ଓଡ଼ିଶାରେ। ତାଙ୍କ ପାଇଁ ଓଡ଼ିଶା ବି ଧନ୍ୟ। ମୁକ୍ତିଯୁଦ୍ଧରେ ଓଡ଼ିଆ ନାରୀମାନେ ଥିଲେ ଅଗ୍ରଗଣ୍ୟା। ସେମାନଙ୍କର ତ୍ୟାଗର କାହାଣୀ ଇତିହାସରେ ଚିର ଅମ୍ଳାନ।

ସ୍ୱାଧୀନତା ସଂଗ୍ରାମର ଆଉ ଏକ ମାଇଲଖୁଣ୍ଟ ବିର୍ସାମୁଣ୍ଡାଙ୍କ ବିଦ୍ରୋହ । ଏ ବିଦ୍ରୋହରେ ସାମିଲ ଥିଲେ ଶ୍ରୀମତୀ ମଣିମୁଣ୍ଡା, ତାଙ୍କର ତ୍ୟାଗ ବେଶ୍ ପ୍ରଶଂସନୀୟ। ଜାତିର ପିତା ମହାତ୍ମାଗାନ୍ଧୀ, ଯୋଗଦେଲେ ମୁକ୍ତି ଯୁଦ୍ଧରେ। ତାଙ୍କର ସଂସ୍କାରବାଦୀ ଚେତନା ଅନେକଙ୍କୁ ଆକୃଷ୍ଟ କଲା। ବିଶେଷକରି ନାରୀମାନେ ଗଭୀର ଭାବେ ପ୍ରଭାବିତ ହେଲେ। ଗାନ୍ଧିଜୀ ଓଡ଼ିଶା ଆସିଲେ। କଟକର କଦମରସୁଲଠାରେ ମହିଳାମାନଙ୍କୁ ଉଦ୍‌ବୋଧନ ଦେଲେ। ପ୍ରଭାବିତ ହେଲେ ବହୁ ସମ୍ଭ୍ରାନ୍ତ ବଂଶୀୟା ନାରୀ। ସେମାନଙ୍କ ମଧ୍ୟରେ ଅଗ୍ରଗଣ୍ୟା ପୂଜ୍ୟା ରମାଦେବୀ। ଦେହରୁ ସମସ୍ତ ମୂଲ୍ୟବାନ ଅଳଙ୍କାର ଉତାରି ଦେଲେ, ଦାନ କରିଦେଲେ ସତ୍ୟାଗ୍ରହୀ ସଂଗ୍ରାମ ପାଣ୍ଠିକୁ। କେବଳ ରମାଦେବୀ ନୁହଁନ୍ତି, ମାଳତୀ ଦେବୀ, ସରଳା ଦେବୀ, ଜାହ୍ନବୀ ଦେବୀ, କୋଚିଳା ଦେବୀ, ତାଙ୍କ ସହ ଆହୁରି ଶତସହସ୍ର ନାରୀ, ମୁକ୍ତି ସଂଗ୍ରାମକୁ ଆଗେଇ ନେଲେ। ସେମାନଙ୍କ ମଧ୍ୟରୁ ଅନେକ ଆଜି ବିସ୍ମୃତ ଇତିହାସ ପୃଷ୍ଠାରେ। ସେମିତି ଜଣେ ମୁକ୍ତି ସଂଗ୍ରାମୀ ପରୀବେଓ୍ୱା, ଆପଣାକୁ ଆହୂତି ଦେଲେ ମୁକ୍ତିଯଜ୍ଞରେ। ଶହୀଦ୍ ହେଲେ 'ଇରମ ଗଣହତ୍ୟା'ରେ। ସେ ହେଉଛନ୍ତି ଓଡ଼ିଶାର ପ୍ରଥମ ନାରୀ ଶହୀଦ୍।

ଭାରତଛାଡ଼ ଆନ୍ଦୋଳନ ଅଗଷ୍ଟ ବିପ୍ଳବ (୧୯୪୨) ଭାବେ ଅଭିହିତ। ବାଲେଶ୍ୱର ଜିଲ୍ଲା ଭଦ୍ରକର 'ଇରମ' ମେଳଣ ପଡ଼ିଆ। ବ୍ରିଟିଶ ଫଉଜ ସମବେତ ସତ୍ୟାଗ୍ରହୀଙ୍କ ଉପରେ ଆଖିବୁଜା ଗୁଳିମାଡ଼ କଲେ। ଟଳିପଡ଼ିଲେ ଅନେକ, ମୃତାହତଙ୍କ ଦୃଶ୍ୟ ଅତୀବ ହୃଦୟ ବିଦାରକ। ତା'ର ମୂକସାକ୍ଷୀ 'ଇରମ' ମେଳଣ ପଡ଼ିଆ। ଏବେ ଛିଡ଼ା ହେଇଛି ଶହୀଦ୍ ସ୍ମୃତି ସ୍ତମ୍ଭଟେ। ଶହୀଦମାନଙ୍କ ଭିତରେ ଜଣେ ନାରୀ, ନାଁ ପରୀବେଓ୍ୱା ମାତ୍ର ଇତିହାସ ତାଙ୍କ ଯଶଗାନରେ ବିଫଳ। ଏହା ସତ୍ତ୍ୱେ ସେ ପ୍ରଥମ ଓଡ଼ିଆ ନାରୀ ସହିଦ୍ ମାନ୍ୟତା ପ୍ରାପ୍ତ। ତାଙ୍କର ରକ୍ତରେ ସ୍ନାତା ଭାରତମାତା। ପୋଲିସର ଏହି ବର୍ବର ଲୀଳା ଇତିହାସର ଦ୍ୱିତୀୟ ଜାଲିଆନାଓ୍ୱାଲାବାଗ୍ ଗଣହତ୍ୟା। ସହିଦ୍‌ର ରକ୍ତସ୍ନାତ ତ୍ୟାଗ ବିଫଳ ହୁଏନା। ତାହହିଁ ହେଲା। ଦେଶ ହେଲା ସ୍ୱାଧୀନ। କିନ୍ତୁ ଅନାଲୋଚିତ ହୋଇ ରହିଗଲେ ପରିବେଓ୍ୱା।

ବାଲେଶ୍ୱରରେ ଅଗଷ୍ଟ ବିପ୍ଳବ ଭୟାନକ ରୂପ ନେଲା। ଭଦ୍ରକରେ ଅଭୁତପୂର୍ବ ଜନଜାଗରଣ। ଜାତୀୟ କବି ବାଞ୍ଛାନିଧି ମହାନ୍ତି। ତାଙ୍କ ଘର ଇରମ। ଲେଖିଲେ ରାଶିରାଶି ଉଦ୍‌ବୋଧନ ଗୀତିକା। ତାହା ଜନତାଙ୍କୁ ତତାଇଲା, ମତାଇଲା। ଶିରାରେ ଶିରାରେ ଛୁଟେଇଲା ଉଷୁମ ରକ୍ତର ସୁଅ । ତାଙ୍କ ସହ ଆଉ ଚାରିଜଣ ଛାମୁଆ ବାହିନୀରେ (ଗୌରାଙ୍ଗ ଚନ୍ଦ୍ର ମହାନ୍ତି, କମଳା ପ୍ରସାଦ କର, ଅନିରୁଦ୍ଧ ମହାନ୍ତି, ଗଣେଶ ପ୍ରସାଦ ତ୍ରିପାଠୀ) ଏମାନଙ୍କ ଗାଁ କ୍ରମରେ ବରଣ୍ଡୁଆ, ଶଙ୍ଖାରୁ, ଇରମ, ସଦେଇପଡ଼ା। ଗଠିତ ହେଲା 'ମରଣ', ମାରଣ ସେନା'। ଉତ୍ତରରେ ବଂଶଧାରା ନଦୀ, ଦକ୍ଷିଣରେ ଗମେଇ ନଦୀ, ପୂର୍ବରେ ବଙ୍ଗୋପସାଗର, ପଶ୍ଚିମରେ କାଂସ ବାଂଶ ନଦୀ – ଏହାରି ମଧ୍ୟରେ ୨୬ଟି ଗାଁ, ପ୍ରତି ଗାଁରେ ସ୍ୱାଧୀନ ସରକାର – ଏହା ଥିଲା ଏକ ଅଭିନବ ପ୍ରୟାସ। ପରେ ଏହାର ସୀମା ପରିବର୍ଦ୍ଧିତ ହେଲା। ଚାଲିଲା ସମାନ୍ତରାଳ ସରକାର। ଚକଲା ସରକାର ପରିଚାଳନା କଲା ଗୋଟେ ପରିଷଦ। ଗୌରାଙ୍ଗ ଚରଣ ମହାନ୍ତି ଏହାର ପ୍ରଧାନମନ୍ତ୍ରୀ, କମଳା ପ୍ରସାଦ କର ନିର୍ଦ୍ଦେଶକ ତଥା ପ୍ରଧାନ ସେନାପତି, ପରିଷଦର ଅନ୍ୟ ସଭ୍ୟ ଅନିରୁଦ୍ଧ ମହାନ୍ତି, ପ୍ରଭାକର ତ୍ରିପାଠୀ, ଶ୍ୟାମସୁନ୍ଦର ପାଣିଗ୍ରାହୀ। ସରକାର କିଛିଦିନ ସୁରୁଖୁରୁରେ ଚାଲିଲା। ଏହାର ସଫଳତା ପଛରେ ଥିଲା ଏକାଧିକ

କାରଣ। ଭୌଗୋଳିକ ଦୃଷ୍ଟିରୁ ଅଞ୍ଚଳଟି ଗୋଟେ ଦ୍ୱୀପ ପ୍ରାୟ, ଏକ ପାଖରେ ମହୋଦଧି, ଅନ୍ୟପଟରେ ନଦୀ, ଅଞ୍ଚଳଟି ଏକ ପ୍ରକାର ବିଚ୍ଛିନ୍ନ ପ୍ରାୟ। ବ୍ରିଟିଶ ପୁଲିସ୍ ପାଇଁ ଏହା ଥିଲା ଅପହଞ୍ଚ। ଅପୂର୍ବ ଜନ ସମର୍ଥନ, ଦଣ୍ଡ ଭୟରେ ସରକାରୀ ଚାକିରିଆ, ସ୍ଥାନୀୟ ଚୌକିଦାରଙ୍କ ସମର୍ଥନ – ଏସବୁ ଚକଲା ସରକାରକୁ ସୁହାଇଲା। ଇଂରେଜମାନେ ହେଲେ ଆତଙ୍କିତ। ସେମାନଙ୍କ ଦ୍ୱାରା ନିଯୁକ୍ତ ପ୍ରେସିଡେଣ୍ଟ ନାରାୟଣ ମାନ୍ଧାତା, ତାଙ୍କ ସାଙ୍ଗକୁ ଜମିଦାର ରମାକାନ୍ତ ପାଢ଼ୀ। ଏମାନେ ବିଦେଶୀ ପରିବହନକାରୀ, ଗୋଇନ୍ଦା କାର୍ଯ୍ୟରେ ଲିପ୍ତ। ବ୍ରିଟିଶ ପୋଲିସ ବାରମ୍ବାର ଇରମକୁ ପ୍ରବେଶ କଲା। ସୃଷ୍ଟି ହେଲା ଗଭୀର ଉତ୍ତେଜନା, ପରିଣାମ ହେଲା ଭୟଙ୍କର। ପୋଲିସ ନିଃଶସ୍ତ୍ର ଜନତାଙ୍କୁ ହତ୍ୟା କଲା, ଛୁଟିଲା ରକ୍ତର ସୁଅ । ସେଇଟି ଥିଲା କଳାଦିବସ (୧୯୪୨ ମସିହା ସେପ୍ଟେମ୍ବର ୨୮ ତାରିଖ)।

ଇରମ ପଡ଼ିଆ ଲୋକାରଣ୍ୟ। ହଜାର ହଜାର ସତ୍ୟାଗ୍ରହୀ ସମବେତ। ଆପଣାର ହକ୍ ହାସଲ ପାଇଁ ଚାଲିଛି ସଭାକାର୍ଯ୍ୟ। ପନ୍ଥା ସମ୍ପୂର୍ଣ୍ଣ ଅହିଂସା। ଗୋଧୂଳି ଲଗ୍ନ। ସତ୍ୟାଗ୍ରହୀଏ ନିର୍ଭୀକ, ଯେକୌଣସି ସମୟରେ ଗୁଳି ଚଳାଇବ ପୋଲିସ। ତଥାପି ସେମାନେ ଆତ୍ମ ବଳିଦାନ ପାଇଁ ପୂର୍ଣ୍ଣ ପ୍ରସ୍ତୁତ। ବାସୁଦେବପୁର ଏସ୍.ପି. କୁଞ୍ଜ ବିହାରୀ ମହାନ୍ତି, ସାଥିରେ ଇଂରେଜ ଫଉଜ। ୟୁନିୟନ ପ୍ରେସିଡେଣ୍ଟଙ୍କ ଝରକା ଭଙ୍ଗାରୁଜା, ଜମିଦାର ଅମାର ଜବରଦଖଲ ପାଇଁ ସତ୍ୟାଗ୍ରହୀଙ୍କ ଧମକ – ଏସବୁର ତଦନ୍ତ ପାଇଁ ବାହାରିଲେ ଭଦ୍ରକ। ପୋଲିସର ଉପସ୍ଥିତି ଶଙ୍ଖଧ୍ୱନି ମାଧ୍ୟମରେ ଗାଁକୁ ଗାଁ ଜଣାଇ ଦିଆଗଲା। କେଇଟି ମୁହୂର୍ତ୍ତ ଇରମ ପଡ଼ିଆକୁ ସତ୍ୟାଗ୍ରହୀଙ୍କ ସୁଅ ଛୁଟିଲା। ଯିଏ ଯେଉଁଠି ଥିଲେ ଧାଇଁଲେ। ୬ ରୁ ୭ ହଜାର ସତ୍ୟାଗ୍ରହୀଙ୍କ ସମାବେଶ। ଦୁଇଜଣ ଚୌକିଦାର, ପୁଲିସଙ୍କ ବିଛଣା ବୋହି ନେଉଥିଲେ। ଦୁଇ ସତ୍ୟାଗ୍ରହୀ ଏହାର ବିରୋଧ କଲେ। ଗୋଲାମଙ୍କ ବିଛଣା ଫିଙ୍ଗିଦେଲେ। ଘଟଣାଟି ନେଲା ଭିନ୍ନମୋଡ଼। ପୋଲିସ ଉପରେ ଆକ୍ରମଣର ରଙ୍ଗ ଦିଆଗଲା। ଡି.ଏସ୍.ପି. ଗୁଳିଚାଳନା ନିର୍ଦ୍ଦେଶ ଦେଲେ। ୩୦୪ ଚୋଟ ଗୁଳି, ଘଟଣାସ୍ଥଳରେ ୩୫ ଜଣଙ୍କର ପ୍ରାଣ ଗଲା। ୧୦୭ ଜଣ କ୍ଷତାକ୍ତ। ସେମାନଙ୍କର କରୁଣ ଚିତ୍କାର, ଚତୁର୍ଦ୍ଦିଗ ଶୋକାକୁଳ। ଇରମ ବଳିପଡ଼ିଛି ମେଳଣ ପଡ଼ିଆରେ। ସଂଗ୍ରାମର ପୂଝାରୀମାନେ ଆପଣା ମୁଣ୍ଡକୁ ହାଣି ଥୋଇ ଦେଇଛନ୍ତି। କିଏ ମରିଛି – କାହାର ପ୍ରାଣ ଯିବ – କିଏ ଘାଇଲା ହେଇ ପଡ଼ିଛି। ସେଇ ହିଡ଼ମାଟି ପଡ଼ିଆ ଲାଲ ରକତ ଆଜି ଚାହିଁଛି। ସାକ୍ଷୀ ଦେବ ନରରକ୍ତ ପିପାସୁ ଇଂରେଜ ଫଉଜଙ୍କର। ଗୁଳିମାଡ଼ରେ ୩୫ ଜଣ ଶହୀଦ୍ ହେଲେ, ତାଙ୍କ ମଧ୍ୟରେ ଏକମାତ୍ର ନାରୀ ପରୀବେଓ୍ୱା।

ଚକଲା ସରକାର, ସେନାଧକ୍ଷ କମଳା ପ୍ରସାଦ କର, ସେଦିନ ସଭାପତିତ୍ୱ କରୁଥିଲେ। ସାହସ ଧର, ଅପେକ୍ଷା କର, ଯାହା ପ୍ରାଣ ଭୟ ସେ ଚାଲିଯାଉ– ବାରମ୍ବାର କହୁଥିଲେ। ମାତ୍ର ଜନତା ଦେଉଥାଆନ୍ତି ସମସ୍ୱରରେ ଉତ୍ତର – ଗୁଳି ଗୁଳାସେ ନେହିଁ ଡରଙ୍ଗେ, ଲାଠି ମାଡ଼ସେ ନେହିଁ ଡରଙ୍ଗେ, ବ୍ରିଟିଶ ରାଜତ୍ୱ ମୁର୍ଦ୍ଦାବାଦ, ମହାତ୍ମା ଗାନ୍ଧୀକି ଜୟ, ବନ୍ଦେ ମାତରମ୍ – ଜୟ ଜୟକାର ଧ୍ୱନି, ପ୍ରକମ୍ପିତ ସଭାସ୍ଥଳୀ। ଜୀବନକୁ ଭୟ ନାହିଁ। ପୋଲିସକୁ ଭ୍ରୂକ୍ଷେପ ନାହିଁ। ଆତ୍ମବଳି ପାଇଁ ସମସ୍ତେ ପ୍ରସ୍ତୁତ। ସେମାନଙ୍କ ମଧ୍ୟରେ ଥିଲେ ଅନେକ ନାରୀ। ସେମାନଙ୍କ ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ। ବାଞ୍ଛାନିଧି ଚକଲାର ସ୍ୱେଚ୍ଛାସେବୀ ବାହିନୀ। ଏଥିରେ ଥିଲେ ଅଗ୍ରଗଣ୍ୟା ନାରୀନେତ୍ରୀ। ଅନୁରୂପ ଭାବେ ଶାନ୍ତିବାହିନୀରେ ମଧ୍ୟ। ସେମାନଙ୍କ ମଧ୍ୟରେ ଆଗଧାଡ଼ିରେ ହେମଲତା ଦେବୀ, କୁନିଲତା ଦେବୀ, ଜଞ୍ଜାଳୀ ଦେବୀ, ହୈମବତୀ ପାଢ଼ୀ, ସରଳା ଦେବୀ, ଏମାନଙ୍କ ସହ ସାମିଲ ହୋଇଥିଲେ ଆହୁରି ଅନେକ ଝିଅବୋହୂ ଓ ପରୀବେଓ୍ୱା ପରି ଶହଶହ ସାଧାରଣ ନାରୀ। ମୁଠିଚାଉଳ ଆଦାୟ, ମରଣ ସେନା, ମାରଣ ସେନାଙ୍କ ପାଇଁ ଖାଦ୍ୟ ପ୍ରସ୍ତୁତି, ଗୋଇନ୍ଦା ସେନାଙ୍କୁ ସମ୍ବାଦ ପ୍ରେରଣ – ଏସବୁ କାର୍ଯ୍ୟ ନାରୀବାହିନୀ ଉପରେ। ପୁଲିସ ଆସିଲେ, ଚାରିଆଡ଼େ ଶଙ୍ଖଧ୍ୱନି, ହୁଳହୁଳି ପଡ଼େ। ଏ ଦାୟିତ୍ୱ ବି ନାରୀମାନଙ୍କର। ପୁଲିସ ଉପସ୍ଥିତି ଖବର, ଗାଁ ଗାଁରେ ପହଞ୍ଚୁଥିଲା। ନାରୀମାନେ ସୁଚାରୁରୂପେ ଏ ଦାୟିତ୍ୱ ତୁଲାଇଥିଲେ।

ଇରମର ନାରୀ ସହିଦ୍ ପରୀବେଓ୍ୱା। ପ୍ରକୃତ ନାଁ ପାର୍ବତୀ ସାହୁ। ସେ ଥିଲେ ଅପରିଚିତା, ଆର୍ଥିକ ସ୍ୱଚ୍ଛଳତା ତାଙ୍କର ନଥିଲା। ଶିକ୍ଷା ବି। ଆଗଧାଡ଼ିର ସଂଗ୍ରାମୀ ମଧ୍ୟ ନଥିଲେ। ଭାରତ ମାତାଙ୍କୁ ବେଢ଼ି ଶୃଙ୍ଖଳ ମୁକ୍ତ କରିବା – ଏ ଥିଲା ତାଙ୍କ ପଣ ଓ ପ୍ରତିଜ୍ଞା। ଓଡ଼ିଶାର ଏକମାତ୍ର ନାରୀ ସହିଦ୍‌ର ପରିଚୟ ସୃଷ୍ଟି, ଏଥି ପାଇଁ ନଥିଲା ତାଙ୍କର ସନ୍ତକ, ସଙ୍କେତ, ସମ୍ବଳ। କେତେଜଣ ଐତିହାସିକ ଲେଖିଲେ, ପରୀଙ୍କ ଜନ୍ମ ୧୮୭୭ ମସିହାରେ, ଭିଟାମାଟି ଐତିହାସିକ ଗାଁ ଇରମ। ଜାତିରେ ସେ ମଧୁ– ବୈଶ୍ୟ। ପେଷାରେ ଜଳଖିଆ ଦୋକାନୀ। ୬୫ ବର୍ଷରେ ସହିଦ

ହେଲେ । ସେ ଏକମାତ୍ର କନ୍ୟାର ଜନନୀ । ତା’ ନାଁ ମନ୍ଦୋଦରୀ । ଗୁରୁଜନମାନେ ପରୀଙ୍କୁ ଡାକନ୍ତି ମନ୍ଦ ମା’ । ମନ୍ଦୋଦରୀଙ୍କ ବର ମାଗୁଣୀ ସାହୁ, ସେ ଘର ଜ୍ୱାଇଁଆ । ମନ୍ଦର ଏକମାତ୍ର କନ୍ୟା ‘ହାଡ଼ିଆଣୀ’ । ତା’ ସ୍ୱାମୀ ନନ୍ଦ ସାହୁ । ହାଡ଼ିଆଣୀର ତିନିଟି ପୁତ୍ର ସନ୍ତାନ – ରତ୍ନାକର, ଗଂଗାଧର, ବିଦ୍ୟାଧର । ଏହାହିଁ ପରୀବେଓ୍ୱାଙ୍କ ବଂଶ ଲତା । ପାର୍ବତୀ ସାହୁ ଓରଫ୍ ପରୀବେଓ୍ୱାଙ୍କ ସ୍ୱାମୀ ନାରାୟଣ ସାହୁ, ଇରମ ଗଣହତ୍ୟା ବେଳକୁ ସେ ଆଉ ପାରିରେ । ସର୍ବସାଧାରଣରେ ପରୀଙ୍କର ପରିଚୟ ‘ପରୀବେଓ୍ୱା’ । ବିଶିଷ୍ଟ ଐତିହାସିକ ଜଗନ୍ନାଥ ପଟ୍ଟନାୟକ, ତାଙ୍କ ପୁସ୍ତକ ରକ୍ତତୀର୍ଥ ‘ଇରମ’ । ସେ ଭଦ୍ରକ ବାସିନ୍ଦା, ଖୁବ୍ ନିକଟରୁ ଦେଖିଥିଲେ ଇରମକୁ । ତନ୍ନତନ୍ନ କରି ପଢ଼ିଥିଲେ, ଅନୁଭବ କରିଥିଲେ ରକ୍ତ ବିଧୌତ ଇରମର କରୁଣ କାହାଣୀକୁ । ମୃତକଙ୍କ ମଧ୍ୟରେ ଜଣେ ମହିଳା, ତାଙ୍କ ନାମ ପରୀବେଓ୍ୱା । ସେ ଓଡ଼ିଶାର ପ୍ରଥମ ମହିଳା ସହିଦ । ଐତିହାସିକ ପ୍ରଫେସର ଜଗନ୍ନାଥ ପଟ୍ଟନାୟକ ଏ କଥାକୁ ଉଲ୍ଲେଖ କରିଛନ୍ତି ।

କାଳର କୁଟିଳ ଗତି, ତେଲିଆ ମୁଣ୍ଡରେ ତେଲ । ପରୀବେଓ୍ୱା ସମ୍ଭ୍ରାନ୍ତ ବଂଶଜା ନୁହନ୍ତି, ତାହା ହୋଇଥିଲେ ତାଙ୍କର ତ୍ୟାଗ ଅବିଦିତ ନଥାନ୍ତା । ବହୁରୂପରେ ବହୁ ଭାବରେ ରୂପ ନେଇଥାଆନ୍ତା ଇତିହାସ ପୃଷ୍ଠାରେ । ପରୀଙ୍କର ଦୁର୍ଭାଗ୍ୟ ହିଁ ତାଙ୍କ ଦାରିଦ୍ର୍ୟ । ଗୁଡ଼ିଆଘରେ ଜନ୍ମ, ମିଠାଇ ବିକିଲେ ଗୁଜୁରାଣ ମେଣ୍ଟେ, କିଏ ବା କାହିଁକି ତାଙ୍କୁ ମନେରଖିବ ? ସମୟ ଗତିଶୀଳ । ସ୍ୱାଧୀନତା ଦିବସ ଡେଇଁଲାଣି । ଇରମରେ ଫିରିଙ୍ଗିଙ୍କ ନରସଂହାର ଏବେ ସ୍ମୃତିଟିଏ । ତଥାପି ଚହଲେଇ ଦିଏ, ଲୋମ ଟାଙ୍କୁରି ଉଠେ, ତଦନାନ୍ତୀନ ନରମେଧ ଯଜ୍ଞ ଇତିହାସକୁ କରେ ଲୋତକାପ୍ଲୁତ । ଇରମର କରୁଣ ଚିତ୍ର, କବି ଲେଖନୀକୁ କଲା ଶତମୁଖର – ପଳାଇ ଯିବାକୁ ପଥ ନମିଳିଲା / ଛିଡ଼ା ହେଉଁ ହେଉଁ ଗୁଳି ଚୋଟ ହେଲା / ହୋଇ ଗଲା ଆସି ସନ୍ଧ୍ୟା ସମାଗମ / ତଥାପି ହେଉଛି ଗୁଳିର ବର୍ଷଣ / ଶବ ପରେ ଶବ ହୋଇ ଗଲା ଗଦା / ରକତ କର୍ଦ୍ଦମ ହୋଇଗଲା ପଦା । ସନ୍ଧ୍ୟା ଘ ୬/୩୦ ମିନିଟ୍‌ରୁ ୭ ଘଟିକା । ମାତ୍ର ତିରିଶ ମିନିଟ୍‌ର ବ୍ୟବଧାନ, ସତ୍ୟାଗ୍ରହୀଙ୍କର ସବୁ ସ୍ୱପ୍ନକୁ ପାଣିଚିଆ କରିଦେଲା । ତଥାପି ସାକାର ହେଲା ପରୀବେଓ୍ୱାଙ୍କର ସ୍ୱପ୍ନ, ନିରଳସ ତ୍ୟାଗ, ଉତ୍ସର୍ଗୀକୃତ ଜୀବନ, ଗୋଟେ ଜାତିର ଜାତୀୟତାବାଦ ଉଦ୍ରେକକାରୀ – ଏହାର ଜ୍ୱଳନ୍ତ ନମୁନା ପରୀବେଓ୍ୱା । ଅଗଷ୍ଟ ବିପ୍ଳବ ସାରା ଦେଶରେ ଚହଳ ସୃଷ୍ଟି କଲା । ଓଡ଼ିଶା ଥିଲା ସର୍ବାଗ୍ରେ । ଲୁଣିଆ, ଖଇରା, କାଇପଡ଼ା, କଳାମାଟିଆ, ପାପଡ଼ାହାଣ୍ଡି ସାକ୍ଷ୍ୟ ଦେଇଛି ଫିରିଙ୍ଗି ଆତଙ୍କରାଜର ତାଣ୍ଡବଲୀଳା ମାତ୍ର ଭଦ୍ରକର ‘ଇରମ’ ସବୁର ଶିଖରରେ । ଜାତିପ୍ରାଣ କବି ଆଙ୍କି ଚାଲିଲେ ଇରମର କରୁଣ କାହାଣୀ – ଦେଶ ଜାତି ପ୍ରୀତି ସରସ୍ୱତୀ ନଦୀ / ବହୁଛି ଇରମେ ଶତମାର୍ଗ ଭେଦି / ଅନ୍ତଃସଲୀଳା ଏ ସାରା ଭାରତେ/ ଜାତୀୟତା ଧାରେ ବହିବ ନିରତେ / ଦେଶାତ୍ମବୋଧର ଚାରୁ ଗନ୍ତାଘର / ଇରମର ସୁରମ୍ୟ ଜାତୀୟ ନଗର । ମୁକ୍ତି ସଂଗ୍ରାମର ଇତିହାସ ରକ୍ତରଞ୍ଜିତ ପଞ୍ଜାବ ଜାଲିଆନାୱାଲାବାଗ ନରହତ୍ୟାରେ । ସେଦିନର ନରରାକ୍ଷସ ଜଣେ ଇଂରେଜ, ଜେନେରାଲ ଡାୟାର । ମାତ୍ର ଇରମର କଳଙ୍କିତ ନାୟକ ଡି.ଏସ୍.ପି. କୁଞ୍ଜବିହାରୀ ମହାନ୍ତି । ଜଣେ ଓଡ଼ିଆ ଜାତିଦ୍ରୋହୀ ରହିଗଲେ କଳଙ୍କିତ ହୋଇ ସବୁ କାଳକୁ ।

ପ୍ରଥମ ମହିଳା ସହିଦ୍ ପାର୍ବତୀ ସାହୁ, ଗୁଡ଼ିଆଣୀ, ଜଣେ ମିଠା ବିକାଳି, ତାକୁ ମନେରଖିଲାନି ଇତିହାସ । ପରୀବେଓ୍ୱା, ଆସିଥିଲେ ପରୀଟିଏ ପରି । ଆପଣା ମହତ ରଖିଗଲେ ମହୀରେ । ସେ କେବଳ ଓଡ଼ିଶାର ମୁଖ ଉଜ୍ଜ୍ୱଳ କରିନାହାନ୍ତି, ମୁକ୍ତି ସଂଗ୍ରାମକୁ ମହିମା ବିମଣ୍ଡିତ କରିଛନ୍ତି । ସତରେ ଇରମ ନିବାସୀ ମନ୍ଦମାତା ବୁଢ଼ୀ / ଗୁଳି ହେଲା ଗଲା ଦିବ୍ୟ ଯାନ ଚଢ଼ି । ପରୀ ପାଇଁ ନା କେହି ଗୀତଟିଏ ଗାଇଲା, ନା ଦି’ ଟୋପା ଲୁହ ଝରାଇଲା । ତଥାପି ସେ ଅଜର ଅମର, ଚିର ଅମ୍ଳାନ ।

ପଞ୍ଚଦଶ ଶତାବ୍ଦୀ, ଫ୍ରାନ୍ସର ଯୋନ୍, ଇତିହାସରେ ନାଁ ରଖିଲେ । ଠିକ୍ ସେମିତି ପରୀବେଓ୍ୱା, ସେଦିନ ପାଟିରୁ ତାଙ୍କର ସ୍ଫୁରିଥିବା, ମହାତ୍ମା ଗାନ୍ଧୀକୀ ଜୟ, ବନ୍ଦେ ମାତରମ୍’ । ତାଙ୍କର ହିମାଳୟ ନଭଶ୍ଚୁମ୍ବୀ ତ୍ୟାଗ, ତାକୁ ନେଇ ଲେଖା ହେଉ ନୂଆ ଇତିହାସ, ତା’ହେଲେ ଓଡ଼ିଶାର ପ୍ରଥମ ନାରୀ ସହିଦ୍ ପରୀବେଓ୍ୱା, କାଳକୋଳରେ ଚିର ଦେଦୀପ୍ୟମାନ ରହିବେ । ତାଙ୍କୁ ସାରା ବିଶ୍ୱ ଜାଣିବ, ଏହା ନିଃସନ୍ଦେହ । ଚିର ସ୍ମରଣୀୟ ଆମ ସ୍ୱାଧୀନତା ଦିବସ । ସାରା ଦେଶରେ ଉଡୁଚି ତ୍ରିରଙ୍ଗା ପତାକା । ବନ୍ଦେ ମାତରମ୍ ଧ୍ୱନିରେ ଗଗନପବନ ନିନାଦିତ । ମନେ ପକେଇ ଦେଇଛି ସେଇସବୁ ଶହୀଦମାନଙ୍କ ଆତ୍ମବଳି କଥା ଓ ଗାଥାକୁ । ପରୀବେଓ୍ୱା ଏବଂ ତାଙ୍କ ପରି ଆହୁରି ଅନେକ ଶହୀଦମାନଙ୍କୁ ଏ ଜାତିର କୋଟିକୋଟି ପ୍ରଣାମ ।

ସା/ପୋ: ପୁରୁଷୋତ୍ତମପୁର, କେନ୍ଦ୍ରାପଡ଼ା

# ବାଲେଶ୍ୱରରେ ସ୍ୱାଧୀନତା ଆନ୍ଦୋଳନର ପ୍ରସ୍ତୁତି ଓ ପରାଧୀନ ଓଡ଼ିଶାର ଭିତ୍ତି

ଡକ୍ଟର ଅରବିନ୍ଦ ପ୍ରଧାନ

ଓଡ଼ିଶାର ରାଜନୈତିକ ମାନଚିତ୍ରରେ ବାଲେଶ୍ୱର ଓଡ଼ିଶାର ଉତ୍ତର ସୀମାନ୍ତ ଜିଲ୍ଲା ଅଟେ । 'ବାଲେଶ୍ୱର' ବହୁ ପ୍ରାଚୀନ କାଳରୁ ଏକ ପ୍ରସିଦ୍ଧ ଅଞ୍ଚଳ ଭାବରେ ପରିଚିତ । ଏହାର ରାଜନୈତିକ ଇତିହାସ ଏବଂ ସାଂସ୍କୃତିକ ପରମ୍ପରା ବେଶ୍ ବଳିଷ୍ଠ ଏବଂ ପ୍ରାଚୀନ ଅଟେ । ଆଧୁନିକ ଓଡ଼ିଶାର ଏହା ଗୋଟିଏ ଜିଲ୍ଲା ନୁହେଁ, ଏହା ପ୍ରାଚୀନ କାଳର ପ୍ରତ୍ନତାତ୍ତ୍ୱିକ ଅବଶେଷରେ ବେଶ୍ ପରିପୂର୍ଣ୍ଣ ଏବଂ ଓଡ଼ିଶାର ଇତିହାସରେ ଏହାର ସ୍ୱତନ୍ତ୍ର ମର୍ଯ୍ୟାଦା ରହିଛି । ସମଗ୍ର ଭାରତବର୍ଷରେ ଶ୍ରୀରାଧା-କୃଷ୍ଣ ଉପାସନାର ଶାସ୍ତ୍ରୀୟ ମର୍ଯ୍ୟାଦା ଏହି ମାଟିର ସୁଯୋଗ୍ୟ ସନ୍ତାନ ଆଚାର୍ଯ୍ୟ ବଳଦେବ ବିଦ୍ୟାଭୂଷଣ ୧୭୨୫ରେ ରଚିତ ଗୋବିନ୍ଦଭାଷ୍ୟ ମାଧ୍ୟମରେ ଦେଇଥିଲେ । ବେଦ ବର୍ଣ୍ଣିତ ପିପ୍ପଳାଦ ଶାଖାର ଆର୍ଯ୍ୟମାନଙ୍କର ଅବସ୍ଥିତି ଓଡ଼ିଶାର ଆଉ କେଉଁଠି ଦେଖାଯାଏ ନାହିଁ କେବଳ 'ରେମୁଣା' ଅଞ୍ଚଳରେ ହିଁ ଏହାର ସ୍ଥିତି ଥିବାର ବହୁ ପ୍ରମାଣ ରହିଛି । ଓଡ଼ିଶାରେ ପ୍ରତିଷ୍ଠିତ 'ଗୋପୀନାଥ' ଉପାସନାର ମୂଳପିଣ୍ଡ ହିଁ ବାଲେଶ୍ୱରର 'ରେମୁଣା' ଅଟେ । ଏସବୁ ଦୃଷ୍ଟିରୁ 'ବାଲେଶ୍ୱର' ଏକ ପ୍ରାଚୀନ ସାଂସ୍କୃତିକ ଚେତନାପୂର୍ଣ୍ଣ ପ୍ରସିଦ୍ଧ ଅଞ୍ଚଳ ଏବଂ ଦୀନକୃଷ୍ଣ ଦାସ, ଫକୀର ମୋହନ ସେନାପତି, ରାଧାନାଥ ରାୟଙ୍କ ଭଳି ସୁଯୋଗ୍ୟ ସନ୍ତାନଙ୍କର ଜନନୀ ।

ସମୟ ସ୍ରୋତରେ ବାଲେଶ୍ୱର ନିଜର ପରିଚୟ ସମସ୍ତଙ୍କଠାରେ ଦେଇ ଆସିଛି ଏକଥା କାହାକୁ ଅଜଣା ନାହିଁ । ଓଡ଼ିଶାର ଭାତହାଣ୍ଡି ଭାବରେ ଆଜି ମଧ୍ୟ ବାଲେଶ୍ୱର ପରିଚିତ ।

ବହୁ ପ୍ରାଚୀନ କାଳରୁ ବାଲେଶ୍ୱର ବୈଦେଶିକ ଜାତିମାନଙ୍କୁ ଆକର୍ଷିତ କରିଆସିଛି । ଆଫ୍‌ଗାନ, ମୋଗଲ ମରହଟ୍ଟା ପର୍ତ୍ତୁଗୀଜ, ଓଲନ୍ଦାଜ, ଦୀନାମାର୍, ଫରାସୀ ଓ ଇଂରେଜମାନଙ୍କ ନିମନ୍ତେ ଏ ଅଞ୍ଚଳ କେନ୍ଦ୍ରବିନ୍ଦୁ ପାଲଟି ଯାଇଛି । ଇତିହାସର ଅନେକ ଅମୂଲ୍ୟ ସ୍ୱାକ୍ଷର ବହନ କରିଥିବା ବାଲେଶ୍ୱର ଆଜି ମଧ୍ୟ ତା'ର ଜୟଯାତ୍ରା ଅବ୍ୟାହତ ରଖିଛି ।

ବାଲେଶ୍ୱର ଭାରତବର୍ଷର ପ୍ରଥମ ସହର ଯେଉଁଠାରେ ଇଂରେଜମାନେ ପ୍ରଥମେ ମୋଗଲ ସମ୍ରାଟଙ୍କଠାରୁ ଅଧିକାର ସୂତ୍ରରେ ପ୍ରାପ୍ତ ହୋଇଥିଲେ । ଭାରତବର୍ଷର କଳଙ୍କିତ ଇତିହାସର ଅୟମାରମ୍ଭ ଏହି ସହରରୁ ହିଁ ଆରମ୍ଭ ହୋଇଥିଲା । ଇଂରେଜମାନେ ବାଲେଶ୍ୱରକୁ ୧୮୦୩ ସେପ୍ଟେମ୍ବର ୨୨ ତାରିଖରେ ଅଧିକାର କଲେ । ଇଂରେଜମାନେ ପ୍ରଥମେ ଅନ୍ୟ ବୈଦେଶିକ ଜାତିମାନଙ୍କ ଭଳି ବ୍ୟବସାୟ ଲକ୍ଷ୍ୟରେ ଭାରତକୁ ଆସିଥିଲେ । ମାତ୍ର ପରେ ସେମାନେ ଏହାର ଶାସକ ବା ବିଧାତା ପାଲଟିଗଲେ । ତେବେ ବାଲେଶ୍ୱର ଏହାର ମୂକସାକ୍ଷୀ ଅଟେ । ଇଂରେଜମାନେ ବାଲେଶ୍ୱରଠାରେ ୧୬୪୨ ଖ୍ରୀଷ୍ଟାବ୍ଦରେ ବାଣିଜ୍ୟକୋଠି ପ୍ରଥମେ ସ୍ଥାପନ କରିଥିବାର ପ୍ରମାଣ ମିଳେ । ତେବେ ୧୬୩୪ରୁ ବାଲେଶ୍ୱରଠାରେ ସେମାନେ ପ୍ରସ୍ତୁତି ଆରମ୍ଭ କରିଥିବା କଥା ହଣ୍ଟରଙ୍କ ଇତିହାସରୁ ଜଣାଯାଏ । 'ପିପିଲି' ବନ୍ଦର ଏବଂ ବାଲେଶ୍ୱରର ବାଣିଜ୍ୟ କୋଠି ହିଁ 'ଇଷ୍ଟ ଇଣ୍ଡିଆ କମ୍ପାନୀ' ମାନଙ୍କର ମନୋବଳକୁ ଦୃଢ କରି ବେଙ୍ଗଲରେ ବିଶାଳ ବାଣିଜ୍ୟର ମୂଳଦୁଆ ପକାଇଥିଲା ରାଲଫ୍ କାର୍ଟରାଇଟ୍ ନାମକ ଜଣେ ସାହେବଙ୍କ ଦ୍ୱାରା ବାଲେଶ୍ୱରରେ ୧୬୩୩ରେ ପ୍ରଥମେ ଇଂରେଜମାନେ କାରଖାନା ବସାଇଥିଲେ । ଏ ମାଟିର ଆକର୍ଷଣ ଏତେ ଥିଲା ଯେ ଇଂରେଜମାନେ ମୋଗଲ ସମ୍ରାଟ୍ ଶାହାଜାହାନ୍‌ଙ୍କଠାରୁ ବାଲେଶ୍ୱରରେ ବାଣିଜ୍ୟ କୋଠି ସ୍ଥାପନ

ନିମନ୍ତେ ଫରମାନ୍ ଆଣିଥିଲେ । ଡକ୍ଟର ଗାବ୍ରାଏଲ ବ୍ରୋଂଟନ୍ ଭାରତ ସମ୍ରାଟ ଶାହାଜାହାନ୍‌ଙ୍କ ଦ୍ୱିତୀୟ କନ୍ୟା ‘ରୋସନାରା’ଙ୍କ ଘୋଡା ‘ଘା’ର ରୋଗରୁ ଆରୋଗ୍ୟ କରାଇଥିବା ହେତୁ ଭାରତ ସମ୍ରାଟ୍‌ଙ୍କଠାରୁ ସେ ନିଜର ଗୋଷ୍ଠୀମାନଙ୍କ ନିମନ୍ତେ ବାଲେଶ୍ୱରଠାରେ ବାଣିଜ୍ୟ କୋଠି ସ୍ଥାପନ ନିମନ୍ତେ ଅନୁମତି ପତ୍ର ଆଣିଥିଲେ । ଏହି ବ୍ୟକ୍ତିଜଣକ ୧୬୪୨ ଖ୍ରୀଷ୍ଟାବ୍ଦରେ ହୋପେୱେଲ୍ ଜାହାଜରେ ଆସି ବାଲେଶ୍ୱରରେ ଅବତରଣ କରିଥିଲେ । ସେତେବେଳେ ମରହଟ୍ଟାମାନଙ୍କ ଦ୍ୱାରା ମଧ୍ୟ ଏମାନଙ୍କ ବାଣିଜ୍ୟ କୋଠିରେ ଥିବା ଲୁଗାକଳ ଆକ୍ରମଣରେ ସମସ୍ୟା ଦେଖାଦେଇଥିଲା । ୧୬୪୮ ଖ୍ରୀଷ୍ଟାବ୍ଦରୁ ୧୭୮୬ ଯାଏଁ ବାଲେଶ୍ୱରରେ ଇଂରେଜମାନଙ୍କ ଦ୍ୱାରା ପ୍ରତିଷ୍ଠିତ ବାଣିଜ୍ୟ କୋଠି ବହୁ ଘାତ ପ୍ରତିଘାତ ମଧ୍ୟଦେଇ ଗତିକରିଥିଲା । ୧୭୮୬ରେ ଇଂରେଜମାନେ ଏହି ବାଣିଜ୍ୟ କୋଠିକୁ ସମ୍ପୂର୍ଣ୍ଣ ବନ୍ଦ କରି ଦେଇଥିଲେ । ୧୮୦୩ ମସିହା ବେଳକୁ ଏ କୋଠିଟି ଗୋଟିଏ ପରିତ୍ୟକ୍ତ ଅଞ୍ଚଳ ଭାବରେ ପରିଣତ ହୋଇଯାଇଥିଲା । ତେବେ ଇଂରେଜମାନଙ୍କ ଦ୍ୱାରା ପ୍ରତିଷ୍ଠିତ ଏ କୋଠି ପରବର୍ତ୍ତୀ ସମୟରେ ‘ଗୋରାକବର’ ଭାବରେ ପରିଚୟ ଲାଭ କରିଛି । ଏଠାରେ ଯେଉଁ ବୈଦେଶିକ ସାହେବମାନେ ବାଲେଶ୍ୱରରେ ବାଣିଜ୍ୟ ଉଦ୍ଦେଶ୍ୟରେ ଆସି ମୃତ ହୋଇଥିଲେ, ସେମାନଙ୍କ ସହିତ ବାଲେଶ୍ୱର ଜିଲ୍ଲାର ପ୍ରଥମ ଇଂରେଜ କଲେକ୍ଟର ରିକେଟ୍ ସାହେବ ଏବଂ ତାଙ୍କ ପତ୍ନୀଙ୍କ ସମାଧି ମଧ୍ୟ ରହିଛି । ପ୍ରଥମ ସମାଧିର ତାରିଖ ୧୬୮୪ ଖ୍ରୀଷ୍ଟାବ୍ଦ ଥିବାବେଳେ ଶେଷ ସମାଧିର ତାରିଖ ୧୮୮୬ ବୋଲି ଲେଖା ଅଛି । ଦୀର୍ଘ ୨୦୨ ବର୍ଷରେ ମୃତ ଇଂରେଜମାନଙ୍କ ସମାଧି ସ୍ମାରକୀ ଗୋରାକବରଖାନା ଭାବରେ ଅଦ୍ୟାପି ବିଦ୍ୟମାନ ।

### ସ୍ୱାଧୀନତା ନିମନ୍ତେ ପ୍ରାକ୍ ପ୍ରସ୍ତୁତି

ଇଂରେଜ ଶାସନର ‘କଳାରାଜତ୍ୱ’ ତତ୍କାଳୀନ ବାଲେଶ୍ୱର ଅଞ୍ଚଳରେ ଆଲୋଡନ ସୃଷ୍ଟି କରିଥିଲା । ୧୮୧୭ ଖ୍ରୀଷ୍ଟାବ୍ଦର ପାଇକ ବିଦ୍ରୋହ ଏବଂ ନୀଳଗିରି ଓ କପ୍ତିପଦାର ପ୍ରଜାମଣ୍ଡଳ ଆନ୍ଦୋଳନ ବାଲେଶ୍ୱର ସହରର ବୁଦ୍ଧିଜୀବୀମାନଙ୍କୁ ସଂଗଠିତ କରିବାରେ ସକ୍ଷମ ହୋଇପାରିଥିଲା । ସାଧାରଣ ଜନତାଙ୍କଠାରେ ରାଜନୈତିକ ସଚେତନତା ପ୍ରଚାର ଅଭାବରୁ କ୍ଷୀଣ ଥିବାର ଜଣାଯାଏ । ତେବେ ଏହି ସମୟରେ ଗୋଟିଏ ରାଜନୈତିକ ସଂଗଠନ ଭାବରେ ‘ନ୍ୟାସ୍‌ନ୍ୟାଲ୍ ସୋସାଇଟି’ ବାଲେଶ୍ୱରଠାରେ ଗଢିଉଠିଥିଲା ୧୮୭୮ ମସିହାରେ । ଫକୀର ମୋହନ ସେନାପତି, ରାଜା ବୈକୁଣ୍ଠ ନାଥ ଦେ, ଦୈତାରୀ ପ୍ରସାଦ ଦାସ ଏବଂ ହରିଶ୍ଚନ୍ଦ୍ର ସରକାର ଏମାନେ ଥିଲେ ଏହି ସଂଗଠନର ପ୍ରମୁଖ ସଦସ୍ୟ । ଏମାନେ ବାଲେଶ୍ୱରର ଉନ୍ନତି ସହିତ ରାଜ୍ୟର ସାମାଜିକ ତଥା ରାଜନୈତିକ ସମସ୍ୟାଗୁଡିକ ବିଷୟରେ ବିଭିନ୍ନ ସମୟରେ ଆଲୋଚନା କରି କମ୍ପାନୀ ସରକାରଙ୍କ ନିକଟରେ ଉପସ୍ଥାପନ କରୁଥିଲେ । ସମ୍ଭବତଃ ସେଥିନିମିତ୍ତ ଫକୀର ମୋହନ ସେନାପତିଙ୍କର ଗୋରା ସାହେବମାନଙ୍କ ନିକଟରେ ଅବାଧ ପ୍ରବେଶ ଥିଲା ଏବଂ ସମ୍ପର୍କ ମଧ୍ୟ ଉତ୍ତମ ଥିଲା । ୧୮୮୫ ମସିହାରେ ଯେତେବେଳେ ‘ଭାରତୀୟ ଜାତୀୟ କଂଗ୍ରେସ ପ୍ରତିଷ୍ଠା ହେଲା, ସେତେବେଳେ ଏହି ନ୍ୟାସ୍‌ନାଲ୍ ସୋସାଇଟି’ ଚଳଚଞ୍ଚଳ ହୋଇ ସ୍ୱାଧୀନତା ଆନ୍ଦୋଳନ ନିମନ୍ତେ ପ୍ରସ୍ତୁତ କରାଇବାକୁ ଲାଗିଲା । ଜାତୀୟ କଂଗ୍ରେସର ପ୍ରଥମ ଅଧିବେଶନ ବମ୍ବେଠାରେ ଅନୁଷ୍ଠିତ ହୋଇଥିଲା । ଏଥିରେ ବାଲେଶ୍ୱରର ‘ନ୍ୟାସ୍‌ନାଲ୍ ସୋସାଇଟି’ରୁ କୌଣସି ସଦସ୍ୟ ଯୋଗ ଦେଇ ପାରିନଥିଲେ । ମାତ୍ର କଲିକତାଠାରେ ଯେଉଁ ଦ୍ୱିତୀୟ ଅଧିବେଶନ ଅନୁଷ୍ଠିତ ହେଲା ସେଥିରେ ନୂତନ ଭାବରେ ବଛାଯାଇଥିବା ତିନିଜଣ ସଦସ୍ୟ ରାଜା ବୈକୁଣ୍ଠ ନାଥ ଦେ, ଭଗବାନ ଚନ୍ଦ୍ର ଦାସ ଏବଂ ରମେଶ ଚନ୍ଦ୍ର ମଣ୍ଡଳ କଲିକତାର କଂଗ୍ରେସ ସମ୍ମିଳନୀରେ ଭାଗନେଇଥିଲେ । ଏହିମାନେ ହିଁ ବାଲେଶ୍ୱରରେ ‘ଭାରତୀୟ ଜାତୀୟ କଂଗ୍ରେସ’ର ଚିନ୍ତାଧାରାକୁ ସର୍ବସାଧାରଣଙ୍କଠାରେ ପହଞ୍ଚାଇ ଜାଗରଣ ସୃଷ୍ଟି କରିବାକୁ ଚେଷ୍ଟାକଲେ । ଏମାନଙ୍କ ସହିତ ଅବ୍‌ଦୁଲ୍ ଶୋଭାନ୍ ଖାଁ, ହରେନ୍ଦ୍ର ନାରାୟଣ ରାୟ ମହାଶୟ, ଲଳିତ ମୋହନ ସରକାର, ଫକୀର ମୋହନ ସେନାପତି, ବୀରେନ୍ଦ୍ର କୁମାର ମଣ୍ଡଳ, ଉପେନ୍ଦ୍ର ଚନ୍ଦ୍ର ରାୟ, ଭାଗବତ ପ୍ରସାଦ ମହାପାତ୍ର ରାଧାଶ୍ୟାମ ଦାସ ପ୍ରଭୃତି କଂଗ୍ରେସ ଅଧିବେଶନରେ ବାରମ୍ବାର ଯୋଗଦାନ କରିଥିବା କଥା ପ୍ରମାଣ ରହିଛି । କଂଗ୍ରେସର ବାର୍ତ୍ତା ଏହି ବିଜ୍ଞ ବୁଦ୍ଧିଜୀବୀମାନେ ସାଧାରଣ ଜନତା, କବି ଓ ଲେଖକ ତଥା ଜମିମାଲିକମାନଙ୍କୁ ଜଣାଉ ଥିଲେ । ସ୍ୱାଧୀନତା ନିମନ୍ତେ ଯେଉଁ ନବଜାଗରଣର ଆବଶ୍ୟକତା ଥିଲା ଏବଂ କଂଗ୍ରେସର ଚେତନାକୁ ଆହୁରି

ଦୀପ୍ତିମାନ କରିବା ସକାଶେ ଏମାନଙ୍କ ଭୂମିକା ଥିଲା ପ୍ରଶଂସନୀୟ । ବାଲେଶ୍ୱର ଏ ଦିଗରେ ଯଥେଷ୍ଟ ଭୂମିକା ଗ୍ରହଣ କରିଥିଲା ।

**ବାଲେଶ୍ୱରରେ ସ୍ୱଦେଶୀ ଆନ୍ଦୋଳନ**

ଏ ପ୍ରବନ୍ଧର ପ୍ରାରମ୍ଭରୁ ଗୋଟିଏ କଥା ସ୍ପଷ୍ଟ କରାଯାଇଛି ଯେ ଇଂରେଜମାନେ ୧୭୪୨ରୁ ବ୍ୟବସାୟ ନିମନ୍ତେ ଏଠାରେ ଯେଉଁ ମିଲ୍ ସ୍ଥାପନ କରିଥିଲେ, ସେଥିରେ ଯେତିକି ପରିମାଣରେ ଉତ୍ପାଦନ ହେଉଥିଲା ତା'ଠାରୁ ବେଶୀ ବିଦେଶରୁ ଆମଦାନୀ ହେଉଥିଲା । ଏପରି ଭାରତର ମାଟିପାତ୍ର ଲୁଣ ଆଦି ବିଦେଶକୁ ପ୍ରେରଣ କରି ପୁଣି ଏଠାରେ ଆମଦାନୀ କରାଯାଉଥିବା ବସ୍ତୁକୁ ବିକ୍ରି କରୁଥିଲେ । ତା' ମଧ୍ୟରେ ଲୁଣ ଥିଲା ପ୍ରଧାନ । ବଙ୍ଗଭଙ୍ଗ ପରେ ବାଲେଶ୍ୱରର ବୁଦ୍ଧିଜୀବୀ ମହଲରେ ଗୋଟିଏ ଅସନ୍ତୋଷ ଦେଖାଦେଲା । ବାଲେଶ୍ୱର, ଭଦ୍ରକ ଓ ଜଳେଶ୍ୱରଠାରେ ଏ ବିଷୟରେ ସାଧାରଣ ସଭା ଅନୁଷ୍ଠିତ ହେଲା ଏବଂ ଏଥିରେ ପ୍ରସ୍ତାବ ଗୃହୀତ ହେଲା ଯେ ଇଂରେଜମାନଙ୍କ ଦ୍ୱାରା ବିକ୍ରି କରାଯାଉଥିବା 'ଲିଭରପୁଲ୍' ଲୁଣ କେହି କିଣିବେ ନାହିଁ କିମ୍ବା ମାଞ୍ଚେଷ୍ଟର ଲୁଗା କେହି ପିନ୍ଧିବେ ନାହିଁ । ବାରବାଟୀ ସ୍କୁଲ ପରିସରରେ ଫକୀର ମୋହନ ସେନାପତିଙ୍କ ସଭାପତିତ୍ୱରେ କରୁଣାକର ସାହୁ, ଦୈତାରୀ ପ୍ରସାଦ ଦାସ ଇତ୍ୟାଦି ଯୋଗଦେଇ ସ୍ୱଦେଶୀ ବସ୍ତୁ ଗ୍ରହଣ ଏବଂ ବିଦେଶୀ ବସ୍ତୁ ପରିତ୍ୟାଗ ନିମନ୍ତେ ସାଧାରଣ ଜନତାଙ୍କୁ ପ୍ରବର୍ତ୍ତାଇ ଥିଲେ । ଏପରିକି ସଂକୀର୍ତ୍ତନ ମଣ୍ଡଳୀମାନଙ୍କ ଦ୍ୱାରା ଗାଁ ଗାଁରେ ଏହି ସ୍ୱଦେଶୀ ଆନ୍ଦୋଳନର ବାର୍ତ୍ତା ଏମାନେ ପହଞ୍ଚାଇବାକୁ ଚେଷ୍ଟା କରିଥିଲେ । ୧୬ ଅକ୍ଟୋବର ୧୯୦୫ରେ ରାକ୍ଷୀ ପୂର୍ଣ୍ଣିମାରେ ରାକ୍ଷୀ ବାନ୍ଧି ସ୍ୱଦେଶୀ ବାର୍ତ୍ତା ମଧ୍ୟ ପହଞ୍ଚାଇବାକୁ ଏମାନେ ଚେଷ୍ଟା କରିଥିଲେ । ସାଧାରଣ ଲୋକମାନେ କିପରି ମାଞ୍ଚେଷ୍ଟର ଲୁଗା ଓ ଲିଭର୍‌ପୁଲ ଲୁଣର ବ୍ୟବହାର କରୁଥିଲେ ତାକୁ ବ୍ୟଙ୍ଗାତ୍ମକ ଭଙ୍ଗୀରେ ଫକୀର ମୋହନ ବର୍ଣ୍ଣନା କରିଛନ୍ତି–

ଉତ୍କଳ ବସନେ ଆବୃତ ଯତନେ
ଥିଲେ ୟୁରୋପ ଲଳନା
ଏବେ ତୋ ସନ୍ତାନେ କରିଛନ୍ତି ଧ୍ୟାନେ
ମାଞ୍ଚେଷ୍ଟରୁ ଖଣ୍ଡେ କନା ।
ଓଳିତଳେ ଲୁଣ କୋଟିଏ ମହଣ
ଥାଉ ମୋହ କଥା ଶୁଣ
ବୋଇଲେ କିହେବ ଖାଇବାକୁ ହେବ
ଲିଭରପୁଲର ଲୁଣ ।
ମାଞ୍ଚେଷ୍ଟର ତନ୍ତୀ ଲୁଗା ବୁଣୁଛନ୍ତି
ତୁମ୍ଭମାନଙ୍କ ସକାଶେ ।
ବୁଡୁ ତନ୍ତୀ ବଂଶ ହେଉ ସର୍ବନାଶ
ଯାଉନ୍ତୁ ସେ ବନବାସେ ।
ସ୍ୱ ଦେଶର ଶିଳ୍ପ ସବୁ ଅଳ୍ପ ଅଳ୍ପ
ଦେଖୁଛ ଯାଉଛି ବୁଡି
ଦେଖୁନାହଁ ଭାଳି ସରୁଛି ସଞ୍ଚାଳି
ଶୋଇଛି ମାଠଟି ଘୋଡି ।

**ସହାୟକ ଗ୍ରନ୍ଥସୂଚୀ**


୧) ଦାର୍ଶନିକ ବଳଦେବ ବିଦ୍ୟାଭୂଷଣ ପ୍ରବନ୍ଧ ସଂକଳକ, ପୃଷ୍ଠା–୩୧, ସଂକଳକ–ଭାଗବତପ୍ରସାଦ ଦାସ, ରେମୁଣା ସାହିତ୍ୟ ସଂସଦ, ରେମୁଣା

୨) An out line of Political History of Orissa- Dr Kishori Mohan Patra

୩) Hunter's History of Orissa-

୪) O' Malley- L.S.S-Bengal District Gezetteer (Balasore) calcutta-1907),

୫) History of Orissa- H.K. Mahatab

୬) The Early Annals of the English in Bengal- Vol-I. C.R.Wilson

୭) ଫକୀର ମୋହନ ଗ୍ରନ୍ଥାବଳୀ ୨ୟ ଖଣ୍ଡ

୮) ଓଡ଼ିଆ ଆନ୍ଦୋଳନର ଇତିହାସ– ପଣ୍ଡିତ ବାଇକୋଳି ମହାପାତ୍ର । ଗୋପବନ୍ଧୁ ପ୍ରଚାରସମିତି, କଟକ

୯) History of Orissa- R.D. Benerji Vol-II- Calcutta-1931.

୧୦) ସମୟ ସ୍ରୋତରେ ବାଲେଶ୍ୱର– ସଂକଳକ– ଡକ୍ଟର ମନ୍ମଥ ପ୍ରଧାନ ।



ଅଧ୍ୟାପକ
ପ୍ରାଣନାଥ ସ୍ୱୟଂଶାସିତ ମହାବିଦ୍ୟାଳୟ, ଖୋର୍ଦ୍ଧା

# ଲୋକ ସଂସ୍କୃତି ବନାମ ଲୋକ ସାହିତ୍ୟ

ଡକ୍ଟର ସଙ୍ଘମିତ୍ରା ଭଞ୍ଜ

ବୈଶିଷ୍ଟ୍ୟପୂର୍ଣ୍ଣ ଜୀବନଶୈଳୀରୁ ସଂସ୍କାରର ସୃଷ୍ଟି। ସଂସ୍କାର ବ୍ୟକ୍ତିକ ଜୀବନଯୁକ୍ତ ହେବା ସହିତ ଗଣାଭିମୁଖୀ ହୋଇ ଅସ୍ଥି–ମଜ୍ଜାଗତ ହେଲେ ସଂସ୍କୃତିରେ ପରିଣତ ହୋଇଥାଏ। ପ୍ରାଚୀନ ଗୋଷ୍ଠୀଭୁତ ଜୀବନବୋଧର ନିଦର୍ଶନ ବହନ କରେ ସଂସ୍କୃତି। ପୁରୁଷାନୁକ୍ରମିକ ଜୀବନଧାରା ତଥା ଅନୁଭବସିଦ୍ଧ ଅବଧାରଣାର ଏକ ସ୍ୱୟଂସ୍ନିଗ୍ଧ ରୂପ ହେଉଛି ସଂସ୍କୃତି। ସଂସ୍କୃତି ଏକ ନିର୍ଦ୍ଦିଷ୍ଟ ଭୂଖଣ୍ଡସ୍ଥ ଗୋଟିଏ ସମୃଦ୍ଧ ଜାତିର, ସ୍ୱକ୍ଷ୍ମ ମୂଲ୍ୟବୋଧର ପରିଚାୟକ ଏବଂ ଏହା ସଂଚରଣଶୀଳ। ସଭ୍ୟତାର ଅନାହତ ସ୍ରୋତରେ ମଣି–ମୁକ୍ତାତୁଲ୍ୟ ସାଉଁଟିଥିବା ଅଜସ୍ର ଭାବାତ୍ମକ ଆବେଗ, ଲୌକିକ ଦୃଷ୍ଟିକୋଣ, ସାମାଜିକ କ୍ରିୟାକଳାପ, ଧର୍ମୀୟ ବିଶ୍ୱାସ, ଦାର୍ଶନିକ ଉଚ୍ଛ୍ୱାସ, କିମ୍ବଦନ୍ତୀ, ପୁରାଣ, ଇତିହାସ, ସାହିତ୍ୟ, ଜନଶ୍ରୁତି ତଥା ନୈତିକ ଅବବୋଧର ଏକ ବିଚ୍ଛୁରିତ–ସମୁଜ୍ଜ୍ୱଳ ରୂପ ହେଉଛି ସଂସ୍କୃତି। ଏହା ଚିରନ୍ତନ–ଶାଶ୍ୱତ ଓ ଅଖଣ୍ଡ। ପ୍ରତ୍ୟେକ ଦେଶର ଏକ ନିର୍ଦ୍ଦିଷ୍ଟ ସାଂସ୍କୃତିକ ପୃଷ୍ଠଭୂମି ରହିଛି। ଗ୍ରୀକ୍ ଓ ରୋମ୍ ସଭ୍ୟତାର ପ୍ରତିଷ୍ଠାର ପଶ୍ଚାତ୍‌ଭାଗରେ ତା'ର ସମୃଦ୍ଧ ସାଂସ୍କୃତିକ ଅବବୋଧ ଓ ବଳିଷ୍ଠ ସାହିତ୍ୟିକ ବାତାବରଣ ପ୍ରମୁଖ ଥିଲା । ତେବେ, 'ଲୋକ' କହିଲେ ସମାଜକୁ ବୁଝାଏ ତେଣୁ ସମାଜନିଷ୍ଠ ମୂଲ୍ୟବୋଧ ହିଁ ଲୋକସଂସ୍କୃତିର ମାନ ନିର୍ଦ୍ଧାରଣ କରେ। ସଂସ୍କୃତିସମ୍ପନ୍ନ ଭାରତୀୟ ପରମ୍ପରାରେ ଓଡ଼ିଶା ଏକ ସ୍ୱତନ୍ତ୍ର–ଶ୍ରେଷ୍ଠ ରାଜ୍ୟ। କଳା, ନୃତ୍ୟ, ସଂଗୀତ, ଭାସ୍କର୍ଯ୍ୟ, ଧର୍ମ, ରୀତି–ନୀତି–ଚଳଣିର ଅନନ୍ୟ ସମାହାର, ଗନ୍ତାଘର ଏବଂ ଅକ୍ଷୟ ଭଣ୍ଡାର ହେଉଛି ଉତ୍କଳୀୟ ଲୋକସଂସ୍କୃତି ଏବଂ ସାହିତ୍ୟ ହିଁ ସଂସ୍କୃତିର ଇସ୍ତାହାର। 'ଲୋକସଂସ୍କୃତି'କୁ ଇଂରାଜୀ 'ଫୋକ୍‌ଲୋର୍'ର ପାରିଭାଷିକ ଶବ୍ଦ ଭାବରେ ଗ୍ରହଣ କରାଯାଏ। ୧୮୪୬ ଖ୍ରୀ.ରେ W.J. Thoms ଏହି ଫୋକ୍‌ଲୋର ଶବ୍ଦଟିକୁ ପ୍ରୟୋଗ କରିଥିଲେ, ଯାହାର ଆକ୍ଷରିକ ଅର୍ଥ ହେଉଛି 'ଲୋକଜ୍ଞାନ'। ପରବର୍ତ୍ତୀ ପର୍ଯ୍ୟାୟରେ ଲୋକଯାନ, ଲୋକବିଦ୍ୟା, ଲୋକବିଜ୍ଞାନ, ଲୋକଚର୍ଯ୍ୟା, ଗ୍ରାମ ସାହିତ୍ୟ ଇତ୍ୟାଦି ପ୍ରତିଶବ୍ଦ ଦ୍ୱାରା 'ଲୋକସଂସ୍କୃତି' ଚିହ୍ନିତ ହୋଇଛି। ସମାଜ ବ୍ୟତିରେକ ଲୋକସଂସ୍କୃତି ପ୍ରଭାବହୀନ। ଲଣ୍ଡନର ଫୋକ୍‌ଲୋର୍ ସୋସାଇଟି ଗୋଟିଏ ଉନ୍ନତ ସମାଜର ଅନଗ୍ରସର ବା ଅନୁନ୍ନତ ଜନଗୋଷ୍ଠୀକୁ ଲୋକସମାଜ ଭାବରେ ସ୍ୱୀକାର କରିଛି।

ଆଲୋଚକ ଡଃ ସୁନୀତି କୁମାର ଚଟ୍ଟୋପାଧ୍ୟାୟଙ୍କ 'ଲୋକଯାନ', ରମା ପ୍ରସାଦ ଚାନ୍ଦଙ୍କ 'ଲୋକବିଦ୍ୟା', ଡଃ ମହମ୍ମଦ ଶହୀଦୁଲ୍ଲାଙ୍କ 'ଲୋକବିଜ୍ଞାନ', ଡଃ ସୁକୁମାର ସେନ୍‌ଙ୍କ 'ଲୋକଚର୍ଯ୍ୟା' ତଥା ରାମ ନରେଶ ତ୍ରିପାଠୀଙ୍କ 'ଗ୍ରାମ ସାହିତ୍ୟ' ଭାବରେ ଅଭିହିତ କରିଥିବାବେଳେ ଲୋକରତ୍ନ ଡଃ କୁଞ୍ଜବିହାରୀ ଦାଶ 'ଲୋକକୃତି', ବହୁଜନାକୃତି (କୀର୍ତ୍ତି) ଡଃ ଭାବଗ୍ରାହୀ ମିଶ୍ର 'ଲୋକବିଦ୍ୟା', ଡଃ ପ୍ରସନ୍ନ କୁମାର ମିଶ୍ର 'ଲୋକତତ୍ତ୍ୱ' ଏବଂ ଡଃ କୁମୁଦ ରଞ୍ଜନ ପାଣିଗ୍ରାହୀ 'ଲୋକଧାରା' ଭାବରେ ଗ୍ରହଣ କରିଛନ୍ତି। ଲୋକମୁଖରୁ ଲୋକମୁଖକୁ ଗତିଶୀଳ ହେଲାବେଳେ ଲୋକ ସଂସ୍କୃତି ପୌରାଣିକ କଥାବସ୍ତୁ ଏବଂ ସାମାଜିକ ରୀତି ନୀତି ଆଦି ବିଶ୍ୱାସ ଏବଂ ଅତ୍ୟନ୍ତ ବ୍ୟାପକ ଭାବଧର୍ମକୁ ନେଇ ପରିପୁଷ୍ଟ ହୁଏ। ତେଣୁ ଲୋକସଂସ୍କୃତିକୁ ସଂଜ୍ଞାୟିତ କଲାବେଳେ ଆହୁରି କିଛି ବାକି ରହିଯିବା ପରି ମନେହୁଏ। ଏହି ପରିପ୍ରେକ୍ଷୀରେ କିଛି ବିଶିଷ୍ଟ ଆଲୋଚକଙ୍କ ମତକୁ ସ୍ୱୀକାର କରାଯାଇପାରେ। ଆର୍ଚରଟେଲ୍‌ରଙ୍କ ମତରେ – ଲୋକ ସଂସ୍କୃତି ମୌଖିକ ରୀତି, ପ୍ରଥା, ଚଳଣି, ଗୀତ,

ନାଁଦିଆ, ପାରମ୍ପରିକ ଯନ୍ତ୍ରପାତି, ବ୍ୟାବହାରିକ ବସ୍ତୁ, ପାରମ୍ପରିକ ପଦ୍ଧତି, ପାରମ୍ପରିକ ବିଶ୍ୱାସ ହୋଇପାରେ । ଜୋନ୍ସ ବେଲିସ୍‌ଙ୍କ ମତରେ– ଆଦିମ ଓ ସଭ୍ୟ ଜାତିର ପାରମ୍ପରିକ ସୃଷ୍ଟି ହିଁ ଲୋକସଂସ୍କୃତି । ଆମେରିକୀୟ ଆଲୋଚକ Alan Dundesଙ୍କ ମତରେ – ମିଥ୍ କିମ୍ବଦନ୍ତୀ, ଲୋକଗଳ୍ପ, ଥଟ୍ଟା ତାମସା ପ୍ରବଚନ, ଢଗଢମାଳି, ପ୍ରାର୍ଥନାଗୀତ, ମନ୍ତ୍ର, ଆଶୀର୍ବାଦୋକ୍ତି, ଅଭିଶାପୋକ୍ତି, ସଂକଳ୍ପବଚନ, ଅପମାନୋକ୍ତି, ପ୍ରତିବାଦୋକ୍ତି, ବିଦ୍ରୂପୋକ୍ତି, କଲ୍ୟାଣୋତ୍ସବକାଳୀନ ଉକ୍ତି, ଛଳୋକ୍ତି, ବିନୟବାଚକ ଉକ୍ତି ଲୋକତତ୍ତ୍ୱର ଅନ୍ତର୍ଗତ ।

ମାକ୍ ଏଡ୍‌ୱାର୍ଡ ଲଚଙ୍କ ମତରେ – ବିଭିନ୍ନ ପ୍ରଥା, ବିଶ୍ୱାସ, ଚଳଣି, କାହାଣୀ, ଯାଦୁ, ପ୍ରବାଦ – ପ୍ରବଚନ ଓ ଗୀତକୁ ଏହା ଚିହ୍ନିତ କରାଏ । ତେବେ ଲଣ୍ଡନ୍‌ର ଫୋକ୍‌ଲୋର୍ ସୋସାଇଟି ଦ୍ୱାରା ଲୋକ ଉପାଦାନର ଦୀର୍ଘ ତାଲିକା ଭିତରେ ରହିଛି – ଅନଗ୍ରସର ଶ୍ରେଣୀର ପାରମ୍ପରିକ ଅନୁଷ୍ଠାନ, ସାମାଜିକ ପ୍ରଥା, ବିଶ୍ୱାସ, କଳା, କାହାଣୀ, ଗୀତ ଓ ଲୋକୋକ୍ତି, ଲୋକବିଶ୍ୱାସ, ଲୋକଚଳଣି, ଅତିପ୍ରାକୃତ ଜଗତ, ତା' ପ୍ରତି ମଣିଷର ପ୍ରତିକ୍ରିୟା ସମ୍ପର୍କିତ, ଯାଦୁ ଓ ଡାହାଣୀ ବିଦ୍ୟା, ଭୂତ ପ୍ରେତ ଓ ପରୀ ବିଷୟକ, କୁହୁକ, ମନ୍ତ୍ର କବଚ, ଭାଗ୍ୟ ଓ ଶକୁନ ବିଷୟକ, ରୋଗ ଓ ମୃତ୍ୟୁ ବିଷୟକ, ବିବାହ, ଉତ୍ତରାଧିକାର, ଶୈଶବ, ବୟଃପ୍ରାପ୍ତି, ମୃତ୍ୟୁ, ଶବସତ୍କାର, ବିଭିନ୍ନ ଉତ୍ସବ, ଯୁଦ୍ଧବିଗ୍ରହ, ଶିକାର, ମାଛଧରା, ଗୋପାଳନ, ଚାଷ ଆଦି ସହ ଜଡ଼ିତ ବିଭିନ୍ନ ପ୍ରଥା ଓ କ୍ରିୟାକର୍ମ ମଧ୍ୟ ଏହାର ଅନ୍ତର୍ଗତ । କେବଳ ଲୋକଙ୍କ ସ୍ମୃତିରେ ଗଢି ଆସୁଥିଲେ ହେଁ ଏଗୁଡିକ ଲୋକସଂସ୍କୃତିର ଅନ୍ତର୍ଗତ ହେବ ।

ଲୋକ ସାହିତ୍ୟବିତ୍ ଆଲାନ୍ ଡାଣ୍ଡିଜ୍‌ଙ୍କ ମତରେ, 'ଲୋକସଂସ୍କୃତି ସବୁ ସମୟରେ, ସବୁ ସମାଜରେ ଓ ଶିକ୍ଷିତ– ଅଶିକ୍ଷିତ ସମସ୍ତ ବ୍ୟକ୍ତିଙ୍କ ମଧ୍ୟରେ ରହିଛି । କବି ପ୍ରତିଭା ଶତପଥିଙ୍କ ମତରେ ଏହା ଗାଁର, ଦାଣ୍ଡର, ହାଣ୍ଡିଶାଳର, କୁଡ଼ିଆର ସାହିତ୍ୟ । କଥିତ ଲୋକସଂସ୍କୃତି ହିଁ ଲୋକ ସାହିତ୍ୟ, କାନ ବାଟେ କଥାଚାଲେ ଏହାର ଶୈଳୀ ଏବଂ ଆବେଗଧର୍ମୀ ଅଭିବ୍ୟକ୍ତି ଏହାର ମୂଳମନ୍ତ୍ର ।'

ନୃତତ୍ତ୍ୱବିତ୍ ବାସ୍‌କମ୍ ଲୋକସାହିତ୍ୟକୁ 'ଲୋକସଂସ୍କୃତି' ଅର୍ଥରେ ଗ୍ରହଣ କରି ଭର୍ବାଲ୍ ଆର୍ଟ (verbal art) ଭାବେ ନାମିତ କରିଛନ୍ତି । ଯେଉଁଥିରେ ସାହିତ୍ୟ, ନୃତ୍ୟ, ସଂଗୀତ, ପୁରାଣ, ଇତିହାସ, ଢଗ, ଛଟା, ମନ୍ତ୍ରଗୀତ, ଉତ୍ସବସଂଗୀତ, କ୍ରୀଡ଼ାଗୀତ, ନୀତିବୋଧକ ଗୀତ, ପ୍ରବାଦ ପ୍ରବଚନ, କାନ୍ଦଣା, କୌତୁକଗୀତ ଏବଂ ପଲ୍ଲୀ କାହାଣୀ ଇତ୍ୟାଦି ଅନ୍ତର୍ଭୁକ୍ତ ।

'ଦି ଫୋକ୍‌ଲୋର ଇନ୍‌ଷ୍ଟିଚ୍ୟୁଟ ଅଫ୍ ଆମେରିକାରେ କାହାଣୀ ଗୀତ ଓ ନୃତ୍ୟକୁ ଲୋକ ସଂସ୍କୃତିର ପ୍ରମୁଖ ରୂପ ଭାବରେ ଗ୍ରହଣ କରାଯାଇଛି ।' ଲୋକ ସଂସ୍କୃତିର ପ୍ରମୁଖ ଉଦ୍ଦେଶ୍ୟ ଆନନ୍ଦପ୍ରଦାନ, ସାମାଜିକ ମୂଲ୍ୟବୋଧର ସ୍ଥାପନା, ସଂସ୍କାର ଓ ସଂଶୋଧନ ସହିତ ନୈତିକ ଆଦର୍ଶବୋଧର ପ୍ରତିଷ୍ଠା ଏବଂ ମାନବ ଜୀବନରେ ଶୈକ୍ଷିକ ଦୃଷ୍ଟିକୋଣ ଉପସ୍ଥାପନା । ଓଡ଼ିଶା ଏକ ସଂସ୍କୃତିସମ୍ପନ୍ନ ରାଜ୍ୟ ଏବଂ ଓଡ଼ିଆ ସାହିତ୍ୟ ଓଡିଶାର ସାମାଜିକ–ସଂସ୍କୃତିର ବିଶ୍ୱସ୍ତ ବାର୍ତ୍ତାବହ । ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଶବ୍ଦରେ–

ସେଇ ଭାଲୋ ପ୍ରତିଯୁଗ ଆନେନା ଆପ୍‌ନା ଅବସାନ୍
ସଂପୂର୍ଣ୍ଣ କରେନା ତା'ର ଗାନ୍
ଅତୃପ୍ତିର ଦୀର୍ଘଶ୍ୱାସ ରେଖେ ଦିୟେ ଯାୟ ସେ ବତାସେ
ତାଇ ଯେବେ ପରଯୁଗ ବଂଶୀର ଉଚ୍ଛ୍ୱାସେ
ବେଜେ ଉଠେ ଗାନ ଖାନି ।

ପ୍ରତ୍ୟେକ ଯୁଗର ସାଧନାର ଅପୂର୍ଣ୍ଣତା ପରବର୍ତ୍ତୀ ଯୁଗର ସାଧନାକୁ ଅପେକ୍ଷା ରଖେ । ଖ୍ରୀ. ଦଶମ ଶତାବ୍ଦୀର ପ୍ରଥମାର୍ଦ୍ଧଠାରୁ ୧୫ଶ ପ୍ରଥମାର୍ଦ୍ଧ ଯାଏଁ ସାରଳାଯୁଗର ବ୍ୟାପ୍ତି । ସାରଳା ଦାସଙ୍କ ପୂର୍ବରୁ ଅର୍ଥାତ୍ ଲିପି ଆବିଷ୍କାର ପୂର୍ବରୁ ମଧ୍ୟ ଲୋକଗୀତର ପ୍ରଚୁର ପ୍ରଚଳନର ପ୍ରମାଣ ମିଳେ । ଯଦି ସେପରି ନହୋଇଥାନ୍ତା, ତେବେ ସାରଳାଙ୍କ ସାହିତ୍ୟରେ ଏତାଦୃଶ ସାମାଜିକ–ସାଂସ୍କୃତିକ ଚେତନାର ପରିବେଷଣ କେବଳ କାଳ୍ପନିକ ଅବତାରଣା ମାତ୍ର ହୋଇଥାନ୍ତା । ନିଶ୍ଚିତ ଭାବରେ ତାଙ୍କ ବହୁପୂର୍ବରୁ ଶକ୍ତିଶାଳୀ ପରିବ୍ୟାପ୍ତ ଏକ ସାଂସ୍କୃତିକ ପଟ୍ଟଭୂମିଟିଏ ରହିଥିଲା, ଯାହା ସ୍ରୋତସ୍ୱତୀତୁଲ୍ୟ ଅନାଦି କାଳରୁ ପ୍ରବହମାନ ହୋଇଆସିଅଛି । ତାହା ଥିଲା କଥିତ ଲୋକ ପରମ୍ପରାଶ୍ରୟୀ 'ଲୋକସାହିତ୍ୟ', ଯାହା ଲୋକବେଦ ଭାବରେ ଅଭିହିତ । ଏହି ପରମ୍ପରା ହିଁ ସାରଳା ଦାସଙ୍କ 'ମହାଭାରତ' ଭଳି ବିଦଗ୍ଧ ସାହିତ୍ୟସୃଷ୍ଟିର ପ୍ରେରଣା ଉତ୍ସ ।

ସପ୍ତମ– ଅଷ୍ଟମ ଶତାବ୍ଦୀରୁ ଏକାଦଶ ଶତାବ୍ଦୀ ମଧ୍ୟରେ ରଚିତ ଚଉରାଅଶୀ ସିଦ୍ଧାଚାର୍ଯ୍ୟମାନଙ୍କ 'ଚର୍ଯ୍ୟାଗୀତି'କୁ ପୂର୍ବ ଭାରତୀୟ ଭାଷା – ସାହିତ୍ୟର ପ୍ରାଚୀନ ଅଭିବ୍ୟକ୍ତି ରୂପେ ସ୍ୱୀକାର କରାଯାଇଥିଲେ ହେଁ କେବଳ ଭାଷା ଦୃଷ୍ଟିରୁ ନୁହେଁ ସାଂସ୍କୃତିକ ଦୃଷ୍ଟିକୋଣରୁ ମଧ୍ୟ ତାହା ଓଡ଼ିଆ ସାହିତ୍ୟର ଆଦିମତମ ନିଦର୍ଶନ ଭାବରେ ଗୃହୀତ। ଏଥିରେ ଆଦିବାସୀ ସଂସ୍କୃତିର ଜୀବନ୍ତ ରୂପ ପ୍ରତିଭାତ ହୋଇଛି ଏବଂ ଏହା ଯଥାର୍ଥତଃ ଓଡିଆ ସଂସ୍କୃତିର ଦିବ୍ୟ–ପ୍ରତିବିମ୍ବ।

ବିଜ୍ଞାନପ୍ରଭାବୀ ନୂତନ ଆଲୋକର ସଂସର୍ଗ ଆଧୁନିକତାର ସୂତ୍ରପାତ କରିଛି। ଅଧୁନା ପ୍ରାଚୀନ ମୂଲ୍ୟବୋଧକୁ ସୁରକ୍ଷା ଦେବାର ପର୍ବାରମ୍ଭ। ଏହି ପ୍ରୟାସରୁ ଲୋକମୁଖ ନିଃସୃତ ପ୍ରତ୍ୟେକଟି ରସମାଧୁରୀକୁ ଲିପିବଦ୍ଧ କରିବାର ଆଭିମୁଖ୍ୟକୁ ନେଇ ଲୋକସାହିତ୍ୟକୁ ମୁଦ୍ରିତ ରୂପ ପ୍ରଦାନ କରାଯାଇଛି। 'ଲୋକସଂସ୍କୃତି' ସାହିତ୍ୟ ପରମ୍ପରାର ସଂଗ୍ରହ ବିଶ୍ଳେଷଣ– ମୂଲ୍ୟାୟନ ଏବଂ ତା'ର ପ୍ରତିଷ୍ଠା ଯେ ଓଡିଶାକୁ ଅଧିକ ବିଶ୍ୱସ୍ତରୀୟ ମର୍ଯ୍ୟାଦା ପ୍ରଦାନ କରିପାରିବ ଏଥିରେ ଦ୍ୱିମତ ନାହିଁ। ଏଭଳି ଆଭିମୁଖ୍ୟକୁ ପାଥେୟ କରି କିଛି ପୁରୋଦୃଷ୍ଟିସଂପନ୍ନ ସାହିତ୍ୟକାର 'ଲୋକସାହିତ୍ୟ'କୁ ଦେଇଛନ୍ତି କଳାତ୍ମକ–ନାନ୍ଦନିକ ରୂପ। ଊନବିଂଶ ଶତାବ୍ଦୀରେ ଜେମ୍ସ ଫ୍ରେଜର୍‌ଙ୍କ Golden Bough.. ଜି.ଇ.ଗ୍ରୋଭର୍‌ଙ୍କ 'ଦକ୍ଷିଣ ଭାରତୀୟ ଲୋକଗୀତ', ଓଡିଶାର ଅଜ୍ଞାତନାମା କରଣ ମହିଳାଙ୍କ 'କଥାଲହରୀ' (୧୯୦୧), କପିଳେଶ୍ୱର ବିଦ୍ୟାଭୂଷଣ ନନ୍ଦଶର୍ମାଙ୍କ ଦ୍ୱାରା ଓଡିଆ ଭାଷାର ସର୍ବପ୍ରଥମ 'ଗାଉଁଲି ଗୀତ' ସଂଗ୍ରହ, ନୀଳମଣି ବିଦ୍ୟାରତ୍ନଙ୍କ ଦ୍ୱାରା ସଂଗୃହୀତ କିଛି ଢଗ ଓ ଶ୍ଳୋକାଂଶ (ଯାହା ୭ ଖଣ୍ଡରେ ଉପଲବ୍ଧ), ରାଧାଚରଣ ମହାପାତ୍ରଙ୍କ 'ଉତ୍କଳ କାହାଣୀ ଦର୍ପଣ' (୧୯୨୧), ଉପେନ୍ଦ୍ରନାରାୟଣ ଦତ୍ତଙ୍କ ଇଂରାଜୀ ଭାଷାରେ ଅନୂଦିତ folk tales of orissa (୧୯୨୩), ଅପର୍ଣ୍ଣା ଦେବୀଙ୍କ, 'ଦଶକୁମାର ଚରିତ', ମହେଶ୍ୱର ମିଶ୍ରଙ୍କ 'ଅବୋଲକରା କାହାଣୀ', ପ୍ରଫୁଲ୍ଲ ଦାସଙ୍କ ଦ୍ୱାଦଶକୁମାର, ଚକ୍ରଧର ମହାପାତ୍ରଙ୍କ 'ଉତ୍କଳ ଗାଉଁଲୀ ଗୀତ ଚୁମ୍ବକ' (୧୯୩୯), ଲକ୍ଷ୍ମୀନାରାୟଣ ସାହୁଙ୍କ 'ଗନ୍ଧର୍ବିକା ଶତଦଳ' (୧୯୪୭), ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଦ୍ୱାରା ସର୍ବପ୍ରଥମ ସର୍ବଜନବୋଧ ଗଦ୍ୟପୁସ୍ତକ 'ଉତ୍କଳ କାହାଣୀ' ଏବଂ ଡଃ କୁଞ୍ଜବିହାରୀ ଦାଶଙ୍କ ଦ୍ୱାରା ଲିଖିତ 'ପଲ୍ଲୀପୁଷ୍ପ' (୧୯୪୮) ଓ 'ପଲ୍ଲୀ ଝରଣା' (୧୯୫୦) ଏବଂ 'ପଲ୍ଲୀ ଗୀତ ସଂଚୟନ' ଇତ୍ୟାଦି ଉଲ୍ଲେଖଯୋଗ୍ୟ ସମୂଳ ଲୋକସାହିତ୍ୟ। ପରବର୍ତ୍ତୀ ପର୍ଯ୍ୟାୟରେ 'ଓଡ଼ିଆ ଲୋକକାହାଣୀ'ର ପ୍ରତିନିଧି ଶ୍ରେଣୀୟ ସଂଗ୍ରାହକ ଭାବେ ଡଃ ଦାଶ ପ୍ରତିଷ୍ଠା ପ୍ରାପ୍ତ ହୋଇଛନ୍ତି। ଲୋକବାଣୀ, ଲୋକଗଳ୍ପ ସଂଚୟନ, ଢଗଢମାଳି ନାମରେ ମଧ୍ୟ ତାଙ୍କର ବହୁ ସଂକଳନ ପ୍ରକାଶ ପାଇଛି। ତେଣୁ ଗୋଟିଏ ଜାତିର ଜୀବନ ନାଟିକାକୁ ଜାଣିବାକୁ ହେଲେ ଏବଂ ତା'ର ଚାହାଣି, ଚଳଣି ଓ ଚମକକୁ ଉପଲବ୍ଧ କରିବାକୁ ହେଲେ, ତା'ର ରୀତି, ନୀତି, ରୁଚି, ଧର୍ମ ଓ ଦର୍ଶନକୁ ଜାଣିବାକୁ ହେଲେ ଲୋକଗୀତ ଓ ଲୋକକାହାଣୀ ଅଧ୍ୟୟନ ଯେ ଏକାନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଏଥିରେ ଦ୍ୱିରୁକ୍ତି ନାହିଁ।

ଡଃ ଡୋର୍‌ସନ୍‌ଙ୍କ ମତରେ – 'ଲୋକସଂସ୍କୃତି ମରିଯାଉଛି', ତେଣୁ ଲୋକସଂସ୍କୃତିକୁ ବଞ୍ଚେଇବାକୁ ହେଲେ ଲୋକସାହିତ୍ୟ ପୁନଃପ୍ରତିଷ୍ଠାର ଆବଶ୍ୟକତା ରହିଛି। ବିଜ୍ଞାନର ଅଗ୍ରଗତି ସତ୍ତ୍ୱେ ଲୋକସଂସ୍କୃତିର ଧାରା ଅବ୍ୟାହତ ରହିଛି। ମଣିଷ ମନରୁ ଯୁଗ ଯୁଗାନ୍ତରର ବଦ୍ଧମୂଳ ଧାରଣାକୁ ପରିବର୍ତ୍ତିତ କରିବା ଅସମ୍ଭବ। ବିଜ୍ଞାନ ଯୁଗରେ ଅନ୍ଧବିଶ୍ୱାସ, ମନ୍ତ୍ର, ତନ୍ତ୍ର, ଗୁଣି, ଗାରେଡିକୁ ଯେତେ ଅମୂଳକ ବୋଲି ଯୁକ୍ତି ଉପସ୍ଥାପିତ କଲେ ହେଁ ତାକୁ ହୃଦୟର ନିଭୃତ କୋଣରୁ ଦୂରେଇ ଦେବା ଅସମ୍ଭବ। ସିନେମା ହଲ୍‌ରେ ପାଠୁଆ ପିଲାମାନେ ସେଇ ନାଗ– ନାଗୁଣୀର ପୂର୍ବଜନ୍ମ–ପରଜନ୍ମ, ପ୍ରେତାତ୍ମାର ଶରୀର ତ୍ୟାଗ ଏବଂ ଅନ୍ୟ ଶରୀରରେ ପ୍ରବେଶ, ପୂର୍ବଜନ୍ମର ଅତୃପ୍ତିକୁ ପୂର୍ଣ୍ଣ କରିବାକୁ ଯାଇ ପରଜନ୍ମରେ ଜାତସ୍ମର ହେବା ବିଶ୍ୱାସ ଭିତରେ ବିଜ୍ଞାନର ଯୌକ୍ତିକ ଆଧାରଟି ଉଭେଇ ଯାଏ।

ମନ୍ଦିରରେ ନଡ଼ିଆ ଭାଙ୍ଗିବାବେଳେ, ନଡ଼ିଆ ପଚା ପଡ଼ିଲେ, ଠାକୁରଙ୍କ ମୁଣ୍ଡରୁ ଫୁଲ ଖସିଲେ, ସ୍ୱପ୍ନରେ ମହାତ୍ମା ଭଳି କେହି କିଛି ନିର୍ଦ୍ଦେଶ କରୁଥିବା ଦେଖିଲେ ମଣିଷ ମନରେ ଭାବାନ୍ତର ସୃଷ୍ଟି ହୁଏ। ବିରାଡ଼ି ବାଟ କାଟିବା, ୧୩ ନମ୍ବରର ଅଶୁଭ ସଂଖ୍ୟାର ପ୍ରଭାବ, ଦକ୍ଷିଣ ଚକ୍ଷୁ ସ୍ଫୁରଣ, ନବନିର୍ମିତ ଗୃହ ପ୍ରବେଶରେ ହୋମ, ନଡ଼ିଆ ଭାଙ୍ଗିବା ପୂଜାପାଠ, ଶିଶୁ ଜନ୍ମରୁ ଦି'ଦାନ୍ତ ବିଶିଷ୍ଟ ହେଲେ, ଛ'ଆଙ୍ଗୁଳି ଥାଇ ଜନ୍ମ ହେଲେ, ପେଚା ଦେଖିଲେ, ଭଲମନ୍ଦର ବିଶେଷ ସମ୍ଭାବନାକୁ ଲୋକେ ଏଡେଇ ପାରନ୍ତି ନାହିଁ। ଗୁରୁବାର ଆମିଷ ଭକ୍ଷଣ ନିଷେଧ, ଗାଁ ଗହଳିରେ ରିଷ୍ଟ ଖଣ୍ଡନ ଉଦ୍ଦେଶ୍ୟରେ ବ୍ରାହ୍ମଣ ଝାଟିଆ ଚୋର

ପରିଧାନ, କେହି ରାଣ ଦେଲେ କାଳିଗାଇ ମୂଡି ମୂଡି ଯାଉ, ରାଣ ଫିଟି ଫିଟି ଯାଉ, ବ୍ୟବସାୟିକ ଉନ୍ନତି ନିମନ୍ତେ ଶନିବାର ଲେମ୍ବୁ-ଲଙ୍କାର ମାଳ ଟଙ୍ଗା ନୀତି, ମୁହଁସଂଜବେଳେ ଶୋଇଲେ ଅଳ୍ପାୟୁ ହେବା, ଶୋଇକି ପାଠ ପଢିଲେ ପରଜନ୍ମରେ ସର୍ପକୁଳରେ ଜାତ ହେବାର ଆଶଂକାକୁ ଅନ୍ଧବିଶ୍ୱାସ ଏବଂ ଅମୂଳକ ପ୍ରମାଣ କଲେ ହେଁ ଏହା ଏତେ ସ୍ୱଚ୍ଛ ଭାବରେ ମଣିଷର ସର୍ବାନ୍ତକରଣରେ ପ୍ରଭାବ ବିସ୍ତାର କରିସାରିଛି ଯେ ଏଥିରୁ ନିସ୍ତାର ନାହିଁ। ତୁଳସୀ ଧଣ୍ଡା, ନିର୍ମାଲ୍ୟ ପାଇ ପାପମୁକ୍ତ ହେବାର ଦୃଢବିଶ୍ୱାସ ଭିତରେ ଥିବା ବିଶ୍ୱାସଟି ଆମର ଅଖଣ୍ଡ। ଗାଁ ଗହଳିର ସତ୍ୟନାରାୟଣ ପାଲା, ଯାଚଣା, ମାନସିକ ପୂରଣ ପାଇଁ ବଟବୃକ୍ଷରେ ଡୋରିବନ୍ଧା, ଭାଇମାନଙ୍କୁ ଶୁଭମନାସି ମଙ୍ଗଳାଙ୍କ ପୂଜା, ଖୁଦୁରୁକୁଣୀ ଓଷା। ଏତଦ୍‌ବ୍ୟତୀତ ରୋଗମୁକ୍ତି ପାଇଁ ଶାମ୍ବଦଶମୀ, ପିଲାର ଉନ୍ନତି ପାଇଁ ବୁଧେଇଓଷା, ପୁତ୍ରସନ୍ତାନ ପାଇଁ ଜନ୍ମାଷ୍ଟମୀ, ଧନ ଐଶ୍ୱର୍ଯ୍ୟ ପାଇଁ ମାଣବସା, ଓ ଶ୍ୟାମାକାଳୀ ପୂଜା, ବିବାହ-ବ୍ରତ-ଦୀକ୍ଷାଦିରେ ସ୍ନାନ-ଶୌଚ-ଜପ ଦ୍ୱାରା ଶୁଦ୍ଧ-ସାତ୍ତ୍ୱିକ ହେବାର ମାନସିକତା ପ୍ରତ୍ୟେକ ଓଡ଼ିଆଙ୍କ ପ୍ରାଣତନ୍ତ୍ରୀରେ ଏକୀଭୂତ ହୋଇ ରହିଛି। ନବଜାତ ଶିଶୁର ଏକୋଇଶିଆଠାରୁ ଆରମ୍ଭ କରି ଜୀବନ ଶେଷର ଛ'ଖଣ୍ଡ କାଠରେ କୋକେଇ ବନ୍ଧାର ନୀତି-ନିୟମ, ଏହି ଦୃଢ଼ବିଶ୍ୱାସ ଅଦଳ-ଅଖଣ୍ଡ। ଉଭୟ ଜୀବନ ଓ ଜଗତ ସଂପର୍କରେ ବିଜ୍ଞାନର ଆଲୋକନ ଏତେ ସୀମିତ ଯେ କଳ୍ପନା ଓ ବିଶ୍ୱାସ ସାଥିକୁ ଆଦିମଯୁଗୀୟ ବିସ୍ମୟ ଓ ଭୟର ଅବକାଶ ତଥାପି ରହିଯାଏ। ଲୋକସଂସ୍କୃତିର ଏହା ଉର୍ବର କ୍ଷେତ୍ର। ଏଣୁ ବିଶ୍ୱର ବିଶିଷ୍ଟ ବୈଜ୍ଞାନିକମାନେ ମଧ୍ୟ ଅଜ୍ଞାତ ଶକ୍ତିର ପ୍ରଭାବକୁ ବିଶ୍ୱାସ କରନ୍ତି ଓ କବଚ ଧାରଣ କରନ୍ତି। (ଏବେ ମଧ୍ୟ ନାରୀ ଭିତରେ 'ଶକ୍ତି', ଗାଈ ଭିତରେ ବାଞ୍ଛାକଳ୍ପତରୁ କାମଧେନୁକୁ ଅନୁଭବ କରିବା ଆମ ପାରମ୍ପରିକ-ସାଂସ୍କୃତିକ ପ୍ରତିବଦ୍ଧତାକୁ ବୟାନ୍ କରେ)।

ଆଧୁନିକ ଜନଜୀବନ ନିମନ୍ତେ ଓଡିଶାର 'ଲୋକ ସଂସ୍କୃତି' ଆମ ପୈତୃକ ସମ୍ପତ୍ତି କହିଲେ ଭୁଲ୍ ହେବନାହିଁ। ସାହିତ୍ୟ ଦ୍ୱାରା ହିଁ ଲୋକସଂସ୍କୃତିକୁ ବଞ୍ଚେଇ ରଖିହେବ। ଜାତୀୟ ସାହିତ୍ୟ ଦ୍ୱାରା 'ସଂସ୍କୃତି' ପରିପୁଷ୍ଟ ଓ ସକ୍ରିୟ ହୋଇଉଠେ। ସଂସ୍କୃତି ଯୁଗେ ଯୁଗେ ସଂଚରଣଶୀଳା ତେଣୁ ବିଶ୍ୱସ୍ତରରେ ଜଗନ୍ନାଥୀୟ ସଂସ୍କୃତି ଓ ଓଡିଶୀ ନୃତ୍ୟ ପରିଚିତ ହାସଲ କରିସାରିଛି। ଏହାର ପଶ୍ଚାତ୍‌ଭାଗରେ 'ସାହିତ୍ୟ'ର ପ୍ରଚାରଧର୍ମୀତା ସହାୟକ ହୋଇଛି। ସାହିତ୍ୟର ଆଙ୍ଗିକରେ ଚମକ ସୃଷ୍ଟି କରିବାକୁ ଯାଇ ଆଧୁନିକ ସାହିତ୍ୟିକମାନେ ଲୋକତତ୍ତ୍ୱ, କଥାଣି, ଲୋକମିଥ୍, ଲୋକଭାଷା ଓ ଛନ୍ଦକୁ ଆତ୍ମୀକରଣ କରି ଅଧିକ ସଂପ୍ରେକ୍ଷଣକ୍ଷମ, ପରମ୍ପରା ସନ୍ନିକଟ ଓ ସରସ କରିବାର ପ୍ରୟାସ ଜାରି ରଖିଛନ୍ତି। ଲୋକ କିମ୍ବଦନ୍ତୀ ଦ୍ୱାରା କବି ରାଧାନାଥ ରାୟଙ୍କ 'ଉଷା', ନନ୍ଦକଶୋର ବଳଙ୍କ ଚମ୍ପାବତୀ ରାଜକନ୍ୟାର ସ୍ୱପ୍ନ, ଗୋପବନ୍ଧୁଙ୍କ ଧର୍ମପଦ, ନୀଳକଣ୍ଠଙ୍କ ମାୟାଦେବୀ, କବି ରାଧାମୋହନଙ୍କ 'ବାଇଆ ଗୀତ', ପଦ୍ମଶ୍ରୀ ସଚ୍ଚି ରାଉତ୍‌ରାୟଙ୍କ 'ଗ୍ରାମ ଶ୍ମଶାନ'ରେ ଉଆଁସୀ ଅନ୍ଧାରର ଚିରୁଗୁଣୀ, କବି ବିଭୁଦତ୍ତ ମିଶ୍ରଙ୍କ 'ହେ ସାରଥୀ ରଥ ରଖ'ରେ ବୈଦେହୀ, ପାର୍ଥ ଇତ୍ୟାଦିର ପ୍ରୟୋଗ, ବେଣୁଧର ରାଉତଙ୍କ କାଠଘୋଡା ପାଣିପି', ଜ୍ଞାନୀନ୍ଦ୍ର ବର୍ମାଙ୍କ 'ବୋଲେ ହୁଁଟି', ଚକୁଳିଆ ପଣ୍ଡାର କଥା, ଗୁରୁପ୍ରସାଦଙ୍କ 'କାଳପୁରୁଷ'ରେ ଜ୍ୟୋତିଷଶାସ୍ତ୍ର ବିଚାର, ରମାକାନ୍ତ ରଥଙ୍କ 'ଶ୍ରୀରାଧା'ର ମିଥିଧର୍ମୀ ଆବେଗ, ସୀତାକାନ୍ତଙ୍କ 'ପ୍ରଜାପତିର ମୃତ୍ୟୁ' କବିତାରେ 'ଶିବପାର୍ବତୀ' ଭଳି ପୁରାଣକଳ୍ପର ସଂଯୋଗାଦି ଦ୍ୱାରା ଆଧୁନିକ ଯୁଗରେ ନୂତନ ମୂଲ୍ୟବୋଧ ସ୍ଥାପନର ପ୍ରୟାସ ଅଭିନନ୍ଦନୀୟ। ଲୋକ ସଂସ୍କୃତିର ଚିପୁଡା ଅଭିବ୍ୟକ୍ତି ହିଁ ଲୋକ ସାହିତ୍ୟ। 'ଲୋକସଂସ୍କୃତି' ବନାମ୍ 'ଲୋକସାହିତ୍ୟ' ଆତ୍ମିକ ଦୃଷ୍ଟିରୁ ଏକ ଓ ଅଭିନ୍ନ।

**ସହାୟକ ଗ୍ରନ୍ଥସୂଚୀ:**

୧ – ଲୋକ ସାହିତ୍ୟ ତତ୍ତ୍ୱ – ଡକ୍ଟର ଶ୍ୟାମ ସୁନ୍ଦର ମହାପାତ୍ର ।
୨ – ଲୋକ ସଂସ୍କୃତି ପରିକ୍ରମା – ଡକ୍ଟର ମହେନ୍ଦ୍ର କୁମାର ମିଶ୍ର ।
୩ – ପ୍ରାଚୀନ ଓଡ଼ିଆ ଲିପି, ଭାଷା ଓ ସାହିତ୍ୟ – ପଣ୍ଡିତ ନୀଳମଣି ମିଶ୍ର ।

ଆସିଷ୍ଟାଣ୍ଟ୍ ପ୍ରଫେସର, ଓଡ଼ିଆ ବିଭାଗ
ରମାଦେବୀ ମହିଳା ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର

# ଐତିହାସିକ ଓ ଗବେଷକଙ୍କ ଦୃଷ୍ଟିରେ ଶ୍ରୀଜଗନ୍ନାଥ

ଇଂ. ଉଦ୍ଧବ ଚରଣ ନାୟକ

ହିନ୍ଦୁ ଧର୍ମରେ ଚାରି ଧାମ ମଧ୍ୟରେ ଉତ୍ତରରେ ବଦ୍ରିକାରେ ବଦ୍ରିନାଥ ଧାମ, ଦକ୍ଷିଣରେ ରାମେଶ୍ୱରଠାରେ ରାମେଶ୍ୱର ଧାମ, ପଶ୍ଚିମରେ ଦ୍ୱାରିକାରେ ଦ୍ୱାରୀକାନାଥ ଥିବାବେଳେ ପୂର୍ବରେ ପୁରୀଠାରେ ଜଗନ୍ନାଥ ଧାମ ଅବସ୍ଥିତ । ଏହା ଜଗତର ନାଥ, ବିଶ୍ୱ ବ୍ରହ୍ମାଣ୍ଡର ନାଥ ବିଶ୍ୱର ସମସ୍ତ ମାନବଜାତିର କଲ୍ୟାଣ ମାନବ ଧର୍ମର ପ୍ରତୀକ, ଯେଉଁଠାରେ ପ୍ରଭୁ ଶ୍ରୀଜଗନ୍ନାଥ ମାନବଲୀଳା ପ୍ରଦର୍ଶନ କରି ମାନବ ଧର୍ମକୁ ପ୍ରତିପାଦନ କରିଛନ୍ତି । ତାଙ୍କର ପ୍ରତ୍ୟେକ ବିଧି ବିଧାନରେ ଜନ୍ମ, ମୃତ୍ୟୁ, ବ୍ୟାଧି, ବିଶ୍ରାମ, ଶୟନ, ଖାଦ୍ୟପେୟ ସହ ପତି ପତ୍ନୀ, ଭାଇଭଉଣୀକୁ ନେଇ ବାରମାସ ତେରପର୍ବ ମଧ୍ୟରେ ଜାତି, ଧର୍ମ ନିର୍ବିଶେଷରେ ସମସ୍ତ ମାନବ ଜାତିକୁ ଏକ ନୂତନ ଆଦର୍ଶରେ ଅନୁପ୍ରାଣିତ କରିଛନ୍ତି । ସମସ୍ତ ପ୍ରାଣୀଙ୍କ ପାଇଁ ସେ ଚିର ଜାଗ୍ରତ ହସ୍ତ ପ୍ରସାରଣ କରି ପତିତମାନଙ୍କ ଉଦ୍ଧାର କାମନା କରୁଛନ୍ତି । ତାଙ୍କର କ୍ଷେତ୍ର ଶ୍ରୀକ୍ଷେତ୍ର, ତାଙ୍କର ଦେଉଳ ବଡଦେଉଳ, ତାଙ୍କର ଦାଣ୍ଡ ବଡଦାଣ୍ଡ, ତାଙ୍କ ଦେଉଳ ପାଚେରି ମେଘନାଦ ପାଚେରି, ତାଙ୍କର ପ୍ରସାଦ ମହାପ୍ରସାଦ, ବିଶ୍ୱର କୋଣ ଅନୁକୋଣରେ ପରିଚିତ । ଆମର ଗବେଷକ ଓ ଐତିହାସିକମାନେ ପ୍ରତି କ୍ଷେତ୍ରରେ ସତ୍ୟର ଉନ୍ମୋଚନ ପାଇଁ ଯଥାର୍ଥତା ପ୍ରତିପାଦନ କରିବାକୁ ଚେଷ୍ଟା କରିଛନ୍ତି । ପ୍ରଭୁ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ସମୟରେ ପଣ୍ଡିତ ଓ ଗବେଷକମାନଙ୍କ ଜଗନ୍ନାଥ ତତ୍ତ୍ୱ , ଶ୍ଳୋକ ଓ ପ୍ରବଚନ ମାଧ୍ୟମରେ ଚର୍ଚ୍ଚାକୁ ଶୁଣି ଏପରି ଲାଗେ ଯେ ପ୍ରଭୁ ଶ୍ରୀଜଗନ୍ନାଥ ସ୍ୱୟଂ ତଥ୍ୟ, ପୁରାଣ ଓ ଅଲୌକିକ ଅଟନ୍ତି ।



ଅବଶ୍ୟ ମୁଁ ଶ୍ରୀଜଗନ୍ନାଥ, ଜଗନ୍ନାଥ ସଂସ୍କୃତି, ଉତ୍ପତ୍ତି ଓ ପୌରାଣିକ ତଥ୍ୟ ବିଷୟରେ ଅନେକ ପୁସ୍ତକରୁ ପଢିବାର ସୁଯୋଗ ପାଇଛି । ତଥାପି ଶ୍ରୀଜଗନ୍ନାଥ ଓ ପଞ୍ଚସଖା ସାହିତ୍ୟ ନବକଳେବର ବିଶେଷାଙ୍କରେ ବିଶିଷ୍ଟ ଗବେଷକ ଓ ସାହିତ୍ୟିକମାନଙ୍କ ରଚିତ ଗବେଷଣା ସନ୍ଦର୍ଭ, ଶ୍ରୀ ମହିମୋହନ ତ୍ରିପାଠୀଙ୍କ ଶ୍ରୀଜଗନ୍ନାଥ ପୁସ୍ତକରେ ଶ୍ରୀଜଗନ୍ନାଥଙ୍କ ବିଷୟରେ ବର୍ଣ୍ଣନା, କାଳ ନିରୂପଣ ଓ ବହୁ ଜ୍ଞାନତତ୍ତ୍ୱ ହୃଦୟଙ୍ଗମ କରିଛି । ଯଦିଓ ଧର୍ମତତ୍ତ୍ୱ , ସଂସ୍କୃତି, ଆବିର୍ଭାବ ଓ ଜ୍ଞାନତତ୍ତ୍ୱର ବିଶ୍ଳେଷଣ କରାଯାଇଛି ତଥାପି କୌଣସି ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ଗବେଷକମାନେ ପହଞ୍ଚିନପାରି ଭିନ୍ନଭିନ୍ନ ମତପୋଷଣ କରିଥିବାର ଜ୍ଞାତହୁଏ ।

### ଶ୍ରୀଜଗନ୍ନାଥଙ୍କ ଆବିର୍ଭାବ

ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ କ୍ଷେତ୍ର ଭିନ୍ନଭିନ୍ନ ନାମରେ ପରିଚିତ । ଯେପରି ଶ୍ରୀକ୍ଷେତ୍ର, ନୀଳାଚଳ କ୍ଷେତ୍ର, ଶଙ୍ଖକ୍ଷେତ୍ର ଓ ପୁରୁଷୋତ୍ତମ କ୍ଷେତ୍ର । ଶ୍ରୀଜଗନ୍ନାଥ କଳିଯୁଗରେ କୃଷ୍ଣ ଅବତାର

ପରମବ୍ରହ୍ମ ଓ ସର୍ବବ୍ୟାପୀ । ତାଙ୍କ ନିକଟରେ ଉଚ୍ଚନୀଚ, ଆଚାଣ୍ଡଳ ବ୍ରାହ୍ମଣ ସମସ୍ତେ ସମାନ । ତାଙ୍କର ଆବିର୍ଭାବ ଓ ଶ୍ରୀକ୍ଷେତ୍ରରେ ପରିଚୟକୁ ନେଇ ବିଶିଷ୍ଟ ଐତିହାସିକ କୃପାସିନ୍ଧୁ ମିଶ୍ର ତାଙ୍କ ରଚିତ ଓଡିଶା ଇତିହାସରେ ଲେଖିଛନ୍ତି ଯେ, ଆର୍ଯ୍ୟମାନଙ୍କ ଆଗମନ ପରେ ଆର୍ଯ୍ୟଦେବତା ଭାବେ ଶ୍ରୀଜଗନ୍ନାଥଙ୍କୁ ନିଜର ଦେବତା ଭାବି ମୂର୍ତ୍ତିରୂପେ ପୂଜା କରିବାରୁ ବୌଦ୍ଧ, ଜୈନ ଓ ବୈଷ୍ଣବ ଧର୍ମାବଲମ୍ବୀ ଶ୍ରୀଜଗନ୍ନାଥଙ୍କୁ ସେମାନଙ୍କର ଆରାଧ୍ୟ ଦେବତା ଭାବେ ଗ୍ରହଣ କରିଛନ୍ତି, ଯାହାକୁ ଡ. ହରେକୃଷ୍ଣ ମହତାବ ମଧ୍ୟ ସ୍ୱୀକାର କରିଛନ୍ତି । ସେହିପରି ବିଷ୍ଣୁପୁରାଣରେ ସମୁଦ୍ରକୂଳରେ ପୁରୁଷୋତ୍ତମ କ୍ଷେତ୍ରରେ ମହାପ୍ରସାଦ ସେବନରେ ଭେଦଭାବ ନଥିବା ବର୍ଣ୍ଣନା ଚତୁର୍ଥ ଶତାବ୍ଦୀର ବୋଲି ଧରାଯାଏ ।

ସେହିପରି ଖ୍ରୀ.ପୂ. ଚତୁର୍ଥ ଶତାବ୍ଦୀରେ ରଚିତ କୂର୍ମପୁରାଣ ଓ ତନ୍ତ୍ର ଯାମଳରେ ବର୍ଣ୍ଣିତ ଶ୍ରୀଜଗନ୍ନାଥଙ୍କ ନାମ ଉତ୍କଳ ଦେଶ ପୁରୁଷୋତ୍ତମ କ୍ଷେତ୍ର ବୋଲି ବର୍ଣ୍ଣିତ ।

ଐତିହାସିକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ତାଙ୍କର ଇଂରେଜୀରେ ରଚିତ ଓଡିଶା ଇତିହାସରେ ମାଦଳାପାଞ୍ଜିରେ ବର୍ଣ୍ଣିତ ରକ୍ତବାହୁଙ୍କର ଜଗନ୍ନାଥ ମନ୍ଦିର ଉପରେ ଆକ୍ରମଣ ଭୌମ ବଂଶୀୟ ତୃତୀୟ ରାଜତ୍ୱକାଳ ଯାହାକି ସପ୍ତମ ଅଷ୍ଟମ ଶତାବ୍ଦୀରେ ହୋଇଥିବ ବୋଲି ବର୍ଣ୍ଣନା କରିଛନ୍ତି ।

ସେହିପରି ସ୍କନ୍ଦ ପୁରାଣରେ ପୁରୁଷୋତ୍ତମ କ୍ଷେତ୍ରର ମାହାତ୍ମ୍ୟ ଅଷ୍ଟମ ନବମ ଶତାବ୍ଦୀର ବୋଲି ପ୍ରଫେସର ଗୋପୀନାଥ ମହାପାତ୍ର ବର୍ଣ୍ଣନା କରିଛନ୍ତି ।

ଏଥିରୁ ଜ୍ଞାତହୁଏ ପୁରୀଠାରେ ଶ୍ରୀଜଗନ୍ନାଥଙ୍କ ଆବିର୍ଭାବ ବହୁ ପୁରାତନ ଓ ଦ୍ୱିତୀୟ ଏବଂ ତୃତୀୟ ଶତାବ୍ଦୀର, ଯାହା ଏକ ପୌରାଣିକ ମତ ଅଟେ ।

ସେହିପରି ପଣ୍ଡିତ ନୀଳମଣି ମିଶ୍ର ମଧ୍ୟ କହିଛନ୍ତି, ଆଦିମ ଯୁଗର ଦାରୁ ଦେବତା ବର୍ତ୍ତମାନର ଶ୍ରୀଜଗନ୍ନାଥ, ଯାହା ସପ୍ତମ ଅଷ୍ଟମ ଶତାବ୍ଦୀ ସମୟକୁ ସର୍ବପରିଚିତ ଥିଲେ । ପଞ୍ଚସଖା ସାହିତ୍ୟରେ ପଠାଣି ପଟ୍ଟନାୟକ ଶ୍ରୀଜଗନ୍ନାଥଙ୍କ ପ୍ରସିଦ୍ଧି ବୈଦିକ ଯୁଗରୁ ରହିଛି ବୋଲି ସଂଖାୟନ ବ୍ରାହ୍ମଣର ଏକ ଶ୍ଳୋକ ଉଦ୍ଧୃତ କରି ଦର୍ଶାଇଛନ୍ତି ।

ବେଦ ସତ୍ୟ ଓ ସତ୍ୟ ହିଁ ବେଦ । ବେଦ ବର୍ଣ୍ଣିତ ତଥ୍ୟ କେବେ ମିଥ୍ୟା ହୋଇ ନପାରେ । ତେଣୁ ଶ୍ରୀଜଗନ୍ନାଥ ବୈଦିକ କାଳରୁ ପ୍ରତିଷ୍ଠିତ ବୋଲି କୁହାଯାଇପାରେ । ଦ୍ୱାଦଶ ଶତାବ୍ଦୀରେ ରାଜା ଚୋଡଗଙ୍ଗଦେବ ଶ୍ରୀଜଗନ୍ନାଥ ମନ୍ଦିର ନିର୍ମାଣ କରିଥିବା ଧରାଯାଇଅଛି । ଷ୍ଟର୍ଲିଙ୍ଗ୍ ତାଙ୍କ ଓଡିଶା ଇତିହାସରେ ଅନଙ୍ଗଭୀମ ଦେବ (ତୃତୀୟ) ୧୧୯୬ ରେ ମନ୍ଦିର ନିର୍ମାଣ କରିବା ନେଇ ମତପୋଷଣ କରିଛନ୍ତି । ହଣ୍ଟରଙ୍କ ମତରେ, ୧୧୭୪ରେ ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଥିଲା ।

ଶ୍ରୀଜଗନ୍ନାଥ କେଉଁ ଧର୍ମର ଠାକୁର ତାହାକୁ ନେଇ ଗବେଷକମାନେ ଭିନ୍ନଭିନ୍ନ ମତପୋଷଣ କରିଛନ୍ତି । ଜେନେରାଲ୍ କନିଙ୍ଗ୍‌ହାମ୍, ପ୍ରଫେସର ଉଇଲ୍‌ସନ୍, ଜେମ୍‌ସ ଫର୍ଗୁସନ୍ ଓ ଡ. ହରେକୃଷ୍ଣ ମହତାବ ପ୍ରମୁଖ ଗବେଷକମାନେ ଶ୍ରୀଜଗନ୍ନାଥଙ୍କୁ ବୌଦ୍ଧ ଧର୍ମର ପ୍ରତୀକ କହୁଥିବାବେଳେ ବିଶିଷ୍ଟ ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ବିନାୟକ ମିଶ୍ର, କେଦାରନାଥ ମହାପାତ୍ର ଶ୍ରୀଜଗନ୍ନାଥଙ୍କୁ ଜୈନଧର୍ମର ପ୍ରତୀକରୂପେ ଗ୍ରହଣ କରିଥିବା ଶ୍ରୀଜଗନ୍ନାଥ ପୁସ୍ତକରେ ଶ୍ରୀମହିମୋହନ ତ୍ରିପାଠୀ ଖୁବ୍ ସୁନ୍ଦର ଭାବେ ଉଲ୍ଲେଖ କରିଛନ୍ତି । ଆଦି ଜୀନ ହେଉଛନ୍ତି ଶ୍ରୀଜଗନ୍ନାଥ ପୁରୁଷୋତ୍ତମ, ଜୈନଧର୍ମର ତ୍ରିରତ୍ନ, ଜୈନ, ଜିନ୍, ମୁନି ହେଉଛି ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ।

ସେହିପରି ବିଶିଷ୍ଟ ଗବେଷକ ଡ. ହରେକୃଷ୍ଣ ମହତାବ ଶ୍ରୀଜଗନ୍ନାଥଙ୍କୁ ମୂଳତଃ ବୌଦ୍ଧ ଭାବେ ଗ୍ରହଣ କରିଛନ୍ତି । ତାଙ୍କ ମତରେ ପୁରୀର ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ବୌଦ୍ଧ ଧର୍ମର ତ୍ରିରତ୍ନ । ପୁରୀର ପ୍ରାଚୀନ ନାମ ଥିଲା ଦନ୍ତପୁରୀ ।

ସେହିପରି ବୈଷ୍ଣବ ଧର୍ମର ପଞ୍ଚସଖାମାନେ ଶ୍ରୀଜଗନ୍ନାଥଙ୍କୁ ଶୂନ୍ୟପୁରୁଷ ଶୂନ୍ୟବ୍ରହ୍ମ ଭାବେ ସର୍ବଦା ଅନୁଭବ କରିଛନ୍ତି । ତଥାପି ପଞ୍ଚସଖାମାନେ ଶ୍ରୀଜଗନ୍ନାଥଙ୍କୁ ଶ୍ରୀକୃଷ୍ଣ ଓ ଶ୍ରୀବିଷ୍ଣୁରୂପେ ଗ୍ରହଣ କରିଛନ୍ତି । ଶ୍ରୀଅଚ୍ୟୁତ ତାଙ୍କ ରଚନାରେ ଲେଖିଛନ୍ତି– 'ଶ୍ରୀକୃଷ୍ଣ ଜଗନ୍ନାଥ ସେହି, ପରମାନନ୍ଦ ସେ ବୋଲଇ ।'

### ଶ୍ରୀମନ୍ଦିରରେ ବିଗ୍ରହ ପ୍ରତିଷ୍ଠା

ଏହି ବିଗ୍ରହ ନିର୍ମାଣ ଓ ପ୍ରତିଷ୍ଠାକୁ ନେଇ ମଧ୍ୟ ଭିନ୍ନଭିନ୍ନ ମତ ଦେଖିବାକୁ ମିଳେ । ପୌରାଣିକ ମତ ଅନୁସାରେ,

ନବକଳେବରର ଆଦ୍ୟ ପ୍ରବର୍ତ୍ତକ ପ୍ରବନ୍ଧରେ ଚିନ୍ତାମଣି ଦାସ ମହୋଦୟ ଶ୍ରୀଜଗନ୍ନାଥ ଓ ପଞ୍ଚସଖା ସାହିତ୍ୟରେ ଉଲ୍ଲେଖ କରିଛନ୍ତି ଯେ, ଶିବ ଅବତାର ଆଚାର୍ଯ୍ୟ ଶଙ୍କର, ବଦ୍ରୀନାରାୟଣ ଧାମରେ ସରସ୍ୱତୀ ନଦୀକୂଳରେ ବ୍ୟାସଙ୍କ ସାଧନାରତ ସମୟରେ ବ୍ୟାସଦେବ ଆବିର୍ଭାବ ହୋଇ ଶଙ୍କରାଚାର୍ଯ୍ୟଙ୍କୁ ଜଗତଗୁରୁ ଉପାଧିରେ ବିଭୂଷିତ କରି ପାତାଳି ଥିବା ପୁରୁଷୋତ୍ତମଙ୍କୁ ଉଦ୍ଧାର କରିବାକୁ ପରାମର୍ଶ ଦେଇଥିଲେ । ଜଗତଗୁରୁ ଶ୍ରୀକ୍ଷେତ୍ର ଆସି ମନ୍ଦିରର ରତ୍ନବେଦୀ ଶୂନ୍ୟ ଥିବା ଦେଖି ନିଜର ଦିବ୍ୟଦୃଷ୍ଟିରେ ଜାଣିପାରିଲେ ଯେ ସୁବର୍ଣ୍ଣପୁର ଜିଲ୍ଲାର ବିନିକାଠାରେ ମୁଖ୍ୟଘାଟ ବରଗଛ ମୂଳେ ମହାପ୍ରଭୁ ଚତୁର୍ଦ୍ଧାମୂର୍ତ୍ତି ପାତାଳି ଅଛନ୍ତି । ସେ ମହାରାଜାଙ୍କ ସହାୟତାରେ ବରଗଛ ମୂଳରୁ କ୍ଷତବିକ୍ଷତ ବିଗ୍ରହସ୍ଥ ବ୍ରହ୍ମଙ୍କୁ ଉଦ୍ଧାର କରି ଏକ ମନ୍ଦିର ନିର୍ମାଣ କରି ସେହିଠାରେ ସ୍ଥାପନ କଲେ । ବ୍ରହ୍ମ ତ ନିରାକାର ପରଂବ୍ରହ୍ମ । ସେ ଅକ୍ଷୟ, ଅବିନାଶ, ନିତ୍ୟ ଓ ଶାଶ୍ୱତ । ନା ତା'ର ଅଛି ଆକାର, ନା ସ୍ପର୍ଶ କରିହେବ ! ନେପାଳରୁ ଜୀବନ୍ତ ଶାଳଗ୍ରାମ ଅଣାଯାଇଥିବାର କିମ୍ବଦନ୍ତୀ ଅନୁଯାୟୀ ନେପାଳ ନରେଶଙ୍କୁ ରତ୍ନବେଦୀରେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ପୂଜାର୍ଚ୍ଚନା କରିବାର ଅଧିକାର ଥିବାର ଜ୍ଞାତ ହୁଏ । ଏଠାରେ ଆଉ ଗୋଟିଏ ପ୍ରଶ୍ନଉଠେ ନବକଳେବର ସମୟରେ ବ୍ରହ୍ମ ପାଟବସ୍ତ୍ରରେ ଆବୃତ ଥିବାର ମଧ୍ୟ କୁହାଯାଏ । ସେହିପରି ପଞ୍ଚସଖା ସାହିତ୍ୟରେ ଦାରୁବ୍ରହ୍ମ ତତ୍ତ୍ୱ ଅନୁଯାୟୀ ଦ୍ୱାପର ଯୁଗର ଶେଷରେ ଶ୍ରୀକୃଷ୍ଣ ଜାରା ଶବର ଶରରେ ନିହତ ହେବା ପରେ ପାଣ୍ଡବମାନେ ପିଣ୍ଡକୁ ଦାହ କରିବାକୁ ସହଦେବଙ୍କ ପରାମର୍ଶ ଅନୁସାରେ ଯମନିକା ତୀର୍ଥକୁ ବୋହି ଆଣିବାର ୬ ଦିନ ଅନ୍ତେ ହସ୍ତପଦ କ୍ଷୀଣ ଓ ସପ୍ତମ ଦିବସରେ ହସ୍ତପଦ ଶୂନ୍ୟ ହେବା ପରେ ଶ୍ରୀକୃଷ୍ଣଙ୍କ ପିଣ୍ଡ ବୌଦ୍ଧମୂର୍ତ୍ତି ଧାରଣ କରିଥିବା ଦାରୁବ୍ରହ୍ମ ଗୀତାର ମୌଳିକ ତତ୍ତ୍ୱ ଓ ଏହା ଦ୍ୱିତୀୟ ଅଧ୍ୟାୟରେ ବର୍ଣ୍ଣିତ ହୋଇଛି ।

ପୌରାଣିକ ମତ ଅନୁସାରେ ଶ୍ରୀକୃଷ୍ଣଙ୍କ ପିଣ୍ଡକୁ ସପ୍ତମ ଦିବସରେ ପାଣ୍ଡବମାନେ ଦାହ କରିବାକୁ ଯାଉଥିବା ସମୟରେ ଶୂନ୍ୟବାଣୀ ଅନୁସାରେ ପିଣ୍ଡକୁ ଦାହ ନକରି ସମୁଦ୍ରରେ ଭସାଇ ଦିଆଯାଇଥିଲା । ଏହାପରେ ବିଶ୍ୱାବସୁ ଶବର ବାଙ୍କି ମୁହାଣରେ ପିଣ୍ଡ ଦର୍ଶନ ପରେ ପିଣ୍ଡକୁ କଳ୍ପବଟ ନିକଟରେ ରଖି ପୂଜା କରିବା ଏବଂ ରାଜା ଇନ୍ଦ୍ରଦ୍ୟୁମ୍ନ ସ୍ୱପ୍ନାଦେଶ ଅନୁଯାୟୀ ପିଣ୍ଡକୁ ଆଣି ଛଦ୍ମବେଶୀ ବ୍ରହ୍ମାଙ୍କ ଦ୍ୱାରା ବିଗ୍ରହ ନିର୍ମାଣ କରିବା ଦିନଠାରୁ ଦାରୁ ବିଗ୍ରହ ଚତୁର୍ଦ୍ଧାମୂର୍ତ୍ତିରୂପେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ରୂପେ ରତ୍ନବେଦୀରେ ବିଦ୍ୟମାନ ଅଛନ୍ତି ।

ଜଗନ୍ନାଥ ଯେତିକି ରହସ୍ୟମୟ, ତାଙ୍କର ପ୍ରତ୍ୟେକ ତତ୍ତ୍ୱ ମଧ୍ୟ ସେତିକି ରହସ୍ୟମୟ । ଯେତେବେଳେ ଦେବତାମାନେ ପ୍ରଭୁଙ୍କ ତତ୍ତ୍ୱ ଓ ଲୀଳାକୁ ଭେଦ କରିପାରିନାହାନ୍ତି, ଆମ୍ଭେ ମନୁଷ୍ୟ ହୋଇ କ'ଣ ବା ବୁଝିପାରିବା । ସେ ହିଁ ବ୍ରହ୍ମା, ସେ ହିଁ ବିଷ୍ଣୁ, ସେ ହିଁ ମହେଶ୍ୱର । ଏହି ପବିତ୍ର କ୍ଷେତ୍ରରେ ମା' ଲକ୍ଷ୍ମୀ ନିଜ ହସ୍ତରେ ରନ୍ଧନ ନକଲେ ମହାପ୍ରସାଦ ଲାଗି ହୁଏନା, ଲକ୍ଷାଧିକ ଶ୍ରଦ୍ଧାଳୁ ବିନା ଭେଦଭାବରେ ଆଚାଣ୍ଡାଳ ବ୍ରାହ୍ମଣ ଏକତ୍ର ଆନନ୍ଦବଜାରରେ ପ୍ରସାଦ ସେବନ କରନ୍ତି । ଭକ୍ତ ପାଇଁ ଭଗବାନ୍ ନିଜ ରଥକୁ ବଡଦାଣ୍ଡରେ ଛିଡାକରି ଅପେକ୍ଷା କରନ୍ତି, ସେନାପତି ସାଜି କଳାଘୋଡା ଧଳାଘୋଡାରେ ଚଢି ଯୁଦ୍ଧଭୂମିରେ ଯୁଦ୍ଧ କରିପାରନ୍ତି । ଭକ୍ତବତ୍ସଳ ଦାସିଆ ବାଉରୀ ହାତରୁ ଶୂନ୍ୟରୁ ନଡିଆ ଗ୍ରହଣ କରିପାରନ୍ତି । ଶ୍ରୀମନ୍ଦିର ଛାଡି ବଡଦେଉଳରୁ ଆସିପାରନ୍ତି । ସେ ଓଡିଶାର ଆରାଧ୍ୟ ଦେବତା, ତାଙ୍କ କ୍ଷେତ୍ର ଓଡିଶାର ଧାର୍ମିକ ପ୍ରାଣକେନ୍ଦ୍ର । ତାଙ୍କର ମାହାତ୍ମ୍ୟ ଓ ସାନ୍ନିଧ୍ୟଲାଭ ପାଇଁ ପ୍ରତ୍ୟେକ ଧର୍ମର ଅନୁଗାମୀ ସମସ୍ତେ ଶ୍ରୀକ୍ଷେତ୍ରର ବଡଦାଣ୍ଡରେ ଏକତ୍ରିତ ହୋଇ ପ୍ରଭୁଙ୍କ ଦର୍ଶନ ପାଇଁ ଯୁଗେଯୁଗେ ବ୍ୟାକୁଳ ରହିଥାନ୍ତି ଏବଂ ପ୍ରଭୁଙ୍କୁ ତାଙ୍କର ଠାକୁର ଭାବେ ଗ୍ରହଣ କରିଛନ୍ତି, ତେଣୁ ସେ ଜଗତର ନାଥ । ତାଙ୍କର ଧର୍ମ ମାନବ କଲ୍ୟାଣ ଧର୍ମ(ଜଗନ୍ନାଥ ଧର୍ମ) । ସେ ପତିତମାନଙ୍କ ଠାକୁର, ଶବରମାନଙ୍କ ଠାକୁର, ଗଜପତି ରାଜାଙ୍କ ଠାକୁର ଓ ବଡ ଦେଉଳର ବଡଠାକୁର ରୂପେ ପରିଚିତ ଓ ପୂଜିତ ।

ଗ୍ରାମ– ଅଳିପୁର, ପୋ– ମହାସିଂହପୁର
ବହୁଗ୍ରାମ, କଟକ–୭୫୪୨୦୦



# ଅସହଯୋଗ ଓ ଭାରତଛାଡ଼ ଆନ୍ଦୋଳନରେ କଟକ ନଗରୀର ଭୂମିକା

**ଡକ୍ଟର ଶ୍ରୀଚରଣ ଦାସ**

କଟକ ଓଡ଼ିଶାର ପ୍ରାଚୀନତମ ନଗରୀ । ହଜାର ବର୍ଷରୁ ଊର୍ଦ୍ଧ୍ୱ ସମୟ ଧରି ଏହି ନଗରୀ ପ୍ରତିଷ୍ଠା ଅର୍ଜନ କରିଥିବା ଇତିହାସ ସାକ୍ଷ୍ୟଦିଏ । ଏହା ଓଡ଼ିଶାର ପ୍ରାଚୀନ ରାଜଧାନୀ ତଥା ଶିକ୍ଷା, ସଂସ୍କୃତି, ଶିଳ୍ପ, ବ୍ୟବସାୟ ଆଦିର ପ୍ରାଣକେନ୍ଦ୍ର । ସେହିପରି ଭାରତର ସ୍ୱାଧୀନତା ସଂଗ୍ରାମରେ ଏହି ନଗରୀର ଅନେକ ଗୌରବୋଜ୍ଜ୍ୱଳ ବ୍ୟକ୍ତିତ୍ୱ ଅଂଶଗ୍ରହଣ କରି ଏକାଧିକବାର କାରାବରଣ କରିଥିଲେ । ୧୮୫୭ ମସିହାର ସିପାହୀ ବିଦ୍ରୋହଠାରୁ ୧୯୪୭ ମସିହାର ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ କଟକ ନଗରୀ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା । ଭାରତର ସ୍ୱାଧୀନତା ସଂଗ୍ରାମରେ ଯେତେଗୋଟି ଆନ୍ଦୋଳନ ସଂଗଠିତ ହୋଇଛି ତନ୍ମଧ୍ୟରେ ଅସହଯୋଗ ଆନ୍ଦୋଳନ ଏବଂ ଭାରତଛାଡ ଆନ୍ଦୋଳନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ, ଯାହା ସ୍ୱାଧୀନତା ଲାଭ ପାଇଁ ଦୁଇଟି ବଳିଷ୍ଠ ପଦକ୍ଷେପ ।



୧୯୧୯ ମସିହାର ଶେଷପାଦରେ ସ୍ୱାଧୀନତା ଆନ୍ଦୋଳନକୁ ଅଧିକ ସକ୍ରିୟ କରିବା ପାଇଁ କଟକଠାରେ ଭାରତୀମନ୍ଦିର ନାମକ ଏକ ଅନୁଷ୍ଠାନ ଗଠନ କରାଯାଇଥିଲା । ଗୋପବନ୍ଧୁ ଚୌଧୁରୀଙ୍କର ପ୍ରୋତ୍ସାହନ ଏବଂ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନ୍‌ଗୋ ପ୍ରଭୃତି କେତେଜଣ ଛାତ୍ର ଓ ଯୁବ ଓକିଲ ଭାଗିରଥୀ ମହାପାତ୍ରଙ୍କ ସହାୟତାରେ ବାଖରାବାଦଠାରେ ଏହି ଅନୁଷ୍ଠାନଟି ଗଢାଯାଇଥିଲା । ପ୍ରତିଦିନ ସନ୍ଧ୍ୟାରେ କଟକର ଛାତ୍ର, ଓକିଲ ଓ ବୁଦ୍ଧିଜୀବୀ ସେଠାରେ ଏକତ୍ରିତ ହୋଇ ରାଜନୈତିକ ଘଟଣା ଉପରେ ଆଲୋଚନା କରୁଥିଲେ ଓ ତୀକ୍ଷ୍ଣ ନଜର ମଧ୍ୟ ରଖୁଥିଲେ । ୧୯୨୦ ମସିହା ସେପ୍ଟେମ୍ବର ମାସରେ କଲିକତାରେ ଭାରତୀୟ ଜାତୀୟ କଂଗ୍ରେସର ଏକ ସ୍ୱତନ୍ତ୍ର ଅଧିବେଶନ ବସି ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନର କାର୍ଯ୍ୟପନ୍ଥା ଗ୍ରହଣ କରାଯାଇଥିଲା । ସେହିବର୍ଷ ଡିସେମ୍ବର ମାସରେ ନାଗପୁରଠାରେ ଅନୁଷ୍ଠିତ ଐତିହାସିକ ଅଧିବେଶନରେ ଅସହଯୋଗ ଆନ୍ଦୋଳନ ତୀବ୍ରତର କରିବାର ଖସଡା ପ୍ରସ୍ତୁତ ହୋଇଥିଲା । ଓଡ଼ିଶା ପାଇଁ ଏକ ସ୍ୱତନ୍ତ୍ର କଂଗ୍ରେସ କମିଟି ଗଠନ କରିବାର ନିଷ୍ପତ୍ତି ସେହିଠାରେ ହିଁ ଗ୍ରହଣ କରାଯାଇଥିଲା । ସେହି ନାଗପୁର ଅଧିବେଶନରେ ଓଡ଼ିଶାରୁ ଗୋପବନ୍ଧୁ ଦାସ, ଡକ୍ଟର ହରେକୃଷ୍ଣ ମହତାବ, ନିରଞ୍ଜନ ପଟ୍ଟନାୟକ, ଭାଗିରଥୀ ମହାପାତ୍ର, ଜଗବନ୍ଧୁ ସିଂହ ଓ ମୁକୁନ୍ଦ ପ୍ରସାଦ ଦାସ ଯୋଗ ଦେଇଥିଲେ । ସେମାନେ ସମସ୍ତେ ଏକତ୍ରିତ ହୋଇ ଏହି

କଟକରୁ ବାହାରିଥିଲେ । ନାଗପୁର ଅଧିବେଶନରୁ ଗୋପବନ୍ଧୁ ଫେରି ୧୯୨୧ ମସିହା ଜାନୁଆରୀ ୨୪ ତାରିଖ ଦିନ କାଠଯୋଡି କୂଳରେ ଏକ ବିରାଟ ସାଧାରଣ ସଭାର ଆୟୋଜନ କରିଥିଲେ । ଏହି ସଭାରେ ନାଗପୁର ଅଧିବେଶନରେ ଗୃହୀତ ପ୍ରସ୍ତାବ ଉପରେ ଏକ ବିବରଣୀ ଉପସ୍ଥାପନ କରି ଅସହଯୋଗ ଆନ୍ଦୋଳନରେ ଯୋଗଦେବା ପାଇଁ ଲୋକମାନଙ୍କୁ ଉତ୍ସାହିତ କରିଥିଲେ । ଗୋପବନ୍ଧୁଙ୍କର ଆବେଗପୂର୍ଣ୍ଣ ଭାଷଣ ଓଡ଼ିଶାର ଜନତାଙ୍କ ହୃଦୟରେ ଅପୂର୍ବ ସ୍ପନ୍ଦନ ସୃଷ୍ଟି କରିଥିଲା । ମହାତ୍ମା ଗାନ୍ଧୀ ପ୍ରଥମ ଥର ପାଇଁ ପୁରୀ ଏକ୍ସପ୍ରେସ୍ ଯୋଗେ ୧୯୨୧ ମସିହା ମାର୍ଚ୍ଚ ୨୩ ତାରିଖ ଦିନ କଟକରେ ପହଞ୍ଚିଥିଲେ । କଟକ ରେଳଷ୍ଟେସନରେ ପ୍ରାୟ ଦଶହଜାର ଲୋକ ବିରାଟ ଶୋଭାଯାତ୍ରାରେ କୀର୍ତ୍ତନ କରି ଗାନ୍ଧିଜୀଙ୍କୁ ସ୍ୱରାଜ ଆଶ୍ରମକୁ ନେଇଆସିଥିଲେ । ସେହିଦିନ ସନ୍ଧ୍ୟା ସମୟରେ କାଠଯୋଡି ବାଲିରେ ଏକ ବିରାଟ ସାଧାରଣ ସଭାରେ ଗାନ୍ଧିଜୀ ଉଦ୍‌ବୋଧନ ଦେଇଥିଲେ । ଏହି ସଭା ଶେଷହେବା ପରେ ଗାନ୍ଧିଜୀ ବିନୋଦବିହାରୀ ମନ୍ଦିର ପରିସର ମଧ୍ୟରେ ମାରୁଆଡି ଓ ଗୁଜୁରାଟୀ ବ୍ୟବସାୟୀଙ୍କ ସହ ବିଦେଶୀବସ୍ତ୍ର ବର୍ଜନ ଉପରେ ଆଲୋଚନା କରିଥିଲେ । ସେହିପରି ମାର୍ଚ୍ଚ ୨୪ ତାରିଖ ସକାଳ ୮ଟାରେ କଦମରସୁଲଠାରେ ଗାନ୍ଧିଜୀ ମୁସଲମାନମାନଙ୍କର, ଦିନ ଦୁଇଟା ବେଳେ ନାରୀମାନଙ୍କର ଓ ସନ୍ଧ୍ୟା ୫ଟା ସମୟରେ ଛାତ୍ର ଓ ଓକିଲମାନଙ୍କ ସଭାରେ ଉଦ୍‌ବୋଧନ ଦେଇଥିଲେ । ଏହିସବୁ ସଭାରେ ସେ ମୁଖ୍ୟତଃ ବିଦେଶୀ ବସ୍ତ୍ର ସମେତ ଅନ୍ୟାନ୍ୟ ଦ୍ରବ୍ୟ ବର୍ଜନ, ସ୍କୁଲ, କଲେଜ ଓ ସରକାରୀ ଚାକିରି ଆଦି ବର୍ଜନ କରି ଅସହଯୋଗ ଆନ୍ଦୋଳନରେ ଯୋଗଦେବା ପାଇଁ କଟକବାସୀଙ୍କୁ ଆହ୍ୱାନ କରିଥିଲେ । ତାଙ୍କ ଭାଷଣରେ ଉଦ୍‌ବୁଦ୍ଧ ହୋଇ ରେଭେନ୍ସା କଲେଜରୁ ଡକ୍ଟର ମହତାବ, ନିତ୍ୟାନନ୍ଦ କାନୁନ୍‌ଗୋ, ନବକୃଷ୍ଣ ଚୌଧୁରୀ, ରାଜକୃଷ୍ଣ ବୋଷ ପ୍ରମୁଖ ଛାତ୍ରମାନେ ଶ୍ରେଣୀ ବର୍ଜନ କରି ଅସହଯୋଗ ଆନ୍ଦୋଳନରେ ଯୋଗଦେଇଥିଲେ । ସେହିପରି ଗୋପବନ୍ଧୁ ଚୌଧୁରୀ ଡେପୁଟି କଲେକ୍ଟର ଚାକିରି ଓ ଗୋପବନ୍ଧୁ ଦାସ ଓକିଲାତି ବ୍ୟବସାୟ ଛାଡିଦେଇ ଓଡ଼ିଶାବାସୀଙ୍କ ନିକଟରେ ଆଦର୍ଶ ଉଦାହରଣ ପାଲଟି ଯାଇଥିଲେ । ଏହି ସମୟରେ କଟକର ଲୁଗା ବ୍ୟବସାୟୀମାନେ ଏକ ସଙ୍ଗଠନ ପ୍ରତିଷ୍ଠା କରି ବିଦେଶୀବସ୍ତ୍ର ବର୍ଜନ ପାଇଁ ପଦକ୍ଷେପ ଗ୍ରହଣ କରିଥିଲେ । ସେମାନଙ୍କ ମଧ୍ୟରୁ କେତେଜଣ ଅନ୍ୟ ସ୍ୱେଚ୍ଛାସେବୀଙ୍କ ସହ ମିଶି ପ୍ରତ୍ୟହ କଟକ ରେଳଷ୍ଟେସନରେ ବିକ୍ଷୋଭ ପ୍ରଦର୍ଶନ ପୂର୍ବକ ରେଳରେ ଅଣାଯାଇଥିବା ବିଦେଶୀବସ୍ତ୍ରକୁ ସହର ମଧ୍ୟକୁ ଛାଡି ନଥିଲେ । ୧୯୨୧ ମସିହା ମାର୍ଚ୍ଚ ମାସରେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ଗଠନ କରାଯାଇ ଏହାର ମୁଖ୍ୟ କାର୍ଯ୍ୟାଳୟ ସ୍ଥାପିତ ହୋଇଥିଲା କଟକ ନଗରୀରେ । ଏହାର ସଭାପତି ଥିଲେ ଗୋପବନ୍ଧୁ ଦାସ, ଉପସଭାପତି ଭାବେ ଡକ୍ଟର ଏକରାମ ରସୁଲ, ସମ୍ପାଦକ ଭାବେ ଭାଗିରଥୀ ମହାପାତ୍ର ଏବଂ ଯୁଗ୍ମ ସମ୍ପାଦକଭାବେ ବ୍ରଜବନ୍ଧୁ ଦାସ ନିର୍ବାଚିତ ହୋଇଥିଲେ । ଏହି ପ୍ରଦେଶ କମିଟିର ବାରଜଣ ସଦସ୍ୟ ନିଖିଳ ଭାରତ କଂଗ୍ରେସ କମିଟିରେ ପ୍ରତିନିଧି ରୂପେ ଯୋଗଦେବା ପାଇଁ ନିର୍ବାଚିତ ହୋଇଥିଲେ । ସେମାନଙ୍କ ମଧ୍ୟରୁ ଗୋପବନ୍ଧୁ ଦାସ, ଜଗବନ୍ଧୁ ସିଂହ, ଗୋପବନ୍ଧୁ ଚୌଧୁରୀ, ନୀଳକଣ୍ଠ ଦାସ, ଭାଗିରଥୀ ମହାପାତ୍ର, ବ୍ରଜମୋହନ ପଣ୍ଡା ଏବଂ ଅଟଳ ବିହାରୀ ଆଚାର୍ଯ୍ୟଙ୍କ ନାମ ଉଲ୍ଲେଖଯୋଗ୍ୟ। କଟକ ସହରରେ ଅସହଯୋଗ ଆନ୍ଦୋଳନ ଖୁବ୍ ସଫଳତାର ସହ ଆଗେଇ ଚାଲିଲା । ପ୍ରତିଦିନ କଟକ ନଗରୀର ବିଭିନ୍ନ ସ୍ଥାନରେ ସାଧାରଣ ସଭାମାନ ଆୟୋଜନ କରାଯାଇ ସେଥିରେ ଜାତୀୟ ବିଦ୍ୟାଳୟ ସ୍ଥାପନ, ସୂତାକଟା, ବିଦ୍ୟାଳୟ ଓ ମହାବିଦ୍ୟାଳୟ ବର୍ଜନ, କୋର୍ଟ କଚେରୀ ବର୍ଜନ ଏବଂ ପଞ୍ଚାୟତ କୋର୍ଟ ଗଠନ ବିଷୟରେ ଭାଷଣମାନ ଦିଆଯାଉଥିଲା । କଟକର ମେଡିକାଲ କଲେଜର ଛାତ୍ରମାନେ ମଧ୍ୟ ଅସହଯୋଗ ଆନ୍ଦୋଳନରେ ଅଂଶ ଗ୍ରହଣ କରିଥିଲେ । ସେମାନଙ୍କ ସହିତ ଅନ୍ୟଛାତ୍ରମାନେ ମିଶି 'ସ୍ୱରାଜ ସେବକ ସଂଘ' ନାମରେ ଏକ ଅନୁଷ୍ଠାନ ଗଠନ କଲେ, ଯାହାର ସମ୍ପାଦକ ଥିଲେ ବ୍ରଜବନ୍ଧୁ ଦାସ । ନବକୃଷ୍ଣ ଚୌଧୁରୀ, ରାମପ୍ରସାଦ ସିଂ, ରଘୁରାଉତ, ରାଜକିଶୋର ଦାସ ପ୍ରମୁଖ ବ୍ୟକ୍ତିମାନେ ଏଥିରେ ଅଂଶ ଗ୍ରହଣ କରିଥିଲେ । ଅସହଯୋଗ ଆନ୍ଦୋଳନ ସମୟରେ କଟକରୁ ରାଜକୃଷ୍ଣବୋଷ, ଅଟଳ ବିହାରୀ ଆଚାର୍ଯ୍ୟ, ଯଦୁମଣି ମଙ୍ଗରାଜ, ଡକ୍ଟର ଏକରାମ ରସୁଲ ପ୍ରମୁଖ ନେତାମାନଙ୍କୁ ଗିରଫ କରି ହଜାରିବାଗ ଜେଲକୁ ପଠାଇ

ଦିଆଯାଇଥିଲା । ଗୁରୁତର ଅପରାଧୀଙ୍କ ପରି ଅଣ୍ଟାରେ ଦଉଡି ବାନ୍ଧି ସେମାନଙ୍କୁ କଟକ ସହର ରାସ୍ତାରେ ଚଲାଇ ଚଲାଇ ନେଇଥିଲେ । ମଧୁସୂଦନ ବିଶ୍ୱାଳ, ଦାମୋଦର ମହାନ୍ତି ଓ ଅଟଳ ବିହାରୀ ଆଚାର୍ଯ୍ୟ ପ୍ରମୁଖ କଟକ ସହରର ନୂଆ ବଜାରଠାରେ ଏକ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ୧୯୨୨ ମସିହା ଅଗଷ୍ଟ ତିନି ତାରିଖ ଦିନ ରାଜ ଗୋପାଳଚାରୀ, ମୋତିଲାଲ ନେହେରୁ, ଡକ୍ଟର ଆନ୍‌ସାରୀ ଏବଂ ଭି.ଜେ.ପଟେଲ କଟକରେ ପହଞ୍ଚି ଭବିଷ୍ୟତର ଆଇନ ଅମାନ୍ୟ ଆନ୍ଦୋଳନ ସାଫଲ୍ୟ ମଣ୍ଡିତ ହୋଇପାରିବ କି ନାହିଁ ସେ ବିଷୟରେ ବିଭିନ୍ନ ନେତାମାନଙ୍କ ସହିତ ଆଲୋଚନା କରିଥିଲେ । ସେହି ବର୍ଷ ଅଗଷ୍ଟ ମାସ ତୃତୀୟ ସପ୍ତାହରେ କଟକରେ ସୁଭାଷ ଚନ୍ଦ୍ର ବୋଷ ପଦାର୍ପଣ କରି ଓଡ଼ିଶାରେ ଜାତୀୟ ଆନ୍ଦୋଳନକୁ ପରିପୁଷ୍ଟ କରିଥିଲେ । ୧୯୨୩ ମସିହାରେ କଟକଠାରେ ଉତ୍କଳ ପ୍ରାଦେଶିକ କଂଗ୍ରେସ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ଏବଂ ଏଥିରେ ପୌରୋହିତ୍ୟ କରିଥିଲେ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ । ମଧୁସୂଦନ ଦାସଙ୍କ ଆମନ୍ତ୍ରଣକ୍ରମେ ମହାତ୍ମା ଗାନ୍ଧୀ ୧୯୨୫ ମସିହା ଅଗଷ୍ଟ ୧୯ ତାରିଖ ଦିନ କଟକ ଆସି ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଉତ୍କଳ ଟେନେରୀ ପରିଦର୍ଶନ କରିଥିଲେ । ଏହି ସମୟରେ ସାଧାରଣ ସଭାରେ ଭାଷଣ ଦେବା ସହିତ ସେ କଟକର କୁଷ୍ଠାଶ୍ରମ ପରିଦର୍ଶନ କଲେ । ଏହା ଥିଲା ଯଥାର୍ଥରେ ଅସହଯୋଗ ଆନ୍ଦୋଳନରେ କଟକ ନଗରୀର ଭୂମିକା । ସେହିପରି ଆଇନ ଅମାନ୍ୟ ଆନ୍ଦୋଳନ ଏବଂ ସତ୍ୟାଗ୍ରହ ଆନ୍ଦୋଳନ କଟକରେ ଉଗ୍ରରୂପ ନେଇଥିଲା ।

୧୯୪୨ ମସିହା ଥିଲା ସ୍ୱାଧୀନତା ଆନ୍ଦୋଳନର ଇତିହାସରେ ଏକ ଗୌରବୋଜ୍ଜ୍ୱଳ ବର୍ଷ । ସେହିବର୍ଷ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଭାରତଛାଡ ପ୍ରସ୍ତାବ ଏକ ଉଲ୍ଲେଖଯୋଗ୍ୟ ପଦକ୍ଷେପ ନିଆଯାଇଥିଲା । ଭାରତୀୟ ଜାତୀୟ କଂଗ୍ରେସର କାର୍ଯ୍ୟକାରୀ କମିଟି ୧୯୪୨ ମସିହା ଏପ୍ରିଲ ୧୪ ତାରିଖ ଦିନ ୱାର୍ଦ୍ଧାଠାରେ ଭାରତଛାଡ ପ୍ରସ୍ତାବ ଗ୍ରହଣ କରି ଏହା ସାଧାରଣ ଅଧିବେଶନରେ ଗୃହୀତ ହେବା ପାଇଁ ନିଷ୍ପତ୍ତି ନିଆଯାଇଥିଲା । ତେଣୁ ଅଗଷ୍ଟ ୮ ତାରିଖ ଦିନ ବମ୍ବେସ୍ଥିତ ଗୋଆଲିଆ ପୋଖରୀ ପଡିଆରେ ଏକ ସାଧାରଣ ଅଧିବେଶନ ଆହୂତ ହୋଇଥିଲା । ଏଥିରେ କଟକରୁ ଡକ୍ଟର ହରେକୃଷ୍ଣ ମହତାବ, ଶ୍ରୀମତୀ ମାଳତୀ ଚୌଧୁରୀ, ସୁରେନ୍ଦ୍ର ନାଥ ଦ୍ୱିବେଦୀ ଓ ପ୍ରହ୍ଲାଦ ରାୟ ଲାଠ ଯୋଗ ଦେଇଥିଲେ । ବମ୍ବେଠାରେ ଭାରତଛାଡ ପ୍ରସ୍ତାବ ଗୃହୀତ ହେବାପରେ ଅଗଷ୍ଟ ୯ ତାରିଖ ସକାଳେ ଗାନ୍ଧିଜୀଙ୍କ ସମେତ କଂଗ୍ରେସ କାର୍ଯ୍ୟକାରୀ କମିଟିର ଅନ୍ୟାନ୍ୟ ସଦସ୍ୟଙ୍କୁ ଗିରଫ କରାଯାଇ ଜେଲ୍‌କୁ ନିଆଯାଇଥିଲା । ଡକ୍ଟର ହରେକୃଷ୍ଣ ମହତାବଙ୍କୁ ମଧ୍ୟ ଗିରଫ କରାଯାଇ ଅହମ୍ମଦ ନଗର ଫୋର୍ଟକୁ ନିଆଗଲା । ସେହିଦିନ କଟକରେ ଦିନ ୧୨ଟା ବେଳେ ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ରମାଦେବୀ, ଭାଗିରଥୀ ମହାପାତ୍ର, ବିଶ୍ୱନାଥ ଦାସ, ନିତ୍ୟାନନ୍ଦ କାନୁନ୍‌ଗୋ, ରାଜକୃଷ୍ଣ ବୋଷ, ସୁରେନ୍ଦ୍ର ନାଥ ପଟ୍ଟନାୟକ, ପ୍ରାଣକୃଷ୍ଣ ପଢ଼ିଆରୀ, ସଦାଶିବ ତ୍ରିପାଠୀ, ମନମୋହନ ଚୌଧୁରୀ, ରାଧାନାଥ ରଥ, ଆଚାର୍ଯ୍ୟ ହରିହର ପ୍ରମୁଖ ନେତାଙ୍କୁ ଗିରଫ କରାଯାଇଥିଲା । ୧୯୪୨ ମସିହା ଅଗଷ୍ଟ ୧୧ ତାରିଖ ଦିନ ସୁରେନ୍ଦ୍ର ନାଥ ଦ୍ୱିବେଦୀ ଓ ତା ପରଦିନ ମାଳତୀ ଚୌଧୁରୀ ବମ୍ବେରୁ ଆସି କଟକରେ ପହଞ୍ଚିଲେ । ସେମାନେ ପହଞ୍ଚିବା ପରେ କଟକର ରାଜନୈତିକ ପରିବେଶ ସରଗରମ ହୋଇଉଠିଥିଲା । ସେତେବେଳେ ସବୁ କଂଗ୍ରେସ ଅଫିସକୁ ସରକାରଙ୍କ ନିର୍ଦ୍ଦେଶକ୍ରମେ ବନ୍ଦ କରିଦିଆଯାଇଥିବାରୁ ସୁରେନ୍ଦ୍ର ନାଥ ଦ୍ୱିବେଦୀ କଟକର ଅଲିଶାବଜାରସ୍ଥିତ ନନ୍ଦି ସାହୁଙ୍କ ଘରକୁ ନିଜର ଅଫିସ କରିଥିଲେ । ସେହି ସମୟରେ ସବୁ ରାଜନୈତିକ ତୁଙ୍ଗନେତା ଗିରଫ ହୋଇଥିବାରୁ ଶ୍ରୀଯୁକ୍ତ ଦ୍ୱିବେଦୀ ଗୋପନୀୟ ଭାବେ 'ଭାରତଛାଡ' ଆନ୍ଦୋଳନକୁ ନେତୃତ୍ୱ ଦେଉଥିଲେ । ଶ୍ରୀଯୁକ୍ତ ଦ୍ୱିବେଦୀ ମଧ୍ୟ 'କଂଗ୍ରେସ ବାର୍ତ୍ତା' ଓ 'ସତ୍ୟ ସମ୍ବାଦ' ଛାପି ସେଥିରେ ସେ ବିଭିନ୍ନ ପରାମର୍ଶ ଦେଇଥିଲେ । ଦଳଗତ ନିର୍ବିଶେଷରେ ସମସ୍ତେ ଏଥିରେ ସାମିଲ ହୋଇଥିଲେ ।

ପ୍ରକୃତରେ କହିବାକୁ ଗଲେ କଟକସ୍ଥିତ ରେଭେନ୍ସା କଲେଜରୁ ଓଡ଼ିଶାରେ ଭାରତଛାଡ ଆନ୍ଦୋଳନ ଆରମ୍ଭ ହୋଇଥିଲା । ୧୯୪୨ ମସିହା ଅଗଷ୍ଟ ୧୫ତାରିଖ ଦିନ ୨୦୦ କଲେଜ ଛାତ୍ର ରେଭେନ୍ସା କଲେଜ ଅଫିସରେ ନିଆଁ ଲଗାଇ ଦେଇଥିଲେ । ବହୁ ଆସବାବପତ୍ର ମଧ୍ୟ ନଷ୍ଟ କରିଦେଲେ।

ଏହି ଆନ୍ଦୋଳନ ଆଗରେ ଥିଲେ ଅଶୋକ ଦାସ, ବନମାଳୀ ପଟ୍ଟନାୟକ, ବୀରେନ ମିତ୍ର, ସୁରଜମଲ୍ଲ ସାହା ଓ ବିବୁଧେନ୍ଦ୍ର ମିଶ୍ର । ଏହାର ଅନୁସନ୍ଧାନ କରାଯାଇ ସୁରଜମଲ୍ଲ ସାହା ଓ ବିବୁଧେନ୍ଦ୍ର ମିଶ୍ରଙ୍କୁ ଗିରଫ କରାଗଲା ଏବଂ ସେମାନଙ୍କୁ ବ୍ରହ୍ମପୁର ଜେଲକୁ ପଠାଇ ଦିଆଯାଇଥିଲା । ସେହି ଛାତ୍ରମାନେ ଅନ୍ୟ କଂଗ୍ରେସ ନେତାଙ୍କ ସହ ମିଶି ସରକାରୀ କର୍ମଚାରୀଙ୍କୁ ଚାକିରି ବର୍ଜନ କରିବା ପାଇଁ ଆବେଦନ କରିବା ସଙ୍ଗେ ସଙ୍ଗେ ଟିକସ ନଦେବା ରେଳ ଓ ଟେଲିଗ୍ରାଫ୍ ଲାଇନ୍ ଧ୍ୱଂସ କରିବା ପାଇଁ ଲୋକମାନଙ୍କୁ ଆବେଦନ କରିଥିଲେ । ରେଭେନ୍ସା କଲେଜରେ ମଧ୍ୟ ହରତାଳ ପାଳନ କରାଯାଇଥିଲା । ପରେ ପରେ କଟକର ସବୁ ଶିକ୍ଷାନୁଷ୍ଠାନକୁ ଏହା ବ୍ୟାପୀ ଯାଇଥିଲା ।

୧୯୪୨ ଆନ୍ଦୋଳନ ସମୟରେ କଟକରୁ ପ୍ରକାଶିତ ସମାଜ ଓ ନିଉ ଓଡ଼ିଶାର ସମ୍ପାଦକ ମହାତ୍ମା ଗାନ୍ଧୀଙ୍କ ମୁକ୍ତି ପାଇଁ ଆବେଦନ କରି ତତ୍କାଳୀନ ଭାଇସରାୟଙ୍କୁ ପତ୍ର ଲେଖିବା ସଙ୍ଗେ ସଙ୍ଗେ ନିଜ ନିଜର ସମ୍ବାଦପତ୍ରରେ ତାହା ପ୍ରକାଶ କରିଥିଲେ । ୧୯୪୪ ମସିହା ମେ ମାସରେ ଗାନ୍ଧିଜୀଙ୍କୁ ଜେଲରୁ ଖଲାସ କରାଯିବା ପରେ କଟକରେ ଏକ ବିରାଟ ସଭାରେ ତାହା ସ୍ୱାଗତ କରାଯାଇଥିଲା । ୧୯୪୫ ମସିହାରେ କଲିକତାରୁ ଗାନ୍ଧିଜୀ ମାନ୍ଦ୍ରାଜ ଯିବା ବାଟରେ କଟକରେ ଓହ୍ଲାଇବାର ଥିଲା ମାତ୍ର କଟକରେ ଟ୍ରେନ ରାତି ଅଧରେ ପହଞ୍ଚିବା ପରେ ଖୁବ ଆନନ୍ଦରେ ବିହ୍ୱଳିତ ହୋଇ ଲୋକମାନଙ୍କ ମଧ୍ୟରେ ବିଶୃଙ୍ଖଳା ଓ ପାଟିତୁଣ୍ଡ ହୋଇଥିଲା । ଗାନ୍ଧିଜୀ ବାହାରକୁ ଆସି କହିଲେ, 'ଓଡ଼ିଶାକୁ ମୁଁ ଏତେ ଭଲପାଏ । ଏହି କ'ଣ ଅହିଂସା, ଏହି କ'ଣ ଶୃଙ୍ଖଳା, ଯାହାକୁ ନେଇ ଆମେ ପରମାଣୁ ବୋମାର ସମ୍ମୁଖୀନ ହେବା, ମୁଁ ତୁମ୍ଭର ଆନନ୍ଦ ଧ୍ୱନି ଚାହେଁ ନାହିଁ, ମୁଁ ଚାହେଁ ତୁମର ଆତ୍ମାରୁ କଳୁଷ ଚାଲିଯାଉ, ସେଥିରେ ମୋର ଆନନ୍ଦ ହେବ ।' ଗାନ୍ଧିଜୀ ଆଉ କଟକରେ ନରହି ମାନ୍ଦ୍ରାଜ ଚାଲି ଯାଇଥିଲେ । ୧୯୪୬ ମସିହା ଏପ୍ରିଲ ମାସରେ ଓଡ଼ିଶାରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କରାଗଲା ଏବଂ ଡକ୍ଟର ହରେକୃଷ୍ଣ ମହତାବ ହେଲେ ପ୍ରଧାନମନ୍ତ୍ରୀ । ସେ କଟକରୁ ଏଇ ନିର୍ଦ୍ଦେଶନାମା ଦାବି କରି ସବୁ ରାଜନୈତିକ ବନ୍ଦୀଙ୍କୁ ମୁକ୍ତିକରି ଦେଇଥିଲେ । ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଦିନ ସ୍ୱାଧୀନତା ଦିବସ କଟକରେ ମହାସମାରୋହରେ ପାଳିତ ହୋଇଥିଲା । କଟକ ନଗରୀର ଅବଦାନକୁ ସ୍ୱାଧୀନତା ଲାଭ ପରିପ୍ରେକ୍ଷୀରେ ଆଦୌ ଉପେକ୍ଷା କରାଯାଇ ପାରିବ ନାହିଁ ।

ଗ୍ରାମ– ବମ୍ଭିଲୋ, ବାସନ୍ଦରା
ଜଗତସିଂହପୁର

